# ଉତ୍କଳ ପ୍ରସଙ୍ଗ

୬୧ ଭାଗ | ୫ମ ସଂଖ୍ୟା | ମାର୍ଗଶିର-ପୌଷ | ଡିସେମ୍ବର - ୨୦୦୪

**ଦିଗମ୍ବର ମହାନ୍ତି**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଶରତଚନ୍ଦ୍ର ସାମନ୍ତରାୟ**
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଶୁଭଲକ୍ଷ୍ମୀ ମହାନ୍ତି**
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ : ସୂଚନା ଓ ଲୋକ ସଂପର୍କ ବିଭାଗ
ସୌଜନ୍ୟରୁ

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

***ବାର୍ଷିକ ଦେୟ : ଟ.୫୦.୦୦***
***ପ୍ରତିଖଣ୍ଡ : ଟ.୫.୦୦***





ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
*E-mail* : iprsec@rediffmail.com / iprsec@ori.nic.in, ଫୋନ : ୨୪୦୪୫୧୩




# ସମବାୟ ଶତବର୍ଷ ପୂର୍ତ୍ତି




ସମବାୟ ଆନ୍ଦୋଳନ କେବଳ ଏକ ଅର୍ଥନୈତିକ ଆନ୍ଦୋଳନ ନୁହେଁ, ଏହା ଏକ ବିଚାରଧାରା ଏବଂ ଏକ ସାମାଜିକ ବ୍ୟବସ୍ଥା । ଗରିବ ଜନସାଧାରଣଙ୍କୁ ପୁଞ୍ଜିପତିମାନଙ୍କ ଶୋଷଣରୁ ରକ୍ଷାକରି ସେମାନଙ୍କ ଆର୍ଥିକ ଓ ସାମାଜିକ ଅବସ୍ଥାର ଉନ୍ନତି ନିମନ୍ତେ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଚିନ୍ତାଶୀଳ ଜନନାୟକଙ୍କ ମନରେ ଯେଉଁ ସଂକଳ୍ପ ଓ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହା ହିଁ ସମବାୟ ବିଚାରଧାରା ନାମରେ ପରିଚିତ ।

ଏ ଦିଗରେ ଆମ ଓଡ଼ିଶା ସମବାୟ ଆନ୍ଦୋଳନର ଆଦିଭୂମି ଭାବରେ ଗୌରବାନ୍ୱିତ । ଓଡ଼ିଆ ଜାତିର ମହାନ୍ ଜନନାୟକ ଉତ୍କଳଗୌରବ ମଧୁସୂଦନ ଦାସ ୧୮୯୮ ମସିହାରେ କଟକଠାରେ ପ୍ରଥମ ସମବାୟ ଅନୁଷ୍ଠାନଟିଏ ଖୋଲି ଏ କ୍ଷେତ୍ରରେ ପଥପ୍ରଦର୍ଶକ ହେବାର ଗୌରବ ଅର୍ଜନ କରିଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀକାଳରେ ଜନସାଧାରଣଙ୍କ ସାମୂହିକ ବିକାଶ ସାଧନ ଓ ସ୍ୱାର୍ଥ ସୁରକ୍ଷା ନିମନ୍ତେ ସମବାୟ ଆନ୍ଦୋଳନ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି । ଏହା ଘରୋଇ ଉଦ୍ୟୋଗ ସହ ପ୍ରତିଦ୍ୱନ୍ଦିତା କରି ଜନସାଧାରଣଙ୍କ ଆଶା ଆକାଂକ୍ଷା ପୂରଣ କରିବା ପାଇଁ ଗତ ଶହେ ବର୍ଷ ଭିତରେ ଏକ ବଳିଷ୍ଠ ଭିତ୍ତିଭୂମି ପ୍ରତିଷ୍ଠା କରିପାରିଛି ।

ଏହି ଆନ୍ଦୋଳନ ସମସ୍ତ ଆହ୍ୱାନର ସଫଳ ମୁକାବିଲା କରିବା ସହିତ ଏହାର ଗନ୍ତବ୍ୟ ପଥରେ ଅଗ୍ରଗତି କରି ରାଜ୍ୟର ତଥା ଦେଶରେ ଅଭାବି ଓ ନିମ୍ନବର୍ଗ ଲୋକମାନଙ୍କ ମନରେ ପ୍ରତ୍ୟୟ ଓ ପ୍ରଗତିର ବାତାବରଣ ସୃଷ୍ଟି କରିପାରିବ । ଏହା ହିଁ ଆନ୍ଦୋଳନର ଶତବର୍ଷ ପୂର୍ତ୍ତି ଉପଲକ୍ଷେ ସ୍ୱପ୍ନ ହେଉ ।

ଶରତ ଚନ୍ଦ୍ର ସାମନ୍ତରାୟ



# ଶହେବର୍ଷ ପରେ

# ସଫଳତା ପଥରେ ଆମ ସମବାୟ ଆନ୍ଦୋଳନ

ସୁରମା ପାଢ଼ୀ

**ଶ**ହେବର୍ଷର ସମବାୟ ତଟିନୀରେ କଳକଳ ନିନାଦିତ ଫେନିଳ ଜଳ ରାଶିରେ ସଫଳ ଓ ଅସଫଳତାର ଅସରନ୍ତି ଢେଉ । ସେ ଢେଉର ଲହରିରେ ଭାସି ଯାଇଛି ଅନେକ ସ୍ମୃତି ଆଉ ବିସ୍ମୃତିର ପଦଚିହ୍ନ ସବୁ । ଯାହାକୁ ସାଉଁଟିଲେ ସୃଷ୍ଟି ହୁଏ କେତେବେଳେ ସୁଖର ଚେନାଏ ହସତ ଆଉ କେତେବେଳେ ଦୁଃଖର ଶୁଖିଲା ମୁହଁଟିଏ ।

ବୀରପ୍ରସବିନୀ ଓଡ଼ିଶା, ଯେଉଁଠି ଦିନଥିଲା ପ୍ରତିଟି ସଞ୍ଜ ନଇଁଲେ ଅନେକ ସଫଳତା ଘୁଙ୍ଗୁରର ରୁଣୁ ଝୁଣୁ, ଆକାଶକୁ ଶବ୍ଦାୟିତ କରୁଥିଲା । ଏ ମାଟି ଗୋଡ଼ି ପଥରର ଚଟାଣ ତଳେ ସେଦିନର ସଫଳତା ଆଜି ହୁଏତ ଅବକ୍ଷୟ ହୋଇଯାଇ ପାରିଥାଏ, ମାତ୍ର କେବେ ବି ତା'ର ସତ୍ତାକୁ ହରାଇ ବସିନି । ସେହି ସଂସ୍କୃତି, ସେହି ପରମ୍ପରା, ସେହି ବୀରତ୍ୱ, ସେହି ଅଦମନୀୟ ସାହସିକତା, ସେହି ଆଦର୍ଶ, ସେହି ପରାକାଷ୍ଠା ସବୁକିଛିର ଅତୀତକୁ ଜାବୁଡ଼ି ଧରିଛି ଓଡ଼ିଶାର ଏଇ ଶହେ ବର୍ଷର ସମବାୟ ଆନ୍ଦୋଳନ ।

ଅବିରାମ ସଂଗ୍ରାମ, ଦୃଢ଼ ନେତୃତ୍ୱ, ଜନସେବାର ସାର୍ଥକ ବ୍ରତ, ଦୁର୍ନୀତିର ମୂଳଉତ୍ପାଟନ, ଲୋକାଭିମୁଖୀ ତଥା ପ୍ରଗତିଶୀଳ ଆଭିମୁଖ୍ୟକୁ ନେଇ ଓଡ଼ିଶାର ସମବାୟ ଆନ୍ଦୋଳନ ଆଜି ତା'ର ଗତିଶୀଳ ପ୍ରବାହର ଧାରାକୁ ଋଦ୍ଧିମନ୍ତ କରିଛି । ଯେଉଁଠି ଶୋଷିତ ଶୋଷକର ଅତ୍ୟାଚାରରୁ, ପୁଞ୍ଜିବାଦର ଦାବାନଳରେ ପୋଡ଼ି ଯାଉଥିବା ମଣିଷକୁ ସମାଜବାଦ ଚିନ୍ତାଧାରା ମଧ୍ୟରେ ଥଇଥାନ କରିବାକୁ ଆଉ ସର୍ବୋପରି ଆତ୍ମନିଯୁକ୍ତି ପାଇଁ ଯାହା ଆଜିର ଉଦାରିକରଣ ଅର୍ଥନୀତିକ ଦୁନିଆଁରେ ଦରଦୀ ମଣିଷର ଅମୋଘ ଅସ୍ତ୍ରର ଭୂମିକା ସାଜିଛି ତାହା ହେଉଛି ସମବାୟ ।

ସମଗ୍ର ଭାରତବର୍ଷ ଯାହାକୁ ଆସନ୍ତାକାଲି ଚିନ୍ତା କରେ, ଏ ଓଡ଼ିଆ ଜାତି ତାକୁ ଆଜି ହିଁ ଚିନ୍ତା କରିଥାଏ । ଭାରତର ସମବାୟ ଆନ୍ଦୋଳନ କ୍ଷେତ୍ରରେ ଓଡ଼ିଶାର ଅବସ୍ଥିତିକୁ ଯଦି ଆମେ ପରଖିବା, ତେବେ ସମଗ୍ର ଭାରତବର୍ଷ ଆମ ପାଇଁ ଚକିତ ହୋଇଉଠିବ । ଏ ଜାତିର ଦାୟାଦ ଆଇନଗତ ପ୍ରାସଙ୍ଗିକତା ଥିବା ଭାରତୀୟ ସମବାୟ ଆନ୍ଦୋଳନର ଦୀର୍ଘ ଛଅବର୍ଷ ପୂର୍ବରୁ ଏହି ଓଡ଼ିଶା ମାଟିରେ ସମବାୟରୂପୀ ଯେଉଁ ଚାରାଟିକୁ ୧୮୯୮ ମସିହା ଜୁନ୍ ୧୧ ତାରିଖରେ ରୋପଣ କରିଥିଲେ, ତାହା ଥିଲା କାର୍ଯ୍ୟ ନିପୁଣତା ଓଡ଼ିଆର ପ୍ରଖର ବୁଦ୍ଧିମତାର ପରିଚୟ । ଆଉ ସେ ମହାନ ଜନନାୟକ ଥିଲେ ଉତ୍କଳର ଗୌରବ ମଧୁସୂଦନ ଦାସ ।

ଆଜି ସମବାୟ ଆନ୍ଦୋଳନର ଶହେବର୍ଷର ଇତିହାସ ଓଡ଼ିଶାର ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ବିକାଶରେ ଅନେକ କିଛି ପରିବର୍ତ୍ତନ ଆଣିଛି । ଏକବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶା ସରକାର ସମବାୟ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣି ସମବାୟକୁ ସଭ୍ୟ ମୁଖୀ ଏବଂ ଲୋକାଭିମୁଖୀ କରିପାରିଛନ୍ତି । ଓଡ଼ିଶା ସରକାରଙ୍କର ସମବାୟ ବିଭାଗର ଦାୟିତ୍ୱ ଗ୍ରହଣ କରି ଯାହାଙ୍କ ଦୃଢ଼ ନେତୃତ୍ୱରେ ଶହେ ପଚାଶ ଦିନ ମଧ୍ୟରେ ସମବାୟ ତାହାର ପ୍ରଗତିର ପ୍ରବହମାନ ଚିରସ୍ରୋତକୁ ନିନାଦିତ କରିପାରିଛି, ତାହାର ସମ୍ୟକ ଝଲକ ହେଉଛି -

୧. ଓଡ଼ିଶା ରାଜ୍ୟ ସମବାୟ ୟୁନିୟନ କାର୍ଯ୍ୟାଳୟରୁ 'ନୂଆ ଶତାବ୍ଦୀର ନୂଆ ସମବାୟ' ପୁସ୍ତକ ସମବାୟ ମନ୍ତ୍ରୀଙ୍କ ଦ୍ୱାରା ଉନ୍ମୋଚିତ । ଯେଉଁଥିରେ ଏକବିଂଶ ଶତାବ୍ଦୀ ପାଇଁ ଏକୋଇଶି ଗୋଟି ନୂତନ ସମବାୟର ପରିକଳ୍ପନା କରାଯାଇଛି ।

୨. ଏକ ଶକ୍ତିଶାଳୀ ଓ ସ୍ପନ୍ଦିତ ସମବାୟ ଆନ୍ଦୋଳନ ଗଢ଼ି ତୋଳିବା ପାଇଁ ନିବନ୍ଧକଙ୍କ ଦ୍ୱାରା ରଚିତ ସମବାୟ ସଂକଳ୍ପ ଉନ୍ମୋଚିତ ହୋଇଛି ।

୩. ଜାତୀୟ ଶସ୍ୟ ବୀମା ଯୋଜନାରେ ଓଡ଼ିଶାକୁ ସର୍ବାଧିକ କୃଷିବୀମା ଅର୍ଥ ପ୍ରଦାନ କରାଯାଇଛି ।

୪. ସମବାୟ ବ୍ୟାଙ୍କ ଓ ସମିତି କ୍ଷେତ୍ରରେ କ୍ଷୁଦ୍ର ଏବଂ ମଧ୍ୟମ ଧରଣ ଋଣ ପ୍ରଦାନକୁ ଦୁଇଗୁଣିତ କରାଯାଉଛି ।

୫. ସମବାୟ ଅନୁଷ୍ଠାନଗୁଡ଼ିକର ପରିଚାଳନା ପରିଷଦରେ ସଦସ୍ୟତା ପାଇଁ ଦୁର୍ବଳ ଶ୍ରେଣୀର ବ୍ୟକ୍ତିବିଶେଷଙ୍କୁ ଯେକୌଣସି ଶ୍ରେଣୀର ସଦସ୍ୟତା ପାଇଁ ନିର୍ବାଚନରେ ଭାଗ ନେବାର ଅଧିକାର ଦିଆଯାଉଛି ।

୬. ବିଭିନ୍ନ ବର୍ଗର ସଦସ୍ୟଙ୍କୁ ଶତପ୍ରତିଶତ ସମବାୟ ପରିଚାଳନା ପରିଷଦରେ ଅଂଶଗ୍ରହଣ ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

୭. ସମବାୟ ସମିତିଗୁଡ଼ିକରେ ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ନାମମାତ୍ର ସଭ୍ୟରୂପେ ସଂପୃକ୍ତିକରଣ ପାଇଁ ଆଇନରେ ସଂଶୋଧନ କରାଯାଇଛି ।

୮. ଅଡ଼ିଟକୁ ଅଧିକ କ୍ରିୟାଶୀଳ କରିବାପାଇଁ ସମବାୟ ଅଡ଼ିଟରମାନଙ୍କ ସହିତ ଚାଟାର୍ଡ଼ ଆକାଉଣ୍ଟାଣ୍ଟମାନଙ୍କୁ ସମବାୟ ଅଡ଼ିଟ୍‌ରେ ନିୟୋଜିତ କରାଯାଇଛି ।

୯. ସମବାୟ ସମିତିଗୁଡ଼ିକର, ୧୯୬୨ ମସିହା ସମବାୟ ସମିତି ଆଇନରେ ଥିବା ପରିଚାଳନା ପରିଷଦ ପାଇଁ ହରିଜନ, ଆଦିବାସୀ, ପଛୁଆବର୍ଗ ଏବଂ ମହିଳାମାନଙ୍କୁ ସେମାନଙ୍କ କ୍ଷେତ୍ରରୁ ବାଧ୍ୟତାମୂଳକ ଭାବେ ନିର୍ବାଚିତ ହେବା ପାଇଁ ଆଇନର ସଂଶୋଧନ କରାଯାଇଛି ।

୧୦. ଅଭାବି ଧାନବିକ୍ରୀକୁ ରୋକିବା ପାଇଁ ସମବାୟ ସମିତି ଜରିଆରେ କୃଷକମାନଙ୍କଠାରୁ ଧାନ କ୍ରୟ କରାଯାଉଛି ।

୧୧. ଶସ୍ୟବୀମା ପାଇଁ ପଞ୍ଚାୟତକୁ ୟୁନିଟ୍ ରୂପେ ଗ୍ରହଣ କରିବାକୁ କାର୍ଯ୍ୟକ୍ରମ ନିଆଯାଇଛି ।

୧୨. ରାଜ୍ୟ ସମବାୟ ୟୁନିୟନର ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିବା ନିମନ୍ତେ ଶିକ୍ଷା ପାଣ୍ଠି ଆଦାୟ ପାଇଁ ଓଡ଼ିଶା ସମବାୟ ସମିତି ଆଇନରେ ବ୍ୟାପକ ସଂଶୋଧନ କରାଯାଇଛି ।

୧୩. ସମବାୟ ଶିକ୍ଷା ଓ ତାଲିମକୁ ବୃତ୍ତିଭିତ୍ତିକ ସମାନ ଉପଯୋଗୀ କରିବା ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

୧୪. ସମବାୟର ପ୍ରଚାର ଓ ପ୍ରସାର ପାଇଁ 'ସମବାୟ ସମାଚାର' ଏବଂ 'କଲ୍ୟାଣୀ' ପତ୍ରିକାକୁ ଆହୁରି ଜନାଭିମୁଖୀ କରି ଏହାର ମାନବୃଦ୍ଧି ନିମନ୍ତେ ସମସ୍ତ ଆର୍ଥିକ ସହାୟତା ଯୋଗାଇଦେବା ପାଇଁ ସ୍ଥିର କରାଯାଇଛି ।

୧୫. ସମବାୟରେ ସଭ୍ୟମାନଙ୍କୁ ଶତପ୍ରତିଶତ ସଂପୃକ୍ତି କରିବା ପାଇଁ ସମବାୟ ସଭ୍ୟ ଅଭିଯାନ କାର୍ଯ୍ୟକ୍ରମ ରାଜ୍ୟ ସମବାୟ ୟୁନିୟନ ଗ୍ରହଣ କରିଛି ।

୧୬. ଗ୍ରାମୀଣ ପରିଚାଳନା କ୍ଷେତ୍ରରେ ସ୍ନାତକୋତ୍ତର Master Degree in Rural Management ପାଠ୍ୟକ୍ରମକୁ ଚଳିତ ବର୍ଷଠାରୁ ଓଡ଼ିଶା ରାଜ୍ୟ ସମବାୟ ୟୁନିୟନ ଆନୁକୂଲ୍ୟରେ ଆରମ୍ଭ କରାଯିବା ପାଇଁ ସରକାରୀ ନିର୍ଦ୍ଦେଶ ଦିଆଯାଇଛି ।

୧୭. ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ୍ ଦୁଇଗୁଣ କୃଷି ଋଣ ପ୍ରଦାନ କରିବା ପାଇଁ ପଦକ୍ଷେପ ନେଇଛି ।

୧୮. ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ୍ ତରଫରୁ ଋଣୀ ସଭ୍ୟମାନଙ୍କୁ ପ୍ରୋତ୍ସାହିତ କରିବା ପାଇଁ କଳିଙ୍ଗ କିଷାନ ଗୋଲ୍ଡକାର୍ଡ଼ ଓ କଳିଙ୍ଗ କିଷାନ ସିଲ୍‌ଭର୍ କାର୍ଡ଼ ଭଳି ଅଭିନବ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଉଛି ।

୧୯. ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ୍ ତରଫରୁ ଜିଲ୍ଲାସ୍ତରରେ କଳିଙ୍ଗ କିଷାନ ଗୋଲ୍ଡକାର୍ଡ଼ କ୍ଲବ୍ ଗଠନ କରାଯାଇଛି ।

୨୦. ହିସାବର ସ୍ୱଚ୍ଛତା ଓ କାର୍ଯ୍ୟ ଦକ୍ଷତା ପାଇଁ ବ୍ୟାଙ୍କ୍‌ଗୁଡ଼ିକରେ କମ୍ପ୍ୟୁଟରୀକରଣ କରାଯାଇଛି ।

୨୧. ତୃଣମୂଳ ସ୍ତରରେ ପ୍ରାଥମିକ ସେବା ସମବାୟ ସମିତିଗୁଡ଼ିକୁ ମଧ୍ୟ କମ୍ପ୍ୟୁଟରୀକରଣ କରାଯାଇଛି ।

୨୨. ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ସମବାୟ ବ୍ୟାଙ୍କରୁ ଋଣ ପାଇବା ପାଇଁ ସମସ୍ତ କିଛି ସହଜ ଓ ସରଳ ପନ୍ଥା ଅବଲମ୍ବନ କରାଯାଇଛି ।

୨୩. ବ୍ୟାଙ୍କ୍‌ରେ କର୍ପୋରେଟ ଗଭର୍ଣ୍ଣାନ୍ସର ପ୍ରଚଳନ କରାଯାଇଛି ।

୨୪. ସମବାୟ ଆନ୍ଦୋଳନରେ ଶତପ୍ରତିଶତ ସଭ୍ୟଙ୍କୁ ସଂପୃକ୍ତି କରିବା ପାଇଁ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ୍ ତରଫରୁ ସମବାୟ ଆପଣଙ୍କ ଦ୍ୱାରରେ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

୨୫. ଖାଉଟୀ ଦ୍ରବ୍ୟର ସୁଷମ ବଣ୍ଟନ ପାଇଁ ଆଞ୍ଚଳିକ ଓ ପ୍ରାଥମିକ ଖାଉଟୀ ଭଣ୍ଡାରମାନଙ୍କୁ ପୁନଃଉଦ୍ଧାର କରାଯାଇଛି ।

୨୬. ଚାଷୀମାନଙ୍କୁ ସବୁ ସମୟରେ ସାହାଯ୍ୟ କରିବା ପାଇଁ ଶସ୍ୟ ବ୍ୟାଙ୍କ୍ ପ୍ରତିଷ୍ଠା କରାଯାଇଛି ।

୨୭. ଗୃହ ନିର୍ମାଣ କ୍ଷେତ୍ରରେ କ୍ରେଡ଼ିଟ୍ କମ୍ ସବ୍‌ସିଡ଼ି ସ୍କିମ ମାଧ୍ୟମରେ ଆର୍ଥିକ ସୀମାରେଖା ତଳେ ଥିବା ବ୍ୟକ୍ତିବିଶେଷ ଘରଟିଏ ପାଇପାରୁଛନ୍ତି ।

୨୮. କୃଷକମାନଙ୍କୁ କୃଷିଜାତ ପଦାର୍ଥର ମୂଲ୍ୟ ଦେବା ପାଇଁ କୃଷକ ବଜାର ସ୍ଥାପିତ ହୋଇଛି ।

୨୯. ପ୍ରକୃତ ସମବାୟକମାନଙ୍କ ହାତରେ ସଭ୍ୟକେନ୍ଦ୍ରିକ ଏବଂ ଆତ୍ମନିଯୁକ୍ତି ଭିତ୍ତିକ ସମବାୟ ଗଠନ ପାଇଁ ସ୍ୱୟଂ ସହାୟକ ସମବାୟ ଆଇନ ରାଜ୍ୟରେ ପ୍ରଣୟନ କରାଯାଇଛି ।

୩୦. ସମାଜର ଅର୍ଦ୍ଧାଧିକ ଜନସଂଖ୍ୟା ମହିଳାମାନଙ୍କୁ ସମବାୟ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ସାମିଲ କରିବା ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

ସମବାୟ ମନ୍ତ୍ରୀ
ଓଡ଼ିଶା

# ଏକବିଂଶ ଶତାବ୍ଦୀରେ ସମବାୟ ଆନ୍ଦୋଳନ ଓ ସମବାୟଭିତ୍ତିକ ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥା

ଯଜ୍ଞେଶ୍ୱର

ଜର୍ମାନୀର ରକ୍‌ଡେଲ୍ ପାୟୋନିୟରଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ସମବାୟ ଆନ୍ଦୋଳନର ପରିସର ବ୍ୟାପକ ହୋଇ ସମଗ୍ର ପୃଥିବୀର ଅଧିକାଂଶ ରାଷ୍ଟ୍ରରେ ଏକ ଅପରିହାର୍ଯ୍ୟ ଅର୍ଥନୈତିକ ଆନ୍ଦୋଳନ ଭାବେ ସ୍ୱୀକୃତ ହେବା ପରେ ଆନ୍ତର୍ଜାତୀୟ ସମବାୟ ଗୋଷ୍ଠୀ ଗଠନ କରାଯାଇଥିଲା । ଏହି ଗୋଷ୍ଠୀ ସମବାୟ ଅନୁଷ୍ଠାନମାନଙ୍କ ଦ୍ୱାରା ଅନୁସୃତ ନୀତି ନିର୍ଦ୍ଧାରଣ କରିବା ବ୍ୟତୀତ ସମବାୟ ଦର୍ଶନ ଆଧାରିତ ଏକ ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥା ସାରା ବିଶ୍ୱରେ ପ୍ରବର୍ତ୍ତନ କରିବାର ସୀମିତ ପ୍ରଚେଷ୍ଟା ଆରମ୍ଭ କରିଥିଲେ । ଏକଥା ସତ୍ୟ ଯେ, ପାଶ୍ଚାତ୍ୟରେ ଖାଉଟୀ ଆନ୍ଦୋଳନ ତଥା ଆମ ଦେଶରେ କୃଷି ଋଣ ବ୍ୟବସ୍ଥାକୁ ଭିତ୍ତି କରି ଗଢ଼ି ଉଠିଥିବା ସମବାୟ ଆନ୍ଦୋଳନ ନିଜର ପରିସରକୁ ବ୍ୟାପକ କରି ଉତ୍ପାଦନ, ବିପଣନ, ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିପାରିଛି । ବିକାଶଶୀଳ ରାଷ୍ଟ୍ରମାନଙ୍କର ଯୋଜନା ଆଧାରିତ ପ୍ରଗତିକୁ ତ୍ୱରାନ୍ୱିତ କରି ଏକ ସୁସ୍ଥ ସାମାଜିକ ବ୍ୟବସ୍ଥା ପ୍ରବର୍ତ୍ତନ କରିବାରେ ଏହି ଆନ୍ଦୋଳନ ପ୍ରମୁଖ ଭୂମିକା ଗ୍ରହଣ କରିପାରିଛି । ଗଣତାନ୍ତ୍ରିକ ରାଷ୍ଟ୍ରରେ ସମବାୟ ଆନ୍ଦୋଳନ ଜନସଚେତନତା ସୃଷ୍ଟି କରି ପ୍ରତ୍ୟେକ ନାଗରିକଙ୍କୁ ଦେଶର ଅର୍ଥନୀତିରେ ଅଂଶ ଗ୍ରହଣ କରିବାକୁ ଉତ୍ସାହିତ କରିପାରିଛି । ଏଇଠି ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ, ସମଗ୍ର ବିଶ୍ୱର ଅର୍ଥନୈତିକ ଦୃଶ୍ୟପଟ୍ଟରେ ଯେତେବେଳେ ଉଦାରୀକରଣ ଓ ଜଗତୀକରଣ ପ୍ରଭାବ ବିସ୍ତାର କରି ଚାଲିଛି, ସେତେବେଳେ ସମବାୟ ନୀତି ତଥା ଆଦର୍ଶର ପ୍ରାସଙ୍ଗିକତା ରହୁଛି କେଉଁଠି !

ଅର୍ଥନୀତିର ଉଦାରୀକରଣ ତଥା ଜଗତୀକରଣ ବ୍ୟବସାୟ ଓ ଶିଳ୍ପ କ୍ଷେତ୍ରରେ ଏକ ଅଭୂତପୂର୍ବ ପ୍ରତିଦ୍ୱନ୍ଦିତା ସୃଷ୍ଟି କରିଛି । ଏହି ପ୍ରତିଦ୍ୱନ୍ଦିତା ଶିଳ୍ପ-ଶିଳ୍ପ ମଧ୍ୟରେ, ଅନୁଷ୍ଠାନ ଅନୁଷ୍ଠାନ ମଧ୍ୟରେ ସୀମିତ ନରହି କ୍ରମେ ସାମାଜିକ ବ୍ୟବସ୍ଥାକୁ ପ୍ରସାରିତ ହୋଇଛି । ଅନେକ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଏବଂ କ୍ଷୁଦ୍ରଶିଳ୍ପ ଏହି ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହୋଇନପାରି ପ୍ରଭୂତ କ୍ଷତି ସହୁଥିବା ବେଳେ ଅନେକଗୁଡ଼ିଏ ରାଷ୍ଟ୍ର ଉଦ୍ୟୋଗ ଘରୋଇ ଉଦ୍ୟୋଗକୁ ହସ୍ତାନ୍ତର ହୋଇ ସାରିଲାଣି । ଏହି ପରିବର୍ତ୍ତିତ ଅର୍ଥନୀତିର ପ୍ରଭାବରେ ଆମ ଦେଶର ସାମାଜିକ ବ୍ୟବସ୍ଥାରେ ଅସନ୍ତୁଳନ ସୃଷ୍ଟି ହେବା ସମ୍ପୂର୍ଣ୍ଣ ସ୍ୱାଭାବିକ । ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକ କ୍ରମ ଅବକ୍ଷୟକୁ ପ୍ରତିରୋଧ କରିବା ସମ୍ଭବ ନହେଲେ ମଧ୍ୟ ସମବାୟ ଅନୁଷ୍ଠାନଗୁଡ଼ିକ କ୍ରମେ ସୁଦୃଢ଼ ହୋଇ ଅର୍ଥନୈତିକ ଓ ସାମାଜିକ ସନ୍ତୁଳନ ସୃଷ୍ଟି କରିବାକୁ ସକ୍ଷମ ହୋଇପାରିବେ, ଏଥିରେ ସନ୍ଦେହ ନାହିଁ । ଏହି ପରିପ୍ରେକ୍ଷୀରେ ଗୁଜୁରାଟ ଦୁଗ୍ଧ ଉତ୍ପାଦନକାରୀ ମହାସଂଘ ବା ଅମୁଲ୍‌ର ଉଦାହରଣ ନିଆଯାଇପାରେ । ଗ୍ଲାକ୍ସୋ, ବ୍ରିଟାନିଆ ଓ ନେଶ୍‌ଲେ ଭଳି ଆନ୍ତର୍ଜାତୀୟ କମ୍ପାନୀମାନେ ମଧ୍ୟ ଏହି ସଂସ୍ଥା ସହ ପ୍ରତିଦ୍ୱନ୍ଦିତା କରିବାରେ ସଫଳ ହୋଇ ପାରି ନାହାନ୍ତି । ଏହାର କାରଣ ସୁସ୍ପଷ୍ଟ । ସଭ୍ୟମାନଙ୍କ ପ୍ରତ୍ୟକ୍ଷ ଅଂଶ ଗ୍ରହଣରେ ସମୃଦ୍ଧ ଏହି ଅନୁଷ୍ଠାନ ଖାଉଟୀମାନଙ୍କର ଆବଶ୍ୟକତାକୁ ଆଖି ଆଗରେ ରଖି ନିଜର ଉତ୍ପାଦନକୁ ନିୟନ୍ତ୍ରଣ କରିପାରିଛି । ସମବାୟ ନୀତି ଏବଂ ଆଦର୍ଶରେ ଅନୁପ୍ରାଣିତ ହୋଇଥିବାରୁ ଏହା ସମ୍ଭବ ହୋଇଛି ।

କେନ୍ଦ୍ର ସରକାରଙ୍କ ଦ୍ୱାରା ଗଠିତ ଚୌଧୁରୀ ବ୍ରହ୍ମପ୍ରକାଶ କମିଟି ସମବାୟ ଦର୍ଶନ ଓ ନୀତି ଉପରେ ଆଧାରିତ ଏକ ଆଦର୍ଶ ସମବାୟ ଆଇନ ପ୍ରଣୟନ କରିବା ନିମନ୍ତେ ସବୁ ରାଜ୍ୟ ସରକାରଙ୍କୁ ପରାମର୍ଶ ଦେଇଥିଲେ । ଏହି ଆଇନରେ ସରକାରଙ୍କ ସମବାୟ ଅନୁଷ୍ଠାନଗୁଡ଼ିକର ଭୂମିକାକୁ ସଂକୁଚିତ କରାଯାଇ ପରିଚାଳନା ପରିଷଦକୁ ବ୍ୟବସାୟ ସଂସ୍ଥା ଭାବେ ଚଳାଇବା ନିମନ୍ତେ ଆବଶ୍ୟକୀୟ କ୍ଷମତା ପ୍ରଦାନ କରାଯିବାକୁ ପରାମର୍ଶ ଦିଆଯାଇଥିଲା । ଏହି ଆଇନରେ ପରିଚାଳନା ପରିଷଦକୁ ସମବାୟ ଅନୁଷ୍ଠାନଗୁଡ଼ିକୁ ବ୍ୟବସାୟିକ ଭିତ୍ତିରେ ପରିଚାଳିତ କରିବା ପାଇଁ ଆବଶ୍ୟକୀୟ କ୍ଷମତା ଦିଆଯାଇଅଛି । ସରକାରୀ ନିୟନ୍ତ୍ରଣରୁ ବାହାରେ ରହି ପରିବର୍ତ୍ତିତ ଅର୍ଥନୀତି ସହ ଖାପଖୁଆଇ ଏହି ଆଇନ ଅନୁସାରେ ନିବନ୍ଧିତ ସମବାୟ ସଂସ୍ଥାମାନେ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହେବାପାଇଁ ଆବଶ୍ୟକୀୟ ପଦକ୍ଷେପ ନେଇପାରିବେ । ଏହି ଅନୁଷ୍ଠାନଗୁଡ଼ିକ ସଭ୍ୟମାନଙ୍କର ନିଜସ୍ୱ ଅନୁଷ୍ଠାନ ହୋଇଥିବାରୁ ସମାଜର ପ୍ରତ୍ୟେକ ବର୍ଗର ଲୋକଙ୍କର ଆବଶ୍ୟକତା ପୂରଣ କରିବାର ଲକ୍ଷ୍ୟ ନେଇ ଉଦାରୀକରଣ ଓ ଜଗତୀକରଣ ଦ୍ୱାରା ସୃଷ୍ଟି ହେଉଥିବା

ଅର୍ଥନୈତିକ ଓ ସାମାଜିକ ଅସନ୍ତୁଳନକୁ ଯେ ସଫଳ ଭାବରେ ପ୍ରତିହତ କରିପାରିବେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ବିଂଶ ଶତାବ୍ଦୀରେ ଶେଷ ଦଶକର ଆରମ୍ଭରୁ ଆମ ଦେଶରେ ପ୍ରବର୍ତ୍ତିତ ମୁକ୍ତ ଏବଂ ବଜାରଭିତ୍ତିକ ଅର୍ଥନୀତି ପ୍ରତ୍ୟେକ ସମବାୟ ସଂସ୍ଥାକୁ ପ୍ରବଳ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ କରାଇଛି । ଅର୍ଥନୀତିର ଉଦାରୀକରଣ ଏବଂ ଜଗତୀକରଣ ଦ୍ୱାରା ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କର ବଜାରରେ ଅବାଧ ପ୍ରବେଶ ସରକାରୀ ଉଦ୍ୟୋଗ ତଥା ସମବାୟ ସଂସ୍ଥାମାନଙ୍କର ପୁନର୍ଗଠନ ଓ ପୁନର୍ବିନ୍ୟାସ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରି ଏହି ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହେବା ନିମନ୍ତେ ଏକ ବାଧ୍ୟତାମୂଳକ ବାତାବରଣ ସୃଷ୍ଟି କରିଛି । ଅନେକଗୁଡ଼ିଏ ରାଷ୍ଟ୍ରାୟତ୍ତ ସଂସ୍ଥା ଏହି ଆହ୍ୱାନର ମୁକାବିଲା କରିବାରେ ସକ୍ଷମ ହୋଇ ନପାରିବାରୁ କେନ୍ଦ୍ର ତଥା ରାଜ୍ୟ ସରକାର ସେମାନଙ୍କର ଘରୋଇକରଣ କରିବାକୁ ସ୍ୱାଭାବିକ ପଦକ୍ଷେପ ନେଉଛନ୍ତି । ଏହି ପ୍ରକ୍ରିୟା ଅବ୍ୟାହତ ରହିଲେ ହୁଏତ ଆଗାମୀ କେତେବର୍ଷ ମଧ୍ୟରେ ସରକାରୀ ଉଦ୍ୟୋଗଗୁଡ଼ିକ ଘରୋଇ କମ୍ପାନୀ ହାତକୁ ଚାଲିଯିବ । ଏହି ପରିପ୍ରେକ୍ଷୀରେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରାସଙ୍ଗିକ ପ୍ରଶ୍ନ ବୁଦ୍ଧିଜୀବୀମାନଙ୍କୁ ଆନ୍ଦୋଳିତ କରିବା ସ୍ୱାଭାବିକ । ମୁକ୍ତ ଏବଂ ବଜାର ଭିତ୍ତିକ ଅର୍ଥନୀତିର ପ୍ରଭାବରେ ଯଦି ସମସ୍ତ ସରକାରୀ ଉଦ୍ୟୋଗ ଘରୋଇ ଏବଂ ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କର ନିୟନ୍ତ୍ରଣାଧୀନ ହୁଏ, ଆମ ଦେଶରେ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରିଥିବା ୩୭ ପ୍ରତିଶତ ଜନସାଧାରଣଙ୍କର ସ୍ୱାର୍ଥରକ୍ଷା କରାଯିବ କେମିତି ?

ସ୍ୱାଧୀନତା ପରବର୍ତ୍ତୀ କାଳରେ ଜନସାଧାରଣଙ୍କ ସ୍ୱାର୍ଥକୁ ଆଖି ଆଗରେ ରଖି ଅତ୍ୟାବଶ୍ୟକୀୟ ଶିଳ୍ପୋଦ୍ୟୋଗଗୁଡ଼ିକ ରାଷ୍ଟ୍ର ଅଧୀନରେ ରହିଥିଲା ଏବଂ ପରବର୍ତ୍ତୀ କାଳରେ ମୁଖ୍ୟ ଘରୋଇ ବ୍ୟାଙ୍କଗୁଡ଼ିକୁ ଜାତୀୟକରଣ କରାଯାଇଥିଲା । ଏତଦ୍‌ବ୍ୟତୀତ ସମବାୟ ଋଣ ବ୍ୟବସ୍ଥାର ବ୍ୟାପକ ଭିତ୍ତିଭୂମିକୁ ସରକାରୀ ପ୍ରୋତ୍ସାହନ ମାଧ୍ୟମରେ ଦୃଢ଼ୀଭୂତ କରାଯାଇ ଗ୍ରାମ୍ୟଭିତ୍ତିକ ଅର୍ଥନୀତିକୁ ପୁଷ୍ଟ କରିବା ପାଇଁ ଅନେକଗୁଡ଼ିଏ ସକରାତ୍ମକ ପଦକ୍ଷେପ ନିଆଯାଇଥିଲା । ଉଦାରୀକରଣ ଅର୍ଥନୀତିରେ ଏହି ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ଘଟିଛି । ୨୦୦୪ ମସିହାରେ ଶହେ ବର୍ଷରେ ପଦାର୍ପଣ କରୁଥିବା ସମବାୟ ଆନ୍ଦୋଳନ ଏକ ଅଭୂତପୂର୍ବ ଆହ୍ୱାନର ସମ୍ମୁଖୀନ ହୋଇଛି । ଜାତୀୟକରଣ ବ୍ୟାଙ୍କମାନଙ୍କର କୃଷି ଋଣ ପ୍ରଦାନ କ୍ଷେତ୍ରରେ ପ୍ରବେଶ, ସୁଧହାର ହ୍ରାସ, ପୋଷ୍ଟ ଅଫିସ୍ ମାଧ୍ୟମରେ କୃଷିଋଣ ଯୋଗାଇ ଦେବାର ସରକାରୀ ଘୋଷଣା, ପ୍ରୁଡ଼େନ୍‌ସିଆଲ୍ ନିୟମର ପ୍ରଚଳନ, ସମବାୟ ସଂସ୍ଥାମାନଙ୍କରୁ ସରକାରୀ ପ୍ରୋତ୍ସାହନ ଅପସାରଣ, ସମବାୟ ଓ ଅନ୍ୟାନ୍ୟ ବ୍ୟବସାୟିକ ଅନୁଷ୍ଠାନ ପାଇଁ ସମାନ ନିୟମର ପ୍ରଚଳନ ପ୍ରଭୃତି ସମବାୟ ଋଣ ବ୍ୟବସ୍ଥା ତଥା ଅନ୍ୟାନ୍ୟ ସମବାୟ ଅନୁଷ୍ଠାନଗୁଡ଼ିକର ପ୍ରାସଙ୍ଗିକତା ଉପରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ମୁକ୍ତ ଅର୍ଥନୀତିର ପ୍ରଭାବରେ ସରକାରୀ ଉଦ୍ୟୋଗଗୁଡ଼ିକର ଘରୋଇକରଣ କରାଯାଉଥିବାବେଳେ ଯଦି ସମବାୟ ଅନୁଷ୍ଠାନଗୁଡ଼ିକ କ୍ରମେ ଦୁର୍ବଳ ହୋଇ ନିଜର ପ୍ରାସଙ୍ଗିକତା ହରାଇ ବସନ୍ତି, ତେବେ ଆମ ଦେଶରେ ସାମାଜିକ ତଥା ଅର୍ଥନୈତିକ ବ୍ୟବସ୍ଥାରେ ଏକ ଭୟଙ୍କର ଅସନ୍ତୁଳନ ସୃଷ୍ଟି ହେବା ନିଃସନ୍ଦେହ । ଘରୋଇ ଉଦ୍ୟୋଗଗୁଡ଼ିକ ଜନସାଧାରଣଙ୍କର ସ୍ୱାର୍ଥ ଅପେକ୍ଷା ନିଜର ମୁନାଫା ଉପରେ ପ୍ରାଧାନ୍ୟ ଦେଉଥିବାରୁ ସମାଜରେ ବିତ୍ତଶାଳୀ ଏବଂ ଦରିଦ୍ରମାନଙ୍କ ମଧ୍ୟରେ ବ୍ୟାପକ ଅସାମଞ୍ଜସ୍ୟ ସୃଷ୍ଟି ହେବା ସଂପୂର୍ଣ୍ଣ ସ୍ୱାଭାବିକ ।

ଏହି ପରିପ୍ରେକ୍ଷୀରେ ସମବାୟ ଆନ୍ଦୋଳନର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଘରୋଇ ଉଦ୍ୟୋଗ ସହ ପ୍ରତିଦ୍ୱନ୍ଦିତା କରି ଜନସାଧାରଣଙ୍କର ଆଶା ଓ ଆକାଂକ୍ଷା ପୂରଣ କରିବା ପାଇଁ ଗତ ଶହେ ବର୍ଷ ଭିତରେ ଏକ ବଳିଷ୍ଠ ଭିତ୍ତିଭୂମି ପ୍ରତିଷ୍ଠା ହୋଇପାରିଛି । ପରିବର୍ତ୍ତିତ ପରିସ୍ଥିତିର ସମ୍ମୁଖୀନ ହୋଇ ମୁକ୍ତ ଓ ବଜାର ଭିତ୍ତିକ ଅର୍ଥନୀତିର ମୁକାବିଲା କରିବାକୁ ପ୍ରତ୍ୟେକ ସମବାୟ ଅନୁଷ୍ଠାନର ପୁନର୍ଗଠନ ଏବଂ ପୁନର୍ବିନ୍ୟାସ ନିତାନ୍ତ ଆବଶ୍ୟକ । ପ୍ରତ୍ୟେକ ସଭ୍ୟମାନଙ୍କର ଆବଶ୍ୟକତାକୁ ଆଖି ଆଗରେ ରଖି ଅନୁଷ୍ଠାନମାନଙ୍କର କାର୍ଯ୍ୟଧାରାରେ ବ୍ୟାପକ ପରିବର୍ତ୍ତନ ଆଣିବାକୁ ହେବ । ସୂଚନା ପ୍ରଯୁକ୍ତି ବିଦ୍ୟା ମାଧ୍ୟମରେ ଅନୁଷ୍ଠାନଗୁଡ଼ିକରେ ସମନ୍ୱୟ ଆଣି ଉନ୍ନତମାନର ସେବା ଯୋଗାଇଦେବା ଏହି ଆନ୍ଦୋଳନର ଲକ୍ଷ୍ୟ ହେବା ଉଚିତ । ଗୋଟିଏ ଶତାବ୍ଦୀ ଧରି ଅନେକ ବାଧାବିଘ୍ନର ସମ୍ମୁଖୀନ ହୋଇ ନିଜର ପ୍ରାସଙ୍ଗିକତା ପ୍ରତିଷ୍ଠା କରିଥିବା ଦେଶର ସର୍ବବୃହତ ସାମାଜିକ ତଥା ଅର୍ଥନୈତିକ ଆନ୍ଦୋଳନ ପରିବର୍ତ୍ତିତ ପରିସ୍ଥିତିର ସମ୍ମୁଖୀନ ହୋଇ ସଭ୍ୟମାନଙ୍କର ଆଶା ଆକାଂକ୍ଷା ପୂରଣ କରିବାରେ ସକ୍ଷମ ହୋଇପାରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

■■■■■■■■■■

# ସମବାୟ ଆନ୍ଦୋଳନ ଓ ଉତ୍କଳଗୌରବ ମଧୁସୂଦନ

ସୁଦର୍ଶନ ନାୟକ

**ଉ**ତ୍କଳଗୌରବ ମଧୁସୂଦନ ଦାସ ଥିଲେ ଆଧୁନିକ ଓଡ଼ିଶାର ପ୍ରତିଷ୍ଠାତା । ସେ ଥିଲେ ଯୁଗାନ୍ତକାରୀ ପ୍ରବାଦ ପୁରୁଷ, ଯାହାଙ୍କୁ କାଳ ଗ୍ରାସ କରିପାରିନାହିଁ । ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ମାଧ୍ୟମରେ ପ୍ରସ୍ଫୁଟିତ ହୋଇଥିଲା ଅସାଧାରଣ ଜାତୀୟତା ଭାବ ତଥା ବହୁମୁଖୀ ପ୍ରତିଭା । ସେ ଥିଲେ ଓଡ଼ିଆ ଜାତିର ପ୍ରଥମ ସ୍ନାତକୋତ୍ତର, ପ୍ରଥମ ଓଡ଼ିଆ ଓକିଲ, ପ୍ରଥମ ଓଡ଼ିଆ ଯିଏ କି ଇଉରୋପ ଗସ୍ତ କରିଥିଲେ । ଇଂରେଜ ଶାସନାଧୀନ ପ୍ରାଦେଶିକ ପରିଷଦର ପ୍ରଥମ ଓଡ଼ିଆ ସଭ୍ୟ, ବିହାର-ଓଡ଼ିଶା ପ୍ରାଦେଶିକ ସରକାରଙ୍କ ପ୍ରଥମ ଓଡ଼ିଆ ମନ୍ତ୍ରୀ ଏବଂ ପ୍ରଥମ ଓଡ଼ିଆ ମନ୍ତ୍ରୀ, ଯିଏକି ନିଜ ଆଦର୍ଶ ଓ ଉତ୍କଳୀୟ ସ୍ୱାର୍ଥରକ୍ଷା ପାଇଁ ତାଙ୍କ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ମଧୁବାବୁ ଜଣେ ବିଚକ୍ଷଣ ପ୍ରତିଭାସମ୍ପନ୍ନ ବହୁମୁଖୀ ବ୍ୟକ୍ତିତ୍ୱ, ଯାହାର ପଟ୍ଟାନ୍ତର ନାହିଁ । କଲିକତାରେ ଉଚ୍ଚଶିକ୍ଷା ତଥା କେତେବର୍ଷ ଓକିଲାତି କରିବା ପରେ ସେ ଯେତେବେଳେ ନିଜର ଜନ୍ମମାଟିକୁ ଫେରିଥିଲେ ୧୮୮୧ ମସିହାରେ ତାହାର ଅର୍ଥନୈତିକ ଉନ୍ନତି ସାଧନ ପାଇଁ ତଥା ବିଖଣ୍ଡିତ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ତଥା ଦେଶର ସ୍ୱାଧୀନତା ପାଇଁ ମଧୁବାବୁ ଶୟନେ, ସପନେ ଓ ଜାଗରଣେ ଅହରହ କାର୍ଯ୍ୟ କରୁଥିଲେ । ଉତ୍କଳଗୌରବ ମଧୁସୂଦନଙ୍କ ଅବିସ୍ମରଣୀୟ ଅବଦାନ ଥିଲା ଓଡ଼ିଶାରେ ସମବାୟ ଆନ୍ଦୋଳନ । ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକଙ୍କୁ ତଥା ଦିନ ମଜୁରିଆ ଏବଂ ଖଟିଖିଆମାନଙ୍କୁ ଏକତ୍ର କରି ସାଂଗଠନିକ ସମବାୟ ଆନ୍ଦୋଳନର ବୀଜବପନ କରିଥିଲେ ମଧୁସୂଦନ । ସେ ୧୮୯୮ ମସିହାରେ କଟକଠାରେ କଟକ କୋଅପରେଟିଭ୍ ଷ୍ଟୋର୍ ନାମରେ ପ୍ରଥମ ସମବାୟ ସଂସ୍ଥା ଗଠନ କରିଥିଲେ । ତେଣୁ ସେ ଓଡ଼ିଶାର ସମବାୟ ଆନ୍ଦୋଳନର ଆଦ୍ୟ ପ୍ରବର୍ତ୍ତକ ଭାବରେ ଅବିସ୍ମରଣୀୟ ।



ଶିଳ୍ପ ବିପ୍ଳବ ପରେ ୟୁରୋପରେ ଶ୍ରମିକ ଦିନ ମଜୁରିଆ ଅକଥନୀୟ ଅର୍ଥନୈତିକ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲେ । ପୁଞ୍ଜିପତି ତଥା ଅର୍ଥନୈତିକ ଅସମାନତା ବିରୁଦ୍ଧରେ ଏକ ସଂଗଠନ ବିଦ୍ରୋହର ରୂପ ନେଇ ସମବାୟ ଆନ୍ଦୋଳନ ସୃଷ୍ଟି ହୁଏ । ୧୮୪୪ ମସିହାରେ ଇଂଲଣ୍ଡର ରକ୍‌ଡେଲଠାରେ ୨୮ ଜଣ ବୁଣାକାର ଶ୍ରମିକ ସଂଗଠିତ ହୋଇ ସେମାନଙ୍କ ୬ ମାସର ସଞ୍ଚୟ ଜମାରାଶିକୁ ଏକତ୍ର କରି ପ୍ରଥମ ସମବାୟ ସମିତି ଗଠନ କରିଥିଲେ । ଏହି ସମିତି ଗଣତାନ୍ତ୍ରିକ ପଦ୍ଧତି ଉପରେ ପର୍ଯ୍ୟବସିତ ତଥା ପରିଚାଳିତ ଥିଲା । ପ୍ରତ୍ୟେକ ଅଂଶୀଦାରଙ୍କ ସମାନ ଅଧିକାର ଏବଂ ପ୍ରତ୍ୟେକ ସଭ୍ୟଙ୍କ ଗୋଟିଏ ଭୋଟ, ସଭ୍ୟମାନଙ୍କର ସମିତି ପରିଚାଳନାରେ ପ୍ରତ୍ୟକ୍ଷ ଅଂଶଗ୍ରହଣ ଓ ପାରସ୍ପରିକ ସହଯୋଗ ଥିଲା ଉକ୍ତ ସମବାୟର ମୂଳମନ୍ତ୍ର । ଡାରଓ୍ୱିନ୍‌ଙ୍କ 'ଯୋଗ୍ୟତମର ଉଦ୍‌ବର୍ତ୍ତନ' ମତବାଦର ବିପରୀତ ବିକଳ୍ପ ଭାବେ ସମବାୟ ପ୍ରସାରିତ ହେଲା । ବିଖ୍ୟାତ ସମାଜତତ୍ତ୍ୱବିତ୍ କ୍ରପୋଟ୍‌କିନ୍‌ଙ୍କ ପ୍ରତିଯୋଗିତାମୂଳକ ପରିସ୍ଥିତିରେ ଦୁର୍ବଳମାନଙ୍କ ସାଙ୍ଗଠନିକ ଶକ୍ତି ସମବାୟ ହିଁ ସଫଳ ହେବାର ପ୍ରକୃଷ୍ଟ ମାଧ୍ୟମ । ରବର୍ଟ ଓ୍ୱେନ୍ ମଧ ସମବାୟକୁ ଏକ ଯଥାର୍ଥ ଅର୍ଥନୈତିକ ଅସ୍ତ୍ର ରୂପେ ଅଭିହିତ କରିଥିଲେ । କାଳକ୍ରମେ ୟୁରୋପର ଅନ୍ୟାନ୍ୟ ସହରରେ ସମବାୟ ସମିତିମାନ ଗଠିତ ହୋଇଥିଲା । ୧୮୯୫ ମସିହାରେ ଆନ୍ତର୍ଜାତିକ ସ୍ତରରେ ସର୍ବପ୍ରଥମେ ଆନ୍ତର୍ଜାତିକ ସମବାୟ ମୈତ୍ରୀ (ଆଇ.ସି.ଏ.) ଜନ୍ମଲାଭ କରି ସମବାୟକୁ ଆନ୍ତର୍ଜାତିକ ତଥା ବିଶ୍ୱ ଆନ୍ଦୋଳନର ରୂପ ଦେଇଥିଲା । ସମବାୟ ଆନ୍ଦୋଳନର ୬ ଗୋଟି ମୂଳମନ୍ତ୍ର ଏହି ଆଇ.ସି.ଏ. ଦ୍ୱାରା ପ୍ରଣୀତ ହୋଇଥିଲା ।

୧. ମୁକ୍ତ ଏବଂ ସ୍ୱେଚ୍ଛାଧୀନ ସଭ୍ୟ, ୨. ଗଣତାନ୍ତ୍ରିକ ନିୟନ୍ତ୍ରଣ, ୩. ମୂଳଧନ ଉପରେ ସୀମିତ ଲାଭ, ୪. ସଭ୍ୟମାନଙ୍କର ଲାଭାଂଶ, ୫. ସମବାୟ ଶିକ୍ଷା ଓ ୬. ସମବାୟ ସଂସ୍ଥାମାନଙ୍କ ମଧ୍ୟରେ ସହଯୋଗ ।

ମଧୁବାବୁ ନିଜର ଚିକିତ୍ସା ପାଇଁ ୧୮୯୭ ମସିହାରେ ଇଂଲଣ୍ଡ ଯାତ୍ରା କରିଥିଲେ । ଏହି ଯାତ୍ରା ଥିଲା ଏକ ଐତିହାସିକ ଯାତ୍ରା । ଓଡ଼ିଶାର ଅର୍ଥନୈତିକ ଅବସ୍ଥାର ଉନ୍ନତି ପାଇଁ ସ୍ୱଦେଶୀ ଶିଳ୍ପର ପୁନଃ ପ୍ରତିଷ୍ଠା ଥିଲା ତାଙ୍କର ସଙ୍କଳ୍ପ । ଇଂଲଣ୍ଡରେ କିଛି ଦିନର ଅବସ୍ଥାନ ଅବସରରେ ସେ ଏକ ଭିନ୍ନ ସଂସ୍କୃତି ଓ ପରମ୍ପରା ସହିତ ପରିଚିତ ହୋଇଥିଲେ, ଯାହାକି ଥିଲା ସମବାୟ ସଂସ୍ଥା ଓ ତା'ର କାର୍ଯ୍ୟ । ୧୮୪୪ ମସିହାରେ ରକ୍‌ଡେଲ୍ ଗୋଷ୍ଠୀଙ୍କ ଦ୍ୱାରା ପ୍ରତିଷ୍ଠିତ ସମବାୟ ସମିତିର ସଫଳତା ପରେ ଇଂଲଣ୍ଡ, ଜର୍ମାନୀ ଏବଂ ଇଟାଲୀରେ ଅନେକ ସମବାୟ ସମିତି ଗଢ଼ି ଉଠିଥିଲା । ୧୮୬୨ ମସିହାରେ ମଞ୍ଚେଷ୍ଟାରଠାରେ ଖାଉଟି ସମବାୟ ସମିତିର ପ୍ରାୟ ୩୦୦ରୁ ଅଧିକ ପ୍ରତିନିଧି ସମ୍ମିଳିତ ହୋଇ କେନ୍ଦ୍ରୀୟ ଖାଉଟି ସମବାୟ ସମିତି ଗଠନ କରିଥିଲେ । ଅଟାକଳଠାରୁ ଆରମ୍ଭ କରି ବିସ୍କୁଟ ତିଆରି ସବୁ ସମବାୟଭିତ୍ତିକ ସମିତି ମାଧ୍ୟମରେ ସଭ୍ୟମାନେ ତାଙ୍କର ଅତ୍ୟାବଶ୍ୟକ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟମାନ ସୁଲଭ ମୂଲ୍ୟରେ ପାଇ ପାରୁଥିଲେ । ମଧୁବାବୁ ବ୍ୟକ୍ତିଗତ ଭାବେ ରକ୍‌ଡେଲ୍ ସମିତି ଏବଂ ଇଂଲଣ୍ଡ, ଫ୍ରାନ୍ସ୍ ଏବଂ ଜର୍ମାନୀରେ ସଫଳ ରୂପେ କାର୍ଯ୍ୟ କରୁଥିବା ଅନ୍ୟ କେତେକ ସମବାୟ ସମିତି ପରିଦର୍ଶନ କରି ଅନୁପ୍ରାଣିତ ହୋଇଥିଲେ । ଇଂଲଣ୍ଡ ଯାତ୍ରା ପରିସମାପ୍ତି ପରେ ମଧୁବାବୁଙ୍କ ସଙ୍କଳ୍ପ ଥିଲା ଭାରତୀୟ କ୍ଷୁଦ୍ର ତଥା ଗ୍ରାମ୍ୟ ଶିଳ୍ପର ଆଧୁନିକୀକରଣ ଏବଂ ସମବାୟ ସମିତି ଗଠନ । ଏହି ଉଦ୍ଦେଶ୍ୟରେ ମଧୁବାବୁ କଟକରେ ଅନେକ ମଞ୍ଚରେ ତାଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ଅନୁଭୂତିକୁ ପ୍ରକାଶ କରି ଲୋକମାନଙ୍କ ମଧ୍ୟରେ ବିଶେଷକରି ଦୁର୍ବଳ ଶ୍ରେଣୀର ସଭ୍ୟ, ଦିନ ମଜୁରିଆ, ଶିଳ୍ପ ଶ୍ରମିକମାନଙ୍କ ମଧ୍ୟରେ ଏକ ନୂତନ ଉନ୍ମାଦନା ତଥା ଜାଗରଣ ସୃଷ୍ଟି କରିଥିଲେ । ସେତେବେଳେ ପ୍ରକାଶିତ ଉତ୍କଳ ଦୀପିକା (ଡିସେମ୍ବର ୪, ୧୮୯୭)ରେ ସମବାୟ ସମିତି ଗଠନ କରିବା ଉଦ୍ଦେଶ୍ୟରେ ମଧୁବାବୁଙ୍କ ପ୍ରାରମ୍ଭିକ ଭାଷଣ ପ୍ରକାଶିତ ହୋଇଥିଲା । ୧୮୯୮ ମସିହା ଫେବୃଆରୀ ମାସଠାରୁ ପ୍ରତି ଶନିବାର ସନ୍ଧ୍ୟାରେ ମଧୁବାବୁ ବିଭିନ୍ନ ବର୍ଗର ବ୍ୟକ୍ତିମାନଙ୍କ ସହ ନିଜର ପ୍ରକଳ୍ପ ସମ୍ବନ୍ଧରେ ଆଲୋଚନା କରୁଥିଲେ ଏବଂ ସମବାୟ ସମିତି ଗଠନ କରିବାକୁ ଜନସଚେତନତା ସୃଷ୍ଟି କରୁଥିଲେ । ୧୮୯୮ ଜୁନ୍ ମାସ ୧୧ ତାରିଖ ଦିନ କଟକ ଖାଉଟି ଭଣ୍ଡାର ନାମରେ ଭାରତର ପ୍ରଥମ ସମବାୟ ସମିତି ମଧୁବାବୁଙ୍କ ପ୍ରଚେଷ୍ଟାରେ ଜନ୍ମଲାଭ କରିଥିଲା । ସେ ସମ୍ପର୍କରେ ଏକ ବିବରଣୀ ଉତ୍କଳ ଦୀପିକା ଜୁନ୍ ୧୮ ତାରିଖ ୧୮୯୮ ସଂସ୍କରଣରେ ପ୍ରକାଶିତ ହୋଇଥିଲା, ତାହା ନିମ୍ନମତେ ଉଦ୍ଧୃତ କରାଯାଇଛି -

ମଧୁସୂଦନ ଦାସଙ୍କ ଘରଠାରେ ୧୮୯୮ ମସିହା ଜୁନ୍ ମାସ ୧୧ ତାରିଖରେ ହୋଇଥିବା ଏକ ସର୍ବସାଧାରଣ ସଭାରେ ବହୁସଂଖ୍ୟକ ଓକିଲ, ମୁକ୍ତାର ଏବଂ ଅମଲା ଉପସ୍ଥିତ ଥିଲେ । ତହିଁରେ ଅଂଶୀଦାର ଓ ସର୍ବସାଧାରଣଙ୍କୁ ଚାଉଳ, ଡାଲି, ଘିଅ, ତେଲ, ଲୁଗା, ଜାଳେଣୀ କାଠ ଇତ୍ୟାଦି ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟମାନ ଯୋଗାଇବା ପାଇଁ ଗୋଟିଏ ଯୌଥ ଭଣ୍ଡାର ସ୍ଥାପନ କରିବାକୁ ସ୍ଥିର ହେଲା ।

ଏହି କାର୍ଯ୍ୟ ଟ.୧୦୦୦୦/- ମୂଳଧନରେ ଆରମ୍ଭ ହେବ, ତାହା ୨୦୦୦ ଅଂଶରେ ବିଭକ୍ତ ହେବ । ପ୍ରତି ଅଂଶର ମୂଲ୍ୟ ଟ.୫/- । ଚଳିତ ମାସ ୨୬ ତାରିଖ ପର୍ଯ୍ୟନ୍ତ ଉକ୍ତ ଅଂଶମାନ ବଣ୍ଟାଯିବ ଏବଂ ଯାହାଙ୍କର ଯେତେ ଅଂଶ ନେବାର ଇଚ୍ଛା ହେବ, ସେ ତାହା ଲେଖି କଟକ ଚଣ୍ଡୀ ନିବାସୀ ମଧୁସୂଦନ ଦାସ, ଅବୈନିତିକ ସମ୍ପାଦକଙ୍କ ସମୀପକୁ ଉକ୍ତ ତାରିଖ ମଧ୍ୟରେ ଆବେଦନ କରିପାରିବେ । ଯେ ଯେତେ ଅଂଶ ନେବେ ତହିଁର ଅର୍ଦ୍ଧେକ ମୂଲ୍ୟ ଆଗାମୀ ଜୁଲାଇ ମାସ ୫ ତାରିଖ କିମ୍ବା ତହିଁ ପୂର୍ବେ ଦେବାକୁ ଏବଂ ଅବଶିଷ୍ଟ ଟଙ୍କା ଆଗାମୀ ଅଗଷ୍ଟ ମାସ ୫ ତାରିଖ ଆଗରୁ ଦେବାକୁ ହେବ ।

ନିମ୍ନଲିଖିତ ଭଦ୍ରବ୍ୟକ୍ତିମାନେ ଡାଇରେକ୍ଟର ପଦରେ ନିଯୁକ୍ତ ହୋଇ ଅଛନ୍ତି ।

ବାବୁ ହରିଚରଣ ବାନାର୍ଜୀ (ଓକିଲ)
ବାବୁ ମଧୁସୂଦନ ଦାସ (ଓକିଲ)
ବାବୁ ଜାନକୀନାଥ ବୋଷ (ଓକିଲ)
ବାବୁ ବନମାଳୀ ଦାସ (ମୁକ୍ତାର)
ବାବୁ ଯଦୁନନ୍ଦନ ମଜୁମଦାର (କିଲଟରୀ ନାଜିର)
ବାବୁ ଜଗତ ବଲ୍ଲଭ ଘୋଷ (ଜଜ୍ ଅଦାଲତ ସିରସ୍ତାଦାର)
ମୁନ୍‌ସୀ ମେହମୁଦ୍ ଅଲ୍ଲୀ (ଜଜ୍ ଅଦାଲତ ସିରସ୍ତାଦାର)

ବାବୁ ମଧୁସୂଦନ ଦାସ ଉକ୍ତ ଯୌଥ ଭଣ୍ଡାରର ସମ୍ପାଦକ ଏବଂ ବାବୁ ଜାନକୀନାଥ ବୋଷ କୋଷାଧ୍ୟକ୍ଷ ନିଯୁକ୍ତ ହେଲେ । ପ୍ରତି ୬ ମାସରେ ଅଂଶୀଦାରମାନଙ୍କ ସଭା ହେବ । ଏହା ଥିଲା କେବଳ ଓଡ଼ିଶାରେ କାହିଁକି ସମଗ୍ର ଦେଶରେ ସମବାୟ ଆନ୍ଦୋଳନର ଐତିହାସିକ ଅଭ୍ୟୁଦୟ । ମଧୁବାବୁ ସମବାୟ ଆନ୍ଦୋଳନର ପ୍ରତିଷ୍ଠାତା ରୂପେ ଆଜି ସ୍ମରଣୀୟ । ସ୍ୱଳ୍ପ ସମୟ ମଧ୍ୟରେ ଏହି ଭଣ୍ଡାର ଅତ୍ୟନ୍ତ ଲୋକପ୍ରିୟ ହୋଇ ପାରିଥିଲା । ୧୮୯୮ ମସିହା ଜୁନ୍ ମାସ ୩୦ ତାରିଖ ଦିନ ଏକ ସଭା ହୋଇ ସଭ୍ୟ ଗ୍ରହଣ ତଥା ସମବାୟର ମୂଳନୀତି ଅନୁସାରେ ଭଣ୍ଡାରରେ କାର୍ଯ୍ୟ ନିର୍ବାହ କିପରି ହେବ, ସେ ସମ୍ପର୍କରେ ସିଦ୍ଧାନ୍ତ ନିଆଯାଇଥିଲା । ୨୬୦ ଜଣ ପ୍ରଥମେ ଅଂଶ ପାଇଁ ଆବେଦନ କରିଥିଲେ । ତନ୍ମଧ୍ୟରୁ ୧୬୦ ଜଣ କଟକ ନିବାସୀ ଥିଲେ । (ସମବାୟ ଆନ୍ଦୋଳନର ଆଦ୍ୟ ପ୍ରବର୍ତ୍ତକ ମଧୁବାବୁ - ଶ୍ରୀ ସୁରସିଂହ ପଟ୍ଟନାୟକ - ସମବାୟ ସମାଚାର ତା.୧୫ ଏପ୍ରିଲ, ୨୦୦୧)

ମଧୁବାବୁଙ୍କ ପ୍ରେରଣାରେ ସ୍ୱର୍ଗତ ବିଦ୍ୟାଧର ପଣ୍ଡା, ପ୍ରଧାନ ଶିକ୍ଷକ, ସୁବର୍ଣ୍ଣପୁର ମଧ ମାତୃଭାଷା ବିଦ୍ୟାଳୟ, ୧୯୦୩ ମସିହାରେ ବାଙ୍କୀଠାରେ ଗ୍ରାମ୍ୟ ଋଣ ସମବାୟ ସମିତି ଗଠନ କରିଥିଲେ । ୧୯୦୭ ମସିହାରେ ଆହୁରି ୪ ଗୋଟି ଗ୍ରାମ ସମବାୟ ସମିତି ପ୍ରତିଷ୍ଠା କରାଯାଇଥିଲା । ୧୯୧୦ ମସିହାରେ ୫୦ ଗୋଟି ସମବାୟ ସମିତିକୁ ନେଇ ବାଙ୍କୀ ଡମପଡ଼ା କେନ୍ଦ୍ର ସମବାୟ ସଂଘ ପ୍ରତିଷ୍ଠା କରାଯାଇଥିଲା, ଯାହାକି କାଳକ୍ରମେ ବାଙ୍କୀ ସମବାୟ ବ୍ୟାଙ୍କ ଭାବେ ନାମିତ କରାଯାଇଥିଲା । ଏହି ଉଲ୍ଲେଖନୀୟ କାର୍ଯ୍ୟ ପାଇଁ ବିଦ୍ୟାଧର ପଣ୍ଡାଙ୍କୁ ତତ୍କାଳୀନ ଇଂରେଜ ସରକାର ୧୯୧୫ ମସିହାରେ ରାଏ ସାହେବ ଏବଂ ୧୯୨୪ ମସିହାରେ ରାଏ ବାହାଦୁର ପଦବୀରେ ଅଳଙ୍କୃତ କରିଥିଲେ । ଏହା ଥିଲା ଆମ ରାଜ୍ୟରେ ସମବାୟ ଆନ୍ଦୋଳନର ଗୌରବମୟ ଇତିହାସ ଏବଂ ମଧୁବାବୁଙ୍କ ଅବିସ୍ମରଣୀୟ ଦାନ ।

ହରିଜନବର୍ଗର ଲୋକମାନଙ୍କୁ ଏକତ୍ର କରି ସେମାନଙ୍କ ମଧ୍ୟରେ ଏକ ଆଶାର କିରଣ ସୃଷ୍ଟି କରିଥିଲେ ମଧୁବାବୁ । କଟକଠାରେ ତାଙ୍କର ଚମଡ଼ା କାରଖାନାରେ ସେମାନଙ୍କୁ ନିଯୁକ୍ତି ଦେଇ ଆଧୁନିକ ଜ୍ଞାନକୌଶଳରେ ଜୋତା ତିଆରି କରିବା ପାଇଁ ମଧୁବାବୁଙ୍କ ପ୍ରେରଣା ଏବଂ ସଙ୍କଳ୍ପ ଅବିସ୍ମରଣୀୟ । ଜୋତା କାରଖାନାର ଶ୍ରମିକମାନଙ୍କୁ ସର୍ବଦା ଉତ୍ସାହିତ କରି ସେମାନଙ୍କ ମଧ୍ୟରେ କର୍ତ୍ତବ୍ୟ ପାଇଁ ଆଗ୍ରହ ସୃଷ୍ଟି କରିପାରିଥିଲେ ସେ । ପାଟଣାଠାରେ ୧୯୨୪ ମସିହା ଫେବୃଆରୀ ୧୭ ତାରିଖ ଦିନ Dignity of Labour ଉପରେ ମଧୁବାବୁ ଦେଇଥିବା ଭାଷଣରେ କେତେକ ଅଂଶ ଏଠାରେ ଉଲ୍ଲେଖ କରାଯାଇଛି ।

The landless untouchable classes have been a source of anxiety to me from the early days of my industrial activities. Within the last few years there has been an attempt to raise their social position, to place them on a level with the higher classes. Their friends have appealed to feelings of humanity, to reason, to the state of things in other countries. It is not any province to test these methods by the actual results achieved. I shall give you an account of the method, I pursued. I directed my attention to the economic aspect of the position of these class. I followed the principle by which General Booth succeeded in uplifting the fallen and the despised in other countries of the world. First give me a man work by which he can earn enough to keep him comfortable and then talk to him of moral and religious side of human nature. So from the year 1897, I had employed the untouchables in my manufacturing of shoes and from the year 1909. I had fully engaged them in the remunerative enterprise of tannery.

(Madhusudan Das - The pride of the Nation- Shri Surasingha Patnaik, 1999, p.102)

ମହାତ୍ମା ଗାନ୍ଧୀ ମଧୁସୂଦନଙ୍କ ଏହି କାର୍ଯ୍ୟରେ ଗଭୀର ଭାବେ ଅନୁପ୍ରାଣିତ ହୋଇ ୧୯୨୫ ମସିହା ଅଗଷ୍ଟ ମାସ ୧୯ ତାରିଖ ଦିନ ତାଙ୍କର ଜୋତା କାରଖାନାର କାର୍ଯ୍ୟ କରୁଥିବା ମୋଚି ତଥା ହରିଜନ କର୍ମଚାରୀମାନଙ୍କ ଜୀବନଶୈଳୀ ଅନୁଧ୍ୟାନ କରିବା ପାଇଁ ଆସିଥିଲେ । ମଧୁବାବୁଙ୍କ ଉତ୍କଳ ଟାନେରୀ ପରିଦର୍ଶନ ପରେ, ମହାତ୍ମା ଗାନ୍ଧୀ Young Indiaର ସେପ୍ଟେମ୍ବର ୯ ତାରିଖ ୧୯୨୬ ସଂସ୍କରଣରେ ଲେଖିଥିଲେ - Madhusudan Das, a lawyer of distinction had not only despised labour but actually learnt handicrafts at a late period of his life not as a hobby but for the sake of teaching youngmen about the dignity of labour. He was himself instrumental in establishing a tannery at Cuttack.ଗାନ୍ଧିଜୀ ତାଙ୍କ ସାବରମତୀ ଆଶ୍ରମରେ ମଧ ଏକ ଟାନେରୀ ପ୍ରତିଷ୍ଠା କରିଥିଲେ । (Ibid-P-63)

ସମବାୟତତ୍ତ୍ୱ ଉପରେ ସେ ଓଡ଼ିଶାରେ ଗଢ଼ିଥିଲେ ଉତ୍କଳ ଟାନେରୀ ଏବଂ ଓଡ଼ିଶା ଆର୍ଟସ୍ । ମଧୁସୂଦନ ଦାସଙ୍କ ପ୍ରଚେଷ୍ଟା ଏବଂ ପ୍ରେରଣାରେ ଆରମ୍ଭ ହୋଇଥିବା ଏହି ସମବାୟ ଆନ୍ଦୋଳନ ଆମ ରାଜ୍ୟରେ ଦୀର୍ଘ ଏକ ଶତାବ୍ଦୀରୁ ଉର୍ଦ୍ଧ୍ୱ ସମୟ ମଧ୍ୟରେ ନିରବଚ୍ଛିନ୍ନ ଭାବେ ତା'ର ଲକ୍ଷ୍ୟ ପଥରେ ଅଗ୍ରଗତି କରୁଛି । ଆଜି ସମବାୟ ଆମ ଦେଶର ଅର୍ଥନୀତିର ଏକ ଅବିଚ୍ଛେଦ୍ୟ ସ୍ୱରୂପ ।

ସ୍ୱାଧୀନତା ପରେ ଦେଶର ଅର୍ଥନୈତିକ ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ପଞ୍ଚବାର୍ଷିକ ଯୋଜନା ପ୍ରବର୍ତ୍ତନ କରାଗଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ସମବାୟ ମାଧ୍ୟମରେ ଗ୍ରାମ୍ୟ ଅର୍ଥନୀତିର ବିକାଶକୁ ପ୍ରାଧାନ୍ୟ ଦିଆଗଲା । ଭାରତୀୟ ରିଜର୍ଭ ବ୍ୟାଙ୍କ ଅଧୀନରେ ସର୍ବଭାରତୀୟ ଗ୍ରାମ୍ୟଋଣ ଅନୁଧ୍ୟାନ କମିଟି (All India Rural Credit Survey Committee) ବସାଯାଇ ଗ୍ରାମ୍ୟ ଅର୍ଥନୀତି ତଥା ସମବାୟର ଅଭିବୃଦ୍ଧି ପାଇଁ ଏକ କମିଟି ୧୯୫୨ ମସିହାରେ ଗଠନ କରାଯାଇଥିଲା । ଏହି କମିଟି ୧୯୫୪ ମସିହାରେ ତାଙ୍କ ରିପୋର୍ଟ ଉପସ୍ଥାପନ କରିଥିଲେ, ଯାହାକି ସମବାୟରେ ଯୁଗାନ୍ତକାରୀ

ପରିବର୍ତ୍ତନ ଆଣିବା ପାଇଁ ସକ୍ଷମ ହୋଇଥିଲା । ପ୍ରଚଳିତ ମିଶ୍ର ଅର୍ଥନୀତିର ସଫଳତା ଏବଂ ବେସରକାରୀ ସଂସ୍ଥା ସହିତ ସମବାୟ ଏକ ଅବିଚ୍ଛେଦ୍ୟ ଅଙ୍ଗ ରୂପେ ପରିଗଣିତ ହୋଇଥିଲା । ସମବାୟକୁ ସରକାରୀ ଏବଂ ବେସରକାରୀ ସଂସ୍ଥା ମଧ୍ୟରେ ଏକ ସମତା ରକ୍ଷାକାରୀ ଆୟୁଧ ଭାବେ ବିବେଚନା କରାଗଲା । ସମନ୍ୱିତ ଗ୍ରାମ୍ୟ ଋଣ ଯୋଜନା ପାଇଁ ସମବାୟରେ ରାଜ୍ୟମାନଙ୍କୁ ଅଂଶୀଦାର କରିବା ପାଇଁ ଯୋଜନା ପ୍ରଣୟନ କରାହେଲା । ଯାହାଫଳରେ ରାଜ୍ୟ ସରକାର ସମବାୟକୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିବାକୁ ସକ୍ଷମ ହୋଇଥିଲେ ।

ଆଜି ଆମ ରାଜ୍ୟର ଅର୍ଥନୈତିକ ବିକାଶରେ ସମବାୟର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ସମସ୍ତ ଗ୍ରାମରେ ସମବାୟ ସେବା ଉପଲବ୍ଧ । ରାଜ୍ୟର ୫୦ ଲକ୍ଷ କୃଷକ ପରିବାର ମଧ୍ୟରୁ ୪୦ ଲକ୍ଷ ପରିବାର ସମବାୟ ସଭ୍ୟଭୁକ୍ତ ହୋଇଥିବାବେଳେ ପ୍ରାୟ ୧୦ ଲକ୍ଷ ସଭ୍ୟ ନିୟମିତ ଭାବେ କୃଷିଋଣ ସେବା ପରିସରଭୁକ୍ତ ହୋଇପାରିଛନ୍ତି । ୨୭୪୯ଟି ପ୍ରାଥମିକ ସେବା ସମବାୟ ସମିତିକୁ ୧୭ ଗୋଟି କେନ୍ଦ୍ର ସମବାୟ ବ୍ୟାଙ୍କ ମାଧ୍ୟମରେ ଏହି କୃଷିଋଣ ସେବା ଯୋଗାଇ ଦିଆଯାଉଛି । ୨୦୦୨-୦୩ ବର୍ଷରେ ସମବାୟ ମାଧ୍ୟମରେ ପ୍ରାୟ ୧୦୦୦ କୋଟି ଟଙ୍କାର କୃଷିଋଣ ଯୋଗାଇ ଦିଆଯାଇଛି, ଯାହାକି ସମଗ୍ର ରାଜ୍ୟରେ ଦିଆଯାଇଥିବା କୃଷିଋଣର ୭୪ ପ୍ରତିଶତ । ବ୍ୟବସାୟିକ ବ୍ୟାଙ୍କ୍ ଏବଂ ଗ୍ରାମ୍ୟ ବ୍ୟାଙ୍କ୍ ମାଧ୍ୟମରେ କେବଳ ୨୬ ପ୍ରତିଶତ ଋଣ ଯୋଗାଇ ଦିଆଯାଇଛି । ଚାଷୀଭାଇମାନଙ୍କୁ ଆବଶ୍ୟକ କୃଷିଋଣ ଠିକ୍ ସମୟରେ ପ୍ରଦାନ କରିବା ଉଦ୍ଦେଶ୍ୟରେ ୧୯୯୮ ମସିହାରୁ କିଷାନ୍ କ୍ରେଡ଼ିଟ୍ କାର୍ଡ଼ ପ୍ରଚଳନ କରାଯାଇଛି । ଏହି କ୍ଷେତ୍ରରେ ସମବାୟ ବ୍ୟାଙ୍କ୍‌ମାନଙ୍କ ଭୂମିକା ଉଲ୍ଲେଖନୀୟ । ସମବାୟ ବ୍ୟାଙ୍କ୍ ଏବଂ ପ୍ରାଥମିକ ସେବା ସମବାୟ ସମିତି ମାଧ୍ୟମରେ ପ୍ରାୟ ୧୬ ଲକ୍ଷ କିଷାନ୍ କ୍ରେଡ଼ିଟ୍ କାର୍ଡ଼ ଦିଆଯାଇଥିବାବେଳେ ଜାତୀୟକରଣ ବ୍ୟାଙ୍କ୍ ମାଧ୍ୟମରେ କେବଳ ୧୫୦୦୦୦ କାର୍ଡ଼ ଦିଆଯାଇଛି । ଚାଷୀ ସଭ୍ୟମାନଙ୍କୁ ନିୟମିତ ଭାବେ ଋଣ ପରିଶୋଧ ପାଇଁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ୨୦୦୧ ବର୍ଷରେ କଳିଙ୍ଗ କିଷାନ୍ ଗୋଲ୍ଡ କାର୍ଡ଼ ଏବଂ ୨୦୦୨ ମସିହାରେ କଳିଙ୍ଗ କିଷାନ୍ ସିଲ୍‌ଭର କାର୍ଡ଼ ପ୍ରବର୍ତ୍ତନ କରାଯାଇଛି । ଏହି ଉତ୍ସାହଜନକ ପଦକ୍ଷେପ ନେବାରେ ଓଡ଼ିଶା ପ୍ରଥମ ରାଜ୍ୟ । ପ୍ରାୟ ୬୦୦୦୦ ସଭ୍ୟଙ୍କୁ ସମବାୟ ମାଧ୍ୟମରେ ଗୋଲ୍ଡ କାର୍ଡ଼ ଦିଆଯାଇଥିବାବେଳେ ୧ ଲକ୍ଷ ସିଲ୍‌ଭର କାର୍ଡ଼ ଦିଆଯାଇଛି । କୃଷିର ଆନୁଷଙ୍ଗିକ ଉନ୍ନତି ସାଧନ ପାଇଁ ମଧ୍ୟ ସମବାୟ ମାଧ୍ୟମରେ ୨୦୦୨-୦୩ ବର୍ଷ ଶେଷରେ ୫୫ କୋଟି ଟଙ୍କା ଋଣ ଲଗାଣ କରାଯାଇଥିଲା । ବ୍ୟାଙ୍କିଙ୍ଗ୍ ସେବା ପ୍ରଦାନ କରିବା ପାଇଁ କେନ୍ଦ୍ର ସମବାୟ ବ୍ୟାଙ୍କ୍ ଖୋଲାଯାଇ ଅମାନତ ସଂଗ୍ରହ କରାଯାଉଛି । ରାଜ୍ୟର ସଂଗୃହିତ ଅମାନତର କେବଳ ୭ ପ୍ରତିଶତ ସମବାୟ ମାଧ୍ୟମରେ ସଂଗ୍ରହ କରାଯାଇଥିବାବେଳେ ବ୍ୟବସାୟିକ ବ୍ୟାଙ୍କ୍‌ମାନେ ୯୩ ପ୍ରତିଶତ ଅମାନତ ସଂଗ୍ରହ କରିଛନ୍ତି । ମାତ୍ର ଋଣ ଲଗାଣ କ୍ଷେତ୍ରରେ କୃଷିଋଣର ୭୪ ପ୍ରତିଶତ ସମବାୟ ମାଧ୍ୟମରେ ଦିଆଯାଇଛି । ଅମାନତ ସଂଗ୍ରହ ଏବଂ ଋଣ ଲଗାଣ ହାର ସମବାୟ କ୍ଷେତ୍ରରେ ୧୧୫.୪୬ ପ୍ରତିଶତ ଥିବାବେଳେ ବ୍ୟବସାୟିକ ବ୍ୟାଙ୍କ୍‌ମାନଙ୍କ କ୍ଷେତ୍ରରେ ୫୧ ପ୍ରତିଶତ ହୋଇପାରିଛି । ସେହିପରି ସମବାୟର ପ୍ରୋତ୍ସାହନ ଦ୍ୱାରା ୧୬୨୦୦ ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇ ତନ୍ମଧ୍ୟରୁ ୫୮୩୦ଟି ଗୋଷ୍ଠୀକୁ ୮ କୋଟି ଟଙ୍କାର ଋଣ ଯୋଗାଇ ଦିଆଯାଇଛି । ଚଳିତ ବର୍ଷ ରାଜ୍ୟର ପୁରପଲ୍ଲୀରେ ସଭ୍ୟମାନଙ୍କ ମଧ୍ୟରେ ସମବାୟ ପ୍ରତି ସଚେତନତା ସୃଷ୍ଟି କରିବା ପାଇଁ ସମବାୟ ସର୍ବେକ୍ଷଣ ଅଭିଯାନର ଶୁଭାରମ୍ଭ କରାଯାଇଛି ।

କୃଷିଭିତ୍ତିକ ଅର୍ଥନୀତିର ଅଭିବୃଦ୍ଧି ପାଇଁ ରାଜ୍ୟ ସମବାୟ କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କ୍ ଏବଂ ସବ୍‌ଡିଭିଜନ ସ୍ତରରେ ୫୩ ଗୋଟି କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କ୍ ମାଧ୍ୟମରେ କୃଷି ଓ ଆନୁଷଙ୍ଗିକ କାର୍ଯ୍ୟକ୍ରମରେ ପ୍ରାୟ ୬ କୋଟି ଟଙ୍କାର ଋଣ ଯୋଗାଣ କରାଯାଉଛି । ସେହିପରି ସହରମାନଙ୍କରେ ଯୁବକ / ଯୁବତୀମାନଙ୍କ ଆତ୍ମନିଯୁକ୍ତି ପାଇଁ ତଥା କ୍ଷୁଦ୍ର ବ୍ୟବସାୟୀମାନଙ୍କୁ, ୧୫ଟି ସମବାୟ ଅର୍ବାନ୍ ବ୍ୟାଙ୍କ୍ ମାଧ୍ୟମରେ ୫୭.୭୪ କୋଟି ଟଙ୍କାର ଋଣ ଲଗାଣ କରାଯାଇଥିଲା । ଚାଷୀ ସଭ୍ୟମାନଙ୍କୁ ଖରିଫ ୨୦୦୩ ଋତୁରେ ୧୧୫୭୧ (ଏମ୍.ଟି.) ସାର ଯୋଗାଇ ଦିଆଯାଇ ପାରିଛି । ୧୧୨ଟି ଗୃହ ନିର୍ମାଣ ସମବାୟ ସମିତି ମାଧ୍ୟମରେ ୨୦୦୧-୦୨ ବର୍ଷରେ ୧୬୫୨୫ ବାସଗୃହ ପ୍ରତିଷ୍ଠା କରାଯାଇପାରିଛି । ୩୧୮ଟି ଖାଉଟୀ ସମବାୟ ଭଣ୍ଡାର ମାଧ୍ୟମରେ ୫୫ କୋଟି ଟଙ୍କାର ଖାଉଟୀ ସାମଗ୍ରୀ ସଭ୍ୟମାନଙ୍କୁ ବିକ୍ରୀ କରାଯାଇପାରିଛି । ଆମ ରାଜ୍ୟରେ ସମବାୟ ସମିତି ମାଧ୍ୟମରେ ୫୦୦୦୦ ଲୋକଙ୍କୁ ପ୍ରତ୍ୟକ୍ଷ ଭାବରେ ନିଯୁକ୍ତି ଦିଆଯାଇପାରିଛି । ପରୋକ୍ଷ ଭାବରେ ୫ ଲକ୍ଷ ଲୋକଙ୍କ ପାଇଁ ଆତ୍ମନିଯୁକ୍ତିର ସୁଯୋଗ ସୃଷ୍ଟି କରାଯାଇପାରିଛି । ସେହିପରି ପରୋକ୍ଷ ଭାବରେ ସୂତା ଏବଂ ଆବଶ୍ୟକତା ସରଞ୍ଜାମ, କୁଟୀର ଶିଳ୍ପ ଓ ହସ୍ତଶିଳ୍ପ କାରୀଗରମାନଙ୍କ ପାଇଁ ସେବା, ମତ୍ସ୍ୟଜୀବୀମାନଙ୍କୁ ଜାଲ ଓ ଡଙ୍ଗା ଋଣ ଇତ୍ୟାଦି ଯୋଗାଇ ଦିଆଯାଇ ସେମାନଙ୍କ ପାଇଁ ଆତ୍ମନିଯୁକ୍ତିର ସୁଯୋଗ ସୃଷ୍ଟି କରାଯାଇଛି । ସମବାୟ ଚିନି ଶିଳ୍ପ ମାଧ୍ୟମରେ କେବଳ ଆଖୁଚାଷୀ କାହିଁକି ସେହି ଅଞ୍ଚଳର ଲୋକଙ୍କୁ ଆତ୍ମନିଯୁକ୍ତି ପ୍ରଦାନ କରିଛି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଆମ ରାଜ୍ୟର ଆସ୍କା ସମବାୟ ଚିନି କଳ ଭାରତବର୍ଷର ପ୍ରଥମ ସମବାୟଭିତ୍ତିକ ଚିନିକଳ । ରାଜ୍ୟର ପୁରପଲ୍ଲୀରେ ଦୁଗ୍ଧ ସୁଲଭ ମୂଲ୍ୟରେ ଉପଲବ୍ଧ । ଏହାଦ୍ୱାରା ଖାଉଟୀମାନେ ଯେତେ ଉପକୃତ, ଗାଈ ପାଳନ କରି ଦୁଗ୍ଧ ଉତ୍ପାଦନ କରି ଚାଷୀମାନେ ମଧ୍ୟ ସେତେ ଉପକୃତ । ଓମ୍‌ଫେଡ଼ ନଥିଲେ ହୁଏତ ଆମ୍ଭମାନେ ସୁଲଭ ମୂଲ୍ୟରେ ପ୍ରତିଦିନ ସକାଳେ ଦାଣ୍ଡ ଦୁଆରେ କ୍ଷୀର ପାଇପାରୁ ନଥାନ୍ତୁ କିମ୍ବା ଗୋପାଳନ କରି ବ୍ୟବସାୟ କରୁଥିବା ଚାଷୀ

ମଧ କ୍ଷୀରର ପ୍ରକୃତ ମୂଲ୍ୟ ପାଇପାରୁ ନଥାନ୍ତେ କିମ୍ବା ଦୁଗ୍ଧ ଉତ୍ପାଦନ ପାଇଁ ଉତ୍ସାହିତ ହୋଇ ନଥାନ୍ତେ । ଓମ୍‌ଫେଡ୍ ଜରିଆରେ ୭୬୧ ଗୋଟି ସମବାୟ ସମିତିକୁ ନେଇ ଯେଉଁ ଭିତ୍ତିଭୂମି ପ୍ରସ୍ତୁତ ହୋଇଛି ତାହାର ଲାଭାଂଶ ଗୋପାଳନ କରୁଥିବା ସଭ୍ୟମାନଙ୍କ ମଧ୍ୟରେ ଆବଣ୍ଟନ କରାଯାଉଛି ତାହା ସମ୍ଭବ ହୋଇ ପାରିନଥାନ୍ତା । ଓମ୍‌ଫେଡ୍ ବଦଳରେ ଆମେ ଦେଖିଥାନ୍ତୁ ବିଦେଶର ଏକ ବହୁରାଷ୍ଟ୍ରୀୟ କମ୍ପାନୀ, ଯେ କି ଚାଷୀସଭ୍ୟମାନଙ୍କଠାରୁ ଆରମ୍ଭ କରି ଖାଉଟୀମାନଙ୍କୁ ଶୋଷଣ କରିଥାନ୍ତେ ଏବଂ ପ୍ରଚୁର ଲାଭ ଅର୍ଜନ କରି ବିଦେଶରେ ପୁଞ୍ଜି ନିବେଶ କରିଥାନ୍ତେ । ଏହା ହିଁ ସମବାୟ ଏବଂ ରାଷ୍ଟ୍ରୀୟ କମ୍ପାନୀ ମଧ୍ୟରେ ପ୍ରଭେଦ ଯାହାର ପ୍ରଭାବ ଅର୍ଥନୈତିକ କ୍ଷେତ୍ରରେ ସୁଦୂର ପ୍ରସାରୀ ।

୧୯୯୧ ମସିହାରେ ଆମ ଦେଶରେ ଅର୍ଥନୈତିକ ସଂସ୍କାରର ପ୍ରବର୍ତ୍ତନ କରାଯାଇ ବିଶ୍ୱ ବାଣିଜ୍ୟ ସଂଗଠନର ଚାପରେ ଯେଉଁ ମୁକ୍ତ ବାଣିଜ୍ୟର ପରିବେଶ ସୃଷ୍ଟି କରାଯାଇଛି, ତାହାର କୁପ୍ରଭାବ ଅନେକ । ସରକାରୀ ଉଦ୍ୟୋଗ ଧୀରେ ଧୀରେ ଲୋପ ପାଇ ଯାଉଛି । ଉଭୟ କେନ୍ଦ୍ର ସରକାର ଓ ରାଜ୍ୟ ସରକାର ଏହି ସରକାରୀ ଉଦ୍ୟୋଗରେ ନିୟୋଜିତ ଅଂଶଧନ ପ୍ରତ୍ୟାହାର କରି ନେଉଛନ୍ତି । ଫଳରେ ଜାତୀୟ ଅର୍ଥନୀତିରେ କେବଳ ଦୁଇଟି ପ୍ରତିଯୋଗୀ ବିଦ୍ୟମାନ, ବେସରକାରୀ ଉଦ୍ୟୋଗ ଏବଂ ସମବାୟ । ଅର୍ଥନୈତିକ ସଂସ୍କାର ଫଳରେ ସରକାରୀ ଉଦ୍ୟୋଗଗୁଡ଼ିକୁ ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଟେକି ଦିଆଯାଉଛି । ଫଳ ସ୍ୱରୂପ ସରକାର ତାଙ୍କ ଅଂଶଧନ ଫେରି ପାଉଛନ୍ତି କିମ୍ବା ଅଧିକ ଅଂଶଧନ ବିନିଯୋଗ କରିବାକୁ ଆବଶ୍ୟକ ପଡୁନାହିଁ । ଖାଉଟିମାନଙ୍କ ଉପରେ ଶୋଷଣ ଦ୍ୱିଗୁଣିତ ହୋଇଛି । ସେବାପାଇଁ ମୂଲ୍ୟ ଅତ୍ୟଧିକ ହେଉଛି । ଲାଭାଂଶ ଦେଶ ମଧ୍ୟରେ ସୀମିତ ରହି ଓ ଜାତୀୟ ଅଭିବୃଦ୍ଧିରେ ପୁନଃ ବିନିଯୋଗ ନହୋଇ ଚାଲିଯାଉଛି ବିଦେଶକୁ ।

ସମବାୟ ଏହି ପରିପ୍ରେକ୍ଷୀରେ ଏକ ବିରାଟ ଆହ୍ୱାନର ସମ୍ମୁଖୀନ । ମଧୁବାବୁଙ୍କ ବିଚାରରେ ସମବାୟ କଳୁଷିତ ରାଜନୀତିର ଶିକାର ହୋଇ ମଧ ତା'ର ଲକ୍ଷ୍ୟ ଦିଗରେ ଆଗେଇ ଚାଲିଛି । ଆହୁରି ଅନେକ ବାଟ ଯିବାକୁ ହେବ । ସଭ୍ୟମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି, ବ୍ୟବସାୟିକ ଦକ୍ଷତା ତଥା ନିଷ୍ଠାପର ଉଦ୍ୟମ ପାଇଁ ସଙ୍କଳ୍ପର ସମୟ ଆସିଛି । ମଧୁବାବୁ ୧୮୯୮ରେ ଯେପରି ସଂକଳ୍ପ ନେଇଥିଲେ ସେହିପରି ଆଜି ଆମେ ଅନୁରୂପ ସଂକଳ୍ପ ନେଇ ସମବାୟକୁ ଦକ୍ଷ ବ୍ୟବସାୟିକ ତଥା ଲାଭଜନକ ଏବଂ ସଭ୍ୟମାନଙ୍କୁ ଉନ୍ନତ ସେବା ପ୍ରଦାନକାରୀ ସଂଗଠନ ଭାବରେ ପ୍ରତିଷ୍ଠା କରିବା ଆବଶ୍ୟକ । ଚାଷୀ ସଭ୍ୟମାନେ ଯେପରି ତାଙ୍କ ଉତ୍ପାଦିତ ଶସ୍ୟ ଅଥବା ଦୁଗ୍ଧ ଉପଯୁକ୍ତ ମୂଲ୍ୟରେ ବିକ୍ରୀ କରି ଲାଭବାନ୍ ହୋଇପାରିବେ, ଠିକ୍ ସମୟରେ ଋଣ ପାଇପାରିବେ ସେଥିପ୍ରତି ସତର୍କ ଦୃଷ୍ଟି ଦେବାକୁ ହେବ । ଅନ୍ୟପକ୍ଷରେ ଚାଷୀ ଯଦି ନିଜକୁ ସମବାୟର ଏକ ସକ୍ରିୟ ଅଂଶିଦାର ଭାବରେ ଜାଣିପାରିବ, ଲାଭାଂଶର ପ୍ରକୃତ ଅଂଶ ପାଇପାରିବ ଏବଂ ଏହା ତ ନିଜର ଏକ ସଂସ୍ଥା ବୋଲି ହୃଦୟଙ୍ଗମ କରିପାରିବ, ତେବେ ସମବାୟ ଏହି ଅର୍ଥନୈତିକ ବିକାଶରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣି ଦେଶକୁ ସ୍ୱାବଲମ୍ବୀ କରିବାରେ ସହାୟକ ହୋଇଛି ବୋଲି ବୁଝିବାକୁ ହେବ ।

୧୮୯୮ରେ ମଧୁବାବୁ ଓଡ଼ିଶାରେ ସମବାୟ ଆନ୍ଦୋଳନର ଯେଉଁ ବୀଜ ରୋପଣ କରିଥିଲେ, ଏକ ଶହ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ତାହାର କଳେବର ବୃଦ୍ଧି ହୋଇ ଆଜି ଏକ ବିଶାଳ ବଟବୃକ୍ଷର ରୂପ ନେଇଛି ।

ମଧୁବାବୁ ଯେଉଁ ଆଶା ଓ ବିଶ୍ୱାସ ରଖି ପ୍ରଥମେ ସମବାୟ ସମିତି ଗଠନ କରିଥିଲେ, ସେହି ଆଶା ଓ ବିଶ୍ୱାସକୁ ନେଇ ସମବାୟ ଆନ୍ଦୋଳନ ତା'ର ଲକ୍ଷ୍ୟ ପଥରେ ଅଗ୍ରସର ହୋଇଛି । ଅନେକ ବିଫଳତା ଓ ଜଟିଳତା ମଧ୍ୟରେ ଗତିକରି ସମବାୟ ସଫଳତା ମଧ ହାସଲ କରିଛି । ସାମ୍ପ୍ରତିକ ପରିସ୍ଥିତିରେ ସଭ୍ୟମାନଙ୍କ ସକ୍ରିୟ ଅଂଶଗ୍ରହଣ, ପରିଚାଳନା ପରିଷଦ ତଥା କର୍ମଚାରୀମାନଙ୍କ ନିଷ୍ଠାପର ଉଦ୍ୟମ, ଅକ୍ଳାନ୍ତ ପରିଶ୍ରମ, ବ୍ୟବସାୟିକ ଦକ୍ଷତା, ଲକ୍ଷ୍ୟ ହାସଲ କରିବା ପାଇଁ ଦୃଢ଼ ମନୋବଳ ଦ୍ୱାରା ହିଁ ଆମ ରାଜ୍ୟରେ ମଧୁବାବୁଙ୍କର ସ୍ୱପ୍ନର ସମବାୟ ସାକାର ହୋଇପାରିବ, ଏହା ନିଃସନ୍ଦେହ ।

ନିବନ୍ଧକ
ସମବାୟ ସମିତି ସମୂହ, ଭୁବନେଶ୍ୱର, ଓଡ଼ିଶା

----

# ଶତାବ୍ଦୀ ବର୍ଷରେ ଓଡ଼ିଶାର ସମବାୟ ଆନ୍ଦୋଳନ

ବ୍ରହ୍ମାନନ୍ଦ ପରିଡ଼ା

ଭାରତବର୍ଷରେ ପ୍ରଥମ ସମବାୟ ସମିତି ଅଧିନିୟମ ତତ୍କାଳୀନ ଇଂରେଜ ଶାସକଙ୍କ ସମୟରେ ୧୯୦୪ ମସିହାରେ ଆରମ୍ଭ ହୁଏ । ଅବହେଳିତ ତଥା ଶୋଷିତ ବର୍ଗଙ୍କୁ ତତ୍କାଳୀନ ସମାଜର ସାହୁକାର, ଜମିଦାର ଏବଂ ମହାଜନମାନଙ୍କ ଶୋଷଣରୁ ମୁକ୍ତ କରିବା ଓ ଆର୍ଥିକ ଏବଂ ସାମାଜିକ ମାନଦଣ୍ଡକୁ ସୁଦୃଢ଼ କରିବା ଥିଲା ସମବାୟ ଆନ୍ଦୋଳନର ମୁଖ୍ୟ ଲକ୍ଷ୍ୟ । ଆଉ ଏହି ଆନ୍ଦୋଳନ ଭାରତର ସ୍ୱାଧୀନତା ପରେ ଆହୁରି ଗତିଶୀଳ ହୋଇପାରିଥିଲା । ଆଜି ସେଦିନର ଜନ୍ମିତ ଛୋଟ ଚାରାଟି ସମଗ୍ର ଦେଶରେ ଅର୍ଥନୈତିକ ବିକାଶର ଯୋଜନା ପାଇଁ ଭିତ୍ତିଭୂମି ସୃଷ୍ଟି କରି ଏକ ମହାଦ୍ରୁମରେ ପରିଣତ ହୋଇଛି । ବିକାଶର ବାତାବରଣ ସୃଷ୍ଟି କରି ଆଜି ଏହି ଆନ୍ଦୋଳନ ୨୦୦୪ ବର୍ଷରେ ତା'ର ଶତବାର୍ଷିକୀ ପାଳନ କରୁଛି । ବିଗତ ଶତାବ୍ଦୀର ୨ଟି ଆନ୍ଦୋଳନ ଦେଶର ବହୁଳ ଜନସଂଖ୍ୟା ଉପରେ ଗଭୀର ପ୍ରଭାବ ପକାଇଥିଲା । ଭାରତବର୍ଷକୁ ପରାଧୀନତାର କବଳରୁ ମୁକ୍ତ କରାଇ ଗୋଟିଏ ଆନ୍ଦୋଳନ ଭାରତୀୟଙ୍କୁ ସ୍ୱାଧୀନତା ଦେଇଥିଲା । ଯାହାର ନାମ ଥିଲା ସ୍ୱାଧୀନତା ଆନ୍ଦୋଳନ । ଆଉ ଗୋଟିଏ ଆନ୍ଦୋଳନ ଭାରତୀୟ ଜନସାଧାରଣଙ୍କ ପାଇଁ ଅର୍ଥନୈତିକ ସ୍ୱାବଲମ୍ବନଶୀଳତାକୁ ଦେବା ପାଇଁ ସକ୍ଷମ ହୋଇଥିଲା, ଯାହାକି ସ୍ୱାଧୀନତା ଆନ୍ଦୋଳନ ଭଳି ଏକ ଗଣଆନ୍ଦୋଳନ ଥିଲା, ଆଉ ସେହି ଆନ୍ଦୋଳନ ଥିଲା ସମବାୟ ଆନ୍ଦୋଳନ ।

ଏହାର ଭାଗୀଦାର ଥିଲେ କ୍ଷୁଦ୍ରଚାଷୀ, ଭୂମିହୀନ ଚାଷୀ, ଭୂମିହୀନ ଶ୍ରମିକ, ମଜୁରିଆ ଦୁର୍ବଳବର୍ଗ, ବୁଣାକାର, ମତ୍ସ୍ୟଜୀବୀ ଏବଂ କାରିଗରମାନେ । ଦେଶ ସ୍ୱାଧୀନତା ପରେ ଗରିବ ଜନସାଧାରଣଙ୍କ ଉତ୍ତମ ଜୀବନଯାପନ ପାଇଁ କେବଳ ଯେ ସଂଘର୍ଷ ଥିଲା ତାହା ନୁହେଁ, ଏହା ସହିତ ସଂପଦର ସୁବିନିଯୋଗ ପାଇଁ ସମବାୟର ଭୂମିକା ଥିଲା ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ।

ଭାରତବର୍ଷର ଅର୍ଥନୀତି ମୁଖ୍ୟତଃ କୃଷି ଉପରେ ନିର୍ଭର କରିଥାଏ । ଆଉ ସମବାୟ ଆନ୍ଦୋଳନ ଥିଲା, କୃଷିର ବିକାଶ କ୍ଷେତ୍ରରେ ଏକ ଅଫୁରନ୍ତ ଉତ୍ସ । ଖାଲି ସେତିକି ନୁହେଁ, ସମବାୟ ତା'ର ବିଜୟର ଧ୍ୱଜାକୁ ପ୍ରତିଟି କ୍ଷେତ୍ରରେ ଉଡ଼ାଇ ଚାଲିଛି । କୃଷି କ୍ଷେତ୍ରରେ ସବୁଜ ବିପ୍ଳବ, ଦୁଗ୍ଧ କ୍ଷେତ୍ରରେ ଶ୍ୱେତବିପ୍ଳବ, ମତ୍ସ୍ୟ କ୍ଷେତ୍ରରେ ନୀଳ ବିପ୍ଳବ ଏବଂ କୁକୁଡ଼ା ପାଳନ କ୍ଷେତ୍ରରେ ପୀତ ବିପ୍ଳବ ସମବାୟ ଆନ୍ଦୋଳନ ମାଧ୍ୟମରେ ଦେଶର କୋଣ ଅନୁକୋଣରେ ଆଜି ସମ୍ଭବ ହୋଇଛି ।

ଭାରତବର୍ଷର ସମବାୟ ଆନ୍ଦୋଳନ ସମଗ୍ର ପୃଥିବୀରେ ଏକ ବୃହତ୍ ଆନ୍ଦୋଳନ । ଏହି ଆନ୍ଦୋଳନ ଦେଶର କୃଷି, ଉଦ୍ୟାନ, ଋଣ, ବ୍ୟାଙ୍କିଙ୍ଗ୍, ଗୃହ, ଗ୍ରାମ୍ୟ ବିକାଶ, ଜଳସେଚନ, ପାଣିପଞ୍ଚାୟତ, ଶ୍ରମିକ ଦୁର୍ବଳ ଶ୍ରେଣୀ, ଦୁଗ୍ଧ, ଖାଉଟି, ବଣ୍ଟନ ପ୍ରକ୍ରିୟା, ଆଦିବାସୀ, ବାଣିଜ୍ୟ, ମାନବ ସମ୍ବଳ, ସୂଚନା ଓ ପ୍ରଯୁକ୍ତି ଭଳି ସବୁ କ୍ଷେତ୍ରରେ ବିଦ୍ୟମାନ । ଜାତୀୟ ଅର୍ଥନୀତିରେ ସମବାୟର ଅବଦାନକୁ ପରିଲକ୍ଷିତ କଲେ ଏହାର ଆବଶ୍ୟକତା ଅର୍ଥନୈତିକ ସୁଦୃଢ଼ ପାଇଁ କେତେ ଯେ ମହାନ୍ ତହିଁରୁ କଳନା କରିହୁଏ । ଜାତୀୟ ସ୍ତରରେ ସମବାୟ ଶତପ୍ରତିଶତ ଗ୍ରାମରେ ଅନ୍ତର୍ଭୁକ୍ତ ହେବା ସହିତ ଏହାର ସଭ୍ୟ ସଂଖ୍ୟାକୁ ୨୩ କୋଟିରୁ ଊର୍ଦ୍ଧ୍ୱରେ ପହଞ୍ଚାଇ ପାରିଛି । ଆଜି ୫ ଲକ୍ଷରୁ ଊର୍ଦ୍ଧ୍ୱ ସମବାୟ ସମିତି ୧୯୮୫୪୨.୫ ନିୟୁତ ଟଙ୍କାର କାର୍ଯ୍ୟକାରୀ ମୂଳଧନ ଏବଂ ୬୫,୪୯,୧୧୯ଟି ସମବାୟ ଅନୁଷ୍ଠାନକୁ ନେଇ ଜାତୀୟ ସ୍ତରରେ ସମବାୟ ଆନ୍ଦୋଳନ ଦଣ୍ଡାୟମାନ । ଜାତୀୟ ଅର୍ଥନୀତିରେ ସମବାୟର ଅବଦାନ ଆଶାତୀତ ଭାବରେ ବୃଦ୍ଧି ପାଇଛି । ପ୍ରତ୍ୟକ୍ଷ କର୍ମନିଯୁକ୍ତି ସୃଷ୍ଟିରେ ଜାତୀୟ ଅର୍ଥନୀତିରେ ସମବାୟ ଅନୁଦାନ ୧.୧୫ ପ୍ରତିଶତ ଏବଂ ଆତ୍ମନିଯୁକ୍ତି କ୍ଷେତ୍ରରେ ଏହାର ପରିମାଣ ୧୪.୯ ପ୍ରତିଶତ, ସମବାୟ ଋଣ ଅନୁଷ୍ଠାନଗୁଡ଼ିକ କୃଷିଋଣ ଲଗାଣ କ୍ଷେତ୍ରରେ ୪୬.୧ ପ୍ରତିଶତ ଋଣ ପ୍ରଦାନ କରୁଥିବାବେଳେ ଚିନି ଉତ୍ପାଦନରେ ୫୮ ପ୍ରତିଶତ । ରାସାୟନିକ ସାରା ବଣ୍ଟନ କ୍ଷେତ୍ରରେ ୩୬.୨୨ ପ୍ରତିଶତ, ହସ୍ତତନ୍ତ କ୍ଷେତ୍ରରେ ଏହା ୫୫ ପ୍ରତିଶତ ସେବା ପ୍ରଦାନ କରୁଛି । ସମବାୟର କାର୍ଯ୍ୟସୀମା ଏତେ ବ୍ୟାପକ ଯେ ଶତପ୍ରତିଶତ ଗ୍ରାମରେ ପ୍ରାୟ ୭୫ ଭାଗ ପରିବାରକୁ ଏହି ଆନ୍ଦୋଳନ ସହିତ ସଂପୃକ୍ତ କରାଯାଇଛି । ସମଗ୍ର ଦେଶରେ ଗ୍ରାମାଞ୍ଚଳର ଋଣ ପ୍ରଦାନ କ୍ଷେତ୍ରରେ ସମବାୟ ଏକ ବିସ୍ତୃତ ଆବରଣ ମଧ୍ୟରେ ନିଜର କାୟା ବିସ୍ତାର କରିପାରିଛି । ଏହି ବିସ୍ତୃତକାୟା ବିସ୍ତାରରେ ସାମାଜିକ ସ୍ତରରେ ବସବାସ

କରୁଥିବା ମହିଳା, ଯୁବ ସଂପ୍ରଦାୟ ଓ ଆଦିବାସୀମାନେ ସମବାୟ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିପାରିଛନ୍ତି ।

ଆଧୁନିକ ଭାରତର ମହାନ୍ ନିର୍ମାତା ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁଙ୍କ ଭାଷାରେ - 'ଗ୍ରାମ୍ୟ ସମୃଦ୍ଧି ଓ ଦେଶର ବିକାଶ ପାଇଁ ସମବାୟର ଏକ ମହତ୍ୱପୂର୍ଣ୍ଣ ଭୂମିକା ରହିଛି ।' ତତ୍କାଳୀନ ୧୯୦୪ ମସିହାରେ ନିଖିଳ ଭାରତ ଗ୍ରାମୀଣ ଋଣ ସମିତି ଏହା ଉପଯୁକ୍ତ ଭାବେ ନିରୀକ୍ଷଣ କରିଥିଲା ଯେ, ସମବାୟ ଗ୍ରାମୀଣ ଭାରତୀୟମାନଙ୍କର ଆଶା ବିଶ୍ୱାସ ପୂର୍ଣ୍ଣତାର ଏକ ସର୍ବୋତ୍ତମ ମାଧ୍ୟମ । ଏହି ପରିସ୍ଥିତିରେ ୧୦୦ ବର୍ଷର ସମବାୟ ଆନ୍ଦୋଳନ ଗୋଟିଏ ଜାତି ପାଇଁ ତା'ର ଅର୍ଥନୈତିକ ଓ ସାମାଜିକ ବିକାଶ କ୍ଷେତ୍ରରେ କେତେଦୂର ପ୍ରାସଙ୍ଗିକତାକୁ ବହନ କରୁଛି, ତାକୁ ଆତ୍ମ ସମୀକ୍ଷା କରିବା ଏକାନ୍ତ ଆବଶ୍ୟକ । ଏହାର ମୁଖ୍ୟ ପ୍ରସଙ୍ଗଗୁଡ଼ିକ ହେଉଛି, ଗ୍ରାହକ ଓ ସଦସ୍ୟମାନଙ୍କ ପାଇଁ ସର୍ବୋତ୍ତମ ସେବା ପ୍ରଦାନ, ବ୍ୟବସାୟିକ ପ୍ରତିଯୋଗିତା ବୃଦ୍ଧି, ହିସାବରେ ସ୍ୱଚ୍ଛନ୍ଦତା ଓ ଉତ୍ତମ ପ୍ରଶାସନ ।

ଏହି ପରିପ୍ରେକ୍ଷୀରେ ଓଡ଼ିଶାର ସମବାୟ ଆନ୍ଦୋଳନକୁ ଆମେ ଅତ୍ୟନ୍ତ ସୂକ୍ଷ୍ମ ଦୃଷ୍ଟିରେ ଅନ୍ତର୍ନିରୀକ୍ଷଣ ବଳରେ ଦେଖିପାରିବା ଯେ ଏହା ଏକ ଆର୍ଥିକ ଦୃଷ୍ଟିରୁ ପଛୁଆ ଥିବା ଏକ ରାଜ୍ୟର ବିକାଶ ପାଇଁ କେତେଦୂର ସହାୟକ ହୋଇପାରିଛି । ଓଡ଼ିଶାର ଶତପ୍ରତିଶତ ଗାଁରେ ସମବାୟ ଆଜି ବିଦ୍ୟମାନ । ଖାଲି ସେତିକି ନୁହେଁ, ସମଗ୍ର ଜାତି ଯେଉଁ କଥାକୁ ଆସନ୍ତାକାଲି ଚିନ୍ତା କରିଥାଏ, ଏ ଓଡ଼ିଆ ଜାତି ତାକୁ ଆଜି ହିଁ ଚିନ୍ତା କରିଥାଏ । ଏହାର ଏକ ଐତିହାସିକ ତଥା ପ୍ରାମାଣିକ ତଥ୍ୟ ମିଳିଥାଏ ଉତ୍କଳଦୀପିକାର ୧୮୯୮ ମସିହାର ବୈଶାଖ ମାସରେ 'ଉତ୍କଳ ସାହିତ୍ୟ'ର ୩୭/୧୦ ସଂଖ୍ୟାରେ । ଓଡ଼ିଆ ଜାତିର ସେହି ଉତ୍ତୁଙ୍ଗ ପୁରୁଷ, ପ୍ରଚଣ୍ଡ ସ୍ୱାଭିମାନୀ, ଉତ୍କଳର ବରପୁତ୍ର, ପ୍ରଚଣ୍ଡ ଆତ୍ମ ସମ୍ମାନ ଏବଂ ବିଚକ୍ଷଣ ପ୍ରତିଭାଧାରୀ ମହାନ ଜନନାୟକ ମଧୁସୂଦନ ଦାସ ଏହି ଓଡ଼ିଶା ମାଟିରେ ୧୮୯୮ ମସିହାରେ କଟକଠାରେ ପ୍ରଥମ ସମବାୟ ଅନୁଷ୍ଠାନଟିଏ ଖୋଲି ଏ କ୍ଷେତ୍ରରେ ସମଗ୍ର ଭାରତବର୍ଷରେ ପଥ ପ୍ରଦର୍ଶକ ଥିଲେ । ଯେତେବେଳେ ସମଗ୍ର ଭାରତବର୍ଷ ୨୦୦୪ ମସିହାରେ ସମବାୟ ଆନ୍ଦୋଳନର ଶତବାର୍ଷିକ ପାଳନ କରୁଛି, ସେତେବେଳେ ଓଡ଼ିଶା ୨୦୦୩ ମସିହାରେ ତା'ର ସମବାୟ ଆନ୍ଦୋଳନର ଶତବାର୍ଷିକୀ ପାଳନ କରି, ସମବାୟ ଆନ୍ଦୋଳନ କ୍ଷେତ୍ରରେ ଆଗୁଆ ଭାବରେ ନିଜର ଅବସ୍ଥିତିକୁ ଜାହିର କରିପାରିଛି । ୧୯୦୪ ମସିହାର ଦୀର୍ଘ ୬ ବର୍ଷ ପୂର୍ବରୁ ଏଇ ଜାତିର ନମସ୍ୟ ପୁରୁଷ ମଧୁସୂଦନ ଦାସ କଟକଠାରେ 'କଟକ ସମବାୟ ଖାଉଟି ଭଣ୍ଡାର' ସ୍ଥାପନ କରି ସମବାୟ ଆନ୍ଦୋଳନ କ୍ଷେତ୍ରରେ ସମସ୍ତଙ୍କ ଆଖି ଖୋଲି ଦେଇଥିଲେ । ଆଜି ଓଡ଼ିଶାରେ ୮୭୪୨ଟି ସମବାୟ ଅନୁଷ୍ଠାନ କାର୍ଯ୍ୟ କରୁଥିବାବେଳେ ଏଥିରୁ ୪୮୮୬ଟି ସମବାୟ ନିବନ୍ଧକଙ୍କ ପ୍ରତ୍ୟକ୍ଷ ପରିଚାଳନାଧୀନ ଥିବାବେଳେ ଅବଶିଷ୍ଟ ସମବାୟ ଅନୁଷ୍ଠାନଗୁଡ଼ିକ ବିଭିନ୍ନ ସ୍ତରରେ କାର୍ଯ୍ୟକରୁଛି । ଓଡ଼ିଶା ହେଉଛି ଏକ କୃଷିଭିତ୍ତିକ ରାଜ୍ୟ । ଓଡ଼ିଶା ଅର୍ଥନୀତିର ଏକ ମୁଖ୍ୟ ଅଙ୍ଗ ରୂପେ କୃଷିର ପ୍ରାଧାନ୍ୟ ଅବର୍ଣ୍ଣନୀୟ । ରାଜ୍ୟର କୃଷିଭିତ୍ତିକ କାର୍ଯ୍ୟକ୍ରମକୁ ଆଗେଇ ନେବା କ୍ଷେତ୍ରରେ ସମବାୟର ସ୍ଥାନ ହେଉଛି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହା କୃଷିଋଣ ତଥା ଅଣକୃଷିଭିତ୍ତିକ ଋଣ ପ୍ରଦାନ କ୍ଷେତ୍ରରେ ୭୫ ପ୍ରତିଶତ ଋଣ ପ୍ରଦାନକରି, ଏ କ୍ଷେତ୍ରରେ ଏକ ବାସ୍ତବ ସ୍ଥାନ ଗ୍ରହଣ କରିଛି । ରାଜ୍ୟର ପ୍ରାୟ ୫୨ ଲକ୍ଷ କୃଷି ପରିବାର ମଧ୍ୟରୁ ୪୨ ଲକ୍ଷ ପରିବାରକୁ ସମବାୟର ସଭ୍ୟ ଭୁକ୍ତ କରାଯାଇପାରିଛି । ରାଜ୍ୟରେ ଦିଆଯାଉଥିବା କୃଷିଋଣର ୭୫.୭୪ ପ୍ରତିଶତ ଋଣ କେବଳ ସମବାୟ ମାଧ୍ୟମରେ ଦିଆଯାଇପାରିଛି । ଚାଷୀମାନଙ୍କୁ ଶୋଷଣରୁ ସହାୟତା ଯୋଗାଇ ଦେବା ପାଇଁ ସମବାୟ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ସମବାୟ ମାଧ୍ୟମରେ ଧାନ ସଂଗ୍ରହ କରାଯାଇ ଏହାର ଉଚିତ ମୂଲ୍ୟକୁ ଚାଷୀମାନଙ୍କୁ ଦିଆଯାଇ ସେମାନଙ୍କ ମନରେ ଏକ ଦୃଢ଼ ଆତ୍ମବିଶ୍ୱାସ ସୃଷ୍ଟି କରାଯାଇ ପାରିଛି । ସମଗ୍ର ଓଡ଼ିଶାରେ ସମବାୟ ଋଣ ଅନୁଷ୍ଠାନ ଓ ବ୍ୟାଙ୍କଗୁଡ଼ିକ ଚାଷୀମାନଙ୍କୁ କଳିଙ୍ଗ କିଶାନ୍ ଗୋଲ୍ଡକାର୍ଡ଼ ପ୍ରଦାନ କରି ଏ କ୍ଷେତ୍ରରେ ଏକ ଅଗ୍ରଣୀ ସ୍ଥାନ ଗ୍ରହଣ କରିପାରିଛି । ଖାଲି ସେତିକି ନୁହେଁ, ସମଗ୍ର ଭାରତବର୍ଷରେ ଏ କ୍ଷେତ୍ରରେ ଆଉ ପାଦେ ଆଗେଇ ଯାଇ ଆମ କୃଷକ ସମାଜର ଆର୍ଥିକ ବିକାଶର ଭଗୀରଥ, 'ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ୍' କଳିଙ୍ଗ କିଷାନ ଗୋଲ୍ଡ କାର୍ଡ଼ ଓ କଳିଙ୍ଗ କିଷାନ ସିଲଭର କାର୍ଡ଼ ଭଳି ଅଭିନବ ଯୋଜନାମାନ ପ୍ରଣୟନ କରି ସମବାୟ ଆନ୍ଦୋଳନ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିପାରିଛି । ଗ୍ରାମାଞ୍ଚଳ ହେଉ ବା ସହରାଞ୍ଚଳ ହେଉ ସମବାୟର ଜନସଚେତନତା ବା ଜନଜାଗରଣ କ୍ଷେତ୍ରରେ 'ଓଡ଼ିଶା ରାଜ୍ୟ ସମବାୟ ୟୁନିୟନ'ର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । 'ଓଡ଼ିଶା ରାଜ୍ୟ ସମବାୟ ୟୁନିୟନ୍' ନିରନ୍ତର ଭାବରେ ସମଗ୍ର ରାଜ୍ୟରେ ପାଠଚକ୍ର, କର୍ମଶାଳା, ଆଲୋଚନାଚକ୍ର ଓ ସଭାସମିତି ମାଧ୍ୟମରେ ସମବାୟର ନୀତି, ମୂଲ୍ୟବୋଧ ଓ ଆବଶ୍ୟକତାକୁ ଜନସଚେତନତା ମାଧ୍ୟମରେ ବୃଦ୍ଧି କରିବା ସହିତ ସମବାୟର ନେତୃତ୍ୱ ବିକାଶ ପାଇଁ ଅନେକ କିଛି କାର୍ଯ୍ୟକ୍ରମ ଗ୍ରହଣ କରିପାରିଛି । ଓଡ଼ିଶା ସ୍ୱୟଂ ସହାୟକ ସମବାୟ ଆଇନ, ଯାହାକି ବାସ୍ତବ ସମବାୟୀମାନଙ୍କ ପାଇଁ ଏକ ଅହେତୁକ ବରଦାନ, ସେଭଳି ଏକ ଗୁରୁତ୍ୱପୂର୍ଣ୍ଣ ଆଇନକୁ ବର୍ତ୍ତମାନର ଉଦାରୀକରଣ ଅର୍ଥନୈତିକ ଯୁଗରେ ଏହାର ଆବଶ୍ୟକତା ନିମନ୍ତେ ବ୍ୟାପକ ପ୍ରଚାର ଓ ପ୍ରସାର ମାଧ୍ୟମରେ ଜନସଚେତନତା ପାଇଁ ବଳିଷ୍ଠ ପଦକ୍ଷେପ ଗ୍ରହଣ କରିଛି ।

ଚଳିତବର୍ଷ ୫୧ତମ ସମବାୟ ସପ୍ତାହ ଉତ୍ସବ ନଭେମ୍ବର ୧୪ରୁ ୨୦ ତାରିଖ ପର୍ଯ୍ୟନ୍ତ ପାଳିତ ହୋଇଯାଇଛି । ଏ ବର୍ଷର ସମବାୟ ସପ୍ତାହର ବିଶେଷତ୍ୱ ହେଉଛି 'ସମବାୟ ମାଧ୍ୟମରେ ନୂତନ ପିଢ଼ିର ଆର୍ଥିକ ବିକାଶ' । ଏହି ସପ୍ତାହ ବ୍ୟାପୀ କାର୍ଯ୍ୟକ୍ରମ ଏଇଥିପାଇଁ

ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ଯେ ଚଳିତବର୍ଷ ସମବାୟ ଆନ୍ଦୋଳନ ତା'ର ଶତବାର୍ଷିକ ପାଳନ କରୁଛି । ଭାରତବର୍ଷର ଗ୍ରାମାଞ୍ଚଳରେ ବାସ କରୁଥିବା ଦୁଇ ତୃତୀୟାଂଶ ଜନସାଧାରଣଙ୍କ ଆବଶ୍ୟକତାକୁ ମେଣ୍ଟାଇବାରେ ସମବାୟ ଏକ ଦୀର୍ଘ ଏବଂ ପ୍ରଭାବଶୀଳ ଭୂମିକା ନିର୍ବାହ କରି ଆସୁଅଛି । ୧୦୦ ବର୍ଷର ସମବାୟ ଆନ୍ଦୋଳନର ଇତିହାସ ଓ ଏ କ୍ଷେତ୍ରରେ ଆମର କାର୍ଯ୍ୟ ତଥା ପ୍ରଗତିକୁ ସିଂହାବଲୋକନ କରି ଆଗକୁ ବଢ଼ିବା ପାଇଁ ରହିଯାଇଥିବା ସମସ୍ତ ତ୍ରୁଟିଗୁଡ଼ିକ ପ୍ରତି ଆମ୍ଭ ସମୀକ୍ଷା କରିବା ଆମର ଦରକାର । ଆମ ରାଜ୍ୟରେ ଏକ ସ୍ୱାଧୀନ, ଆତ୍ମନିର୍ଭରଶୀଳ ସ୍ୱତସ୍ଫୁର୍ତ, ଶକ୍ତିଶାଳୀ ତଥା ସମ୍ମିଳିତ ସମବାୟ ଆନ୍ଦୋଳନ ଗଢ଼ି ତୋଳିବା ପାଇଁ ଏହି ଶତବାର୍ଷିକୀ ଅବସରରେ ଆସନ୍ତୁ ସମସ୍ତେ ସଂକଳ୍ପ ନେବା ଏବଂ ସାଧୁତା, ଆତ୍ମମର୍ଯ୍ୟାଦା, କ୍ରିୟାଶୀଳ, ପ୍ରତିବେଦନଶୀଳତା ତଥା ଅଙ୍ଗୀକାରବଦ୍ଧତା ମାଧ୍ୟମରେ ନିରବଚ୍ଛିନ୍ନ ଅର୍ଥନୈତିକ, ସାଂସ୍କୃତିକ ଉନ୍ନତ ସାଧନରେ ସହାୟ ହେବା ।

ଏଡିଟର
ଓଡ଼ିଶା ରାଜ୍ୟ ସମବାୟ ୟୁନିଅନ୍ , ଭୁବନେଶ୍ୱର

---

# ମାଣ

ଓମ୍ ପ୍ରକାଶ ମହାପାତ୍ର

ମଗୁଶିର ମାସ ଗୁରୁବାର ମାଣବସା ତିଥି ପବିତ୍ରର
ଓଡ଼ିଆଣୀ କରିଥାଏ ମା' ଲକ୍ଷ୍ମୀ ନିମନ୍ତ୍ରଣ ଆସିବାକୁ ତା'ଘର ।
ଲିପିପୋଛି ଚିତାକାଟି ଫଳ ଫୁଲ ପୂଜା ଅର୍ଘ୍ୟ ଟେକି ସାଉଁଟି
ଓଢ଼ଣା ଉହାଡ଼େ ମୁଖରଖି ଶଙ୍ଖ ହୁଳହୁଳି ଫୁଙ୍କି ଦେଖାଇ ଅଣ୍ଟି ।
ମା' ଲକ୍ଷ୍ମୀ ଆଣିଥାଏ ପାଛୋଟି କୁଟୀରେ ଝଟିମାଟି
ପରମ୍ପରା ଉତ୍କଳେ ଏରୁଣ୍ଡି ବଂଧେ ଲକ୍ଷ୍ମୀ ଭେଟାଭେଟି ।
ସାତ୍ତ୍ୱିକ ଆହାରେ ପିଠାପଣା ମହକି ଚମକି
ଘର ଅଗଣା ଉଠି ପଡୁଥାଏ ଥକି ।
ନୂଆ ଧାନ କେଣ୍ଡା ଖିରି ପିଠା କାକରା ମଣ୍ଡା
ଜଗାବଳିଆ ଓଡ଼ିଆ ଘରେ ଘରେ ପେଟ କରିଥାଏ ଥଣ୍ଡା ।
ମାଣ ଏକ ବଂଶ ସଂସ୍କୃତି ଚିହ୍ନ ଅଳଙ୍କାର ସ୍ୱର୍ଣ୍ଣ ହାରର ଆକାର
ଗୁରୁବାର ମଗୁଶିର ମାସ ଶ୍ରେଷ୍ଠେ ଗଣା ଆମ ସଂସ୍କୃତିର
ଲକ୍ଷ୍ମୀ ନୁହେଁ ବଡ଼ ବଡ଼ିଆ ଦେଉଳର ଦେବୀ ଚଣ୍ଡାଳର
ଶ୍ରୀୟା ଚଣ୍ଡାଳୁଣୀ କୁଳଶ୍ରେଷ୍ଠ କୁଣ୍ଡଳିନୀ ଘାଣ୍ଟି ରକ୍ତ ଧମନୀ
ପାରୁନି ଛିଣ୍ଡାଇ ସମାଜୁ ଆମର ଅସ୍ପୃଶ୍ୟତା ବାସ ଲେଲିହାନ ଧାସ ବିଷର
ଉତ୍କଳେ ମାଣବସୁ ଲକ୍ଷ୍ମୀ ଠାକୁରାଣୀ ଆସୁ
ଖେତବାଡ଼ି ହସୁ ସଂସ୍କୃତି ମାଣ ପିଠା ଖିରି ପରସା ଖସୁ ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

# ଭାରତରେ ସମବାୟ ଆନ୍ଦୋଳନ

ଯୋଗେଶ ରାଉତ

ଗରିବ ତଥା ଚାଷୀମାନଙ୍କୁ ମହାଜନର ଅତିରିକ୍ତ ସୁଧହାର ଋଣରୁ ମୁକ୍ତ କରିବା ପାଇଁ ଇଉରୋପୀୟ ଦେଶମାନଙ୍କରେ ସମାଜସେବୀମାନେ ଗ୍ରାମାଞ୍ଚଳ ଲୋକମାନଙ୍କୁ ସଭ୍ୟ କରାଇ ସେମାନଙ୍କଠାରୁ ସ୍ୱଳ୍ପ ଜମା ସଂଗ୍ରହ କରି ୧୮୪୪ ମସିହାରୁ ଋଣ, ଖାଉଟି, କୃଷି ଓ ଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ, ବିପଣନ ପ୍ରଭୃତି ବିଭିନ୍ନ ସ୍ୱନିର୍ଭରଶୀଳ ସମବାୟ ସମିତିମାନ ଗଠନ କରିଥିଲେ ।

୧୮୯୧ ମସିହାରେ ଭାରତର ଅବିଭକ୍ତ ପଞ୍ଜାବ ପ୍ରଦେଶର ଡାଙ୍ଗ ଜିଲ୍ଲାରେ ପ୍ରଥମେ କୃଷି ଜମି ସମବାୟ ସମିତି ଗଠିତ ହୋଇଥିଲା । ଉକ୍ତ ଜିଲ୍ଲା ୧୯୪୭ ମସିହା ଦେଶ ବିଭାଜନଠାରୁ ପାକିସ୍ଥାନରେ ଅନ୍ତର୍ଭୁକ୍ତ । ଉକ୍ତ ସମିତି ୧୯୨୨ ମସିହା ପର୍ଯ୍ୟନ୍ତ ଚାଲୁ ରହିଥିଲା । ୧୮୯୪ ମସିହାରେ ମହୀଶୂର ରାଜ୍ୟରେ ଜମି ମାଲିକ କୃଷି ସମବାୟ ସଂଘ ଗଠିତ ହୋଇଥିଲା । ୧୯୦୧ରେ ମାନ୍ଦ୍ରାଜରେ ନିଧି ସମବାୟ ସମିତି ଗଠିତ ହୋଇଥିଲା ।

ଉତ୍କଳଗୌରବ ବାରିଷ୍ଟର ମଧୁସୂଦନ ଦାସ ୧୮୯୭ରେ ୟୁରୋପୀୟ ଦେଶମାନ ଭ୍ରମଣ କରି ସମବାୟ ଅନୁଭୂତି ପରିପ୍ରେକ୍ଷୀରେ ୧୮୯୮ ଜୁନ୍ ମାସରେ ଓଡ଼ିଶାର କଟକଠାରେ ପ୍ରଥମ ସମବାୟ ଷ୍ଟୋର ଗଠନ କରିଥିଲେ । ସେହିପରି ମଧୁବାବୁଙ୍କ ଝିଆରୀ ଜୋଇଁ ତଦାନୀନ୍ତନ ବାଙ୍କୀର ଡେପୁଟି କଲେକ୍ଟର ବାଳମୁକୁନ୍ଦ କାନୁନ୍‌ଗୋ ଓ ସୁବର୍ଣ୍ଣପୁର ଓଡ଼ିଆ ନିମ୍ନ ମାଧ୍ୟମିକ ବିଦ୍ୟାଳୟର ହେଡପଣ୍ଡିତ ବିଦ୍ୟାଧର ପଣ୍ଡା ମଣିକାଞ୍ଚନ ସହଯୋଗୀ ପରି ବାଙ୍କୀର ସୁବର୍ଣ୍ଣପୁର, ଚର୍ଚ୍ଚିକା ଓ ବରପୁଟ ଗ୍ରାମରେ ଯଥାକ୍ରମେ ୧୫, ୨୦ ଓ ୧୫ ଜଣ ସଭ୍ୟଙ୍କୁ ନେଇ ଟ.୧୦୦୦ଙ୍କା ସରକାରୀ ଅନୁଦାନ ମୂଳଧନରେ ଭାରତ ତଥା ଓଡ଼ିଶାର ବାଙ୍କୀରେ ପ୍ରଥମେ ୩ଟି ପ୍ରାଥମିକ ଗାଁ ଋଣ ସମବାୟ ସମିତି ବ୍ରିଟିଶ ସରକାରଙ୍କ ବନ୍ଧୁତା ସମବାୟ ଆଇନ (Friendly Cooperative Act) ଦ୍ୱାରା କରାଇ କୃଷକମାନଙ୍କୁ ଋଣ ପ୍ରଦାନ କରିଥିଲେ । ବାଳମୁକୁନ୍ଦ ବାବୁଙ୍କ ପୁତ୍ର ବିହାରର ପୂର୍ବତନ ଗଭର୍ଣ୍ଣର ସ୍ୱର୍ଗତଃ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ସୂଚିତମତେ ଆନ୍ତର୍ଜାତିକ ସମବାୟ ସଂଘର ତଥ୍ୟ ଅନୁଯାୟୀ ବାଙ୍କୀରେ ଭାରତବର୍ଷର ପ୍ରଥମ କୃଷିଋଣ ସମବାୟ ସମିତି ଗଠିତ ହୋଇଥିଲା । ୨୫.୦୩.୧୯୦୪ ମସିହାରେ ପ୍ରଥମ ଭାରତ ସମବାୟ ଆଇନ ଗୃହୀତ ତଥା ପ୍ରଚଳନ ହେବାରେ ଭାରତରେ ସମବାୟ ସମିତି ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଥିଲା । ଭାରତରେ ୧୯୧୨ ମସିହା କେନ୍ଦ୍ରୀୟ ସମବାୟ ଆଇନ ଗୃହୀତ ହେବା ପୂର୍ବରୁ ଉତ୍ତମ ତଦାରଖ, ହିସାବ ସମୀକ୍ଷା ଅନୁଭୂତ ହେବାରେ ତଥା ଜମା ସଂଗ୍ରହ ଓ ଋଣ ଲଗାଣ ବୃଦ୍ଧି ପାଇ ବାଙ୍କୀର ୫୦ଟି ଗାଁ ଋଣ ସମବାୟ ସମିତି ଏକତ୍ରିତ ହୋଇ ୨୬.୦୩.୧୯୧୦ରେ ବାଙ୍କୀ ଡମପଡ଼ା କେନ୍ଦ୍ର ସମବାୟ ସଂଘ ବା ବ୍ୟାଙ୍କ ପ୍ରତିଷ୍ଠିତ ହୋଇଥିଲା । ୧୯୧୨ରେ ଭାରତରେ ସଂଶୋଧିତ ସମବାୟ ସମିତି ଆଇନ ଗୃହୀତ ହେବାରେ ଓଡ଼ିଶା ସମେତ ଭାରତର ବିଭିନ୍ନ ସ୍ଥାନରେ କେନ୍ଦ୍ର ସମବାୟ ବ୍ୟାଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ବିଭିନ୍ନ ପ୍ରଦେଶରେ ସମବାୟ ଆଇନ ଗୃହୀତ ହୋଇ ସେ ରାଜ୍ୟର ସମବାୟ ସମିତିମାନେ ନିବନ୍ଧିତ ହୋଇଥିଲେ । ସମବାୟକୁ ସଫଳ କରାଇବା ତଥା ତ୍ରୁଟି ସୁଧାରିବା ପାଇଁ ଭାରତ ସରକାର ବିଭିନ୍ନ ସମୟରେ କେତେକ କମିଶନ ବସାଇଥିଲେ ।

ରିଜର୍ଭ ବ୍ୟାଙ୍କ୍ ୧୯୩୫ରେ ପ୍ରତିଷ୍ଠିତ ହୋଇଥିଲା । ୧୯୩୯ରୁ ରିଜର୍ଭ ବ୍ୟାଙ୍କ୍ କେନ୍ଦ୍ର ସମବାୟ ବ୍ୟାଙ୍କ୍‌ମାନଙ୍କୁ ପୁନଃଋଣ ଲଗାଣ କରିଥିଲା ।

୧୫.୦୮.୧୯୪୭ରେ ଦେଶ ସ୍ୱାଧୀନ ହେବା ପରେ ଉତ୍କଟ ଦାରିଦ୍ର୍ୟର ଦ୍ରୁତ ଦୂରୀକରଣ ପାଇଁ ଦେଶରେ ମିଶ୍ର ଅର୍ଥନୀତି ପ୍ରଚଳନ ହେବାରେ ସମବାୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ବହନ କଲା । ୧୯୪୮ରେ ରିଜର୍ଭ ବ୍ୟାଙ୍କ୍ ଜାତୀୟକରଣ ହେଲା ଓ ୧୯୪୮ରେ ଓଡ଼ିଶା ସମେତ ବିଭିନ୍ନ ରାଜ୍ୟ ସମବାୟ ବ୍ୟାଙ୍କ୍ ପ୍ରତିଷ୍ଠିତ ହେବାରେ ରିଜର୍ଭ ବ୍ୟାଙ୍କ୍ କେନ୍ଦ୍ର ସମବାୟ ବ୍ୟାଙ୍କ୍‌ମାନଙ୍କୁ ରାଜ୍ୟ ସମବାୟ ବ୍ୟାଙ୍କ୍ ଜରିଆରେ କୃଷିଋଣ ପୁନଃ ଲଗାଣ କରିଥିଲେ । ୧୯୫୪ ମସିହାରେ ଗ୍ରାମ୍ୟ ଋଣ ତନଖି କମିଟିର ସୁପାରିଶରେ ସମବାୟ ସମିତିମାନେ ଋଣ ପ୍ରଦାନ ସହିତ ବହୁବିଧ କାର୍ଯ୍ୟକ୍ରମ ଗ୍ରହଣ କଲେ । ସମବାୟ ସମସ୍ତ ଆର୍ଥିକ ବିକାଶ କ୍ଷେତ୍ରକୁ ପ୍ରସାରିତ ହୋଇ କୃଷି, ବିପଣନ, ଖାଉଟି, କୁଟୀର

ଶିଳ୍ପ, ଯାନ୍ତ୍ରିକ ଚାଷ, ଛେଳି, ମେଣ୍ଢା ପାଳନ, ଦୁଗ୍ଧ, ସାର କାରଖାନା, ମତ୍ସ୍ୟ, କୁକୁଡ଼ା, ଋଣ ସଞ୍ଚିତ, ହସ୍ତତନ୍ତ, କଳତନ୍ତ, ଛାପାଖାନା, ଗୃହ ନିର୍ମାଣ, ଶ୍ରମିକ, ବନ, କର୍ମଚାରୀ, ପରିବହନ, ତୈଳବୀଜ, ବିଦ୍ୟୁତ, କପା, ଫଳ, ପନିପରିବା, ଫୁଲ, ଭୋଜନାଳୟ, ଛାତ୍ର, ଚିନି କାରଖାନା ପ୍ରଭୃତି ବହୁ ସମବାୟ ସମିତି ଗଠିତ ହୋଇଥିଲା । ସରକାର ପରିଚାଳନା କମିଟିରେ ଅଂଶୀଦାର ହେଲେ ଏବଂ ସମିତିମାନଙ୍କର ମୂଳଧନ ବୃଦ୍ଧିପାଇଁ ଅଂଶ ପ୍ରଦାନ କଲେ । ସମିତିର ସୁପରିଚାଳନା ପାଇଁ ପ୍ରଚଳିତ ସମବାୟ ଆଇନକୁ ଆମୂଳଚୂଳ ସଂଶୋଧନ କରି ଓଡ଼ିଶା ସରକାର ନୂତନ ଭାବରେ ୧୯୬୨ ମସିହା ଓଡ଼ିଶା ରାଜ୍ୟ ସମବାୟ ଆଇନ ଗୃହୀତ କରାଇଲେ । ଉକ୍ତ ଆଇନରେ ନିବନ୍ଧକଙ୍କୁ ସର୍ବେସର୍ବା କରାଇ ସମିତି ନିବନ୍ଧନ, ଉପବିଧି ନିବନ୍ଧନ, ତଦାରଖ, ପରିଚାଳନା କମିଟି ନିର୍ବାଚନ, କୁପରିଚାଳନାରେ ପରିଚାଳନା କମିଟି ବାତିଲ, ଋଣ ଅସୁଲର ପଦକ୍ଷେପ ପ୍ରଭୃତି ବହୁବିଧ କ୍ଷମତା ଉକ୍ତ ଆଇନରେ ଦିଆଗଲା ।

ରାଜ୍ୟ ସରକାରମାନେ ବହୁଦିନ ତୁନି ପଡ଼ିଲେ ନାହିଁ ଓ ବିଭିନ୍ନ ସମୟରେ ଆଇନ ସଂଶୋଧିତ କରି ସମବାୟକୁ ନିୟନ୍ତ୍ରିତ କଲେ । ୧୯୬୨ରୁ ଓଡ଼ିଶା ସରକାର ୧୬ଥର ସମବାୟ ଆଇନ ସଂଶୋଧନ କରି ନିବନ୍ଧକଙ୍କ କ୍ଷମତା ପ୍ରୟୋଗରେ ହସ୍ତକ୍ଷେପ କରିଆସୁଛନ୍ତି । ଅଦୂରଦର୍ଶୀ ରାଜନେତାମାନେ ଶସ୍ତା ରାଜନୈତିକ ସୁବିଧା ହାସଲ ନିମନ୍ତେ ଋଣ ନଦେବା ପାଇଁ ଲୋକମାନଙ୍କୁ ମତାଇଲେ । କ୍ରମେ ଖିଲାପି ଋଣ ବୃଦ୍ଧି ଫଳରେ ସମବାୟ ସମିତି ଓ ବ୍ୟାଙ୍କମାନେ ଦୁର୍ବଳ ହେଲେ । ଫଳରେ ବ୍ୟାଙ୍କମାନେ ରିଜର୍ଭ ବ୍ୟାଙ୍କରୁ ପୁନଃ ଲଗାଣ ପାଇଲେ ନାହିଁ । ନୂତନ ଓ ଅଣ ଖିଲାପି ଋଣୀମାନେ ସୁଲଭ ସୁଧରେ ଋଣ ପାଇବାରୁ ବଞ୍ଚିତ ହେଲେ । ଖିଲାପି ଋଣୀ ସଭ୍ୟ ସଂଖ୍ୟା ଆଶାତୀତ ଭାବରେ ବୃଦ୍ଧି ପାଇଲା । ୧୯୬୭ରେ ତାମିଲନାଡୁର ନୂତନ ନିର୍ବାଚିତ ସରକାର ଦୁର୍ବଳ ଚାଷୀଙ୍କ ଋଣ ଛାଡ଼ କରିବା ପାଇଁ ରିଜର୍ଭ ବ୍ୟାଙ୍କକୁ ସୁପାରିଶ କଲେ । କିନ୍ତୁ ୧୯୮୦-୮୧ରେ ମହାରାଷ୍ଟ୍ର ସରକାର ଖିଲାପି କ୍ଷୁଦ୍ର ଚାଷୀମାନଙ୍କର ୮୦ କୋଟି ଟଙ୍କା କୃଷି ଋଣ ଛାଡ଼ କଲେ ।

୧୯୮୫ ମସିହାରେ କେନ୍ଦ୍ର ସରକାର ଶସ୍ୟ ବୀମା ଯୋଜନା ପ୍ରବର୍ତ୍ତନ କରିଥିଲେ । ଫଳରେ କେବଳ ବ୍ୟାଙ୍କର ବୀମା କୃଷିଋଣୀମାନେ ବନ୍ୟା, ମରୁଡ଼ି ପ୍ରଭୃତି ଦୁର୍ବିପାକରେ ଧାନ, ଗହମ, ତୈଳବୀଜ ପ୍ରଭୃତି କେତେକ ନିର୍ଦ୍ଦିଷ୍ଟ ଫସଲ ହରାଇଲେ । ବୀମା କମ୍ପାନୀ, କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଅନୁଦାନ ଅର୍ଥରୁ ସେମାନଙ୍କର ଋଣ ମଞ୍ଜୁରୀ ପାଇଁ କ୍ଷତି ପୂରଣ ଦେଇ ଆସୁଥିଲେ । କିନ୍ତୁ ୧୯୯୯ରେ ଭାରତ ସରକାର ସମସ୍ତ କୃଷକଙ୍କର ସମସ୍ତ ଫସଲ ପାଇଁ ରାଷ୍ଟ୍ରୀୟ କୃଷି ବୀମା ପ୍ରବର୍ତ୍ତନ କରିଛନ୍ତି । ଓଡ଼ିଶାର ବୀମା ଚାଷୀମାନେ ୧୯୮୫ରୁ ୨୦୦୨ ଖରିଫ ଋତୁ ପର୍ଯ୍ୟନ୍ତ କ୍ଷତି ଫସଲ ବାବଦରେ ୪ ଶହ ୮ କୋଟି ୪୨ ଲକ୍ଷ ଟଙ୍କା କ୍ଷତି ପୂରଣ ପାଇଲେଣି । ଶସ୍ୟବୀମା ପ୍ରଚଳନ ସତ୍ତ୍ୱେ ୧୯୮୯ରେ କୃଷି ଋଣୀ ପିଚ୍ଛା ୧୦ ହଜାର ଟଙ୍କା ପର୍ଯ୍ୟନ୍ତ ଋଣ ଛାଡ଼ ଘୋଷଣା ହେଲା । ଓଡ଼ିଶାର ସମସ୍ତ କୃଷକ ଋଣୀଙ୍କର ୧୪ ହଜାର କୋଟି ଟଙ୍କା କୃଷି ଋଣ ଛାଡ଼ କରିବା ପରିବର୍ତ୍ତେ କେବଳ ଖିଲାପି ଋଣୀମାନଙ୍କର ସୁଧ ମୂଳ ମିଶି ୧୦ ହଜାର ଟଙ୍କା ପର୍ଯ୍ୟନ୍ତ ଋଣ ଛାଡ଼ କରି ସର୍ବମୋଟ ୧୦ ହଜାର କୋଟି ଟଙ୍କା କୃଷି ଋଣ ଛାଡ଼ ହେଲା । ଫଳରେ ଅଣ ଖିଲାପି କୃଷି ଗାତ୍ରଦାହ ହେଲା । ସେମାନେ ଆଉ କୃଷି ଋଣ ପରିଶୋଧ କଲେ ନାହିଁ । ଋଣ ଅସୁଲ ହାର କେତେକ କେନ୍ଦ୍ର ସମବାୟ ବ୍ୟାଙ୍କରେ ଶତକଡ଼ା ୪୦ରୁ ଶତକଡ଼ା ୪ ଟଙ୍କାକୁ କମି ଆସିଲା । କେରଳ, କର୍ଣ୍ଣାଟକ ପରି କେତେକ ରାଜ୍ୟ ସରକାର ମଧ୍ୟ କୃଷି ଋଣ ଉପରେ ସୁଧ ରିହାତି ଘୋଷଣା କଲେ, କିନ୍ତୁ ସମସ୍ତ ଛାଡ଼ ସୁଧ, ବ୍ୟାଙ୍କମାନଙ୍କୁ ତୁରନ୍ତ ପଇଠ କଲେ ନାହିଁ । ଫଳରେ ପୁନଃଶ୍ଚ ସମବାୟ ବ୍ୟାଙ୍କ ଓ ସମିତିମାନେ ଦୁର୍ବଳ ହେଲେ । କିନ୍ତୁ ଓଡ଼ିଶା ସରକାର ୧୯୯୬ରେ କୃଷି ଋଣୀମାନେ ମୂଳ ଟଙ୍କା ପଇଠ କଲେ ସୁଧ ଛାଡ଼ କରିଦେବେ ବୋଲି ଘୋଷଣା କଲେ । ୧୦୨ କୋଟି ଟଙ୍କା ମୂଳ ଋଣ ଅସୁଲ ହେଲା ଓ ଓଡ଼ିଶା ସରକାର ବ୍ୟାଙ୍କମାନଙ୍କୁ ୩୩ କୋଟି ଟଙ୍କା ଛାଡ଼ ସୁଧ ମଞ୍ଜୁରୀ କଲେ । ଅବଶ୍ୟ ଏପରି ପଦକ୍ଷେପ ଫଳରେ ଓଡ଼ିଶାର ସମବାୟ ବ୍ୟାଙ୍କମାନଙ୍କର ଆର୍ଥିକ ଦୁରବସ୍ଥା ସୁଧୁରି ଯାଇଥିଲା । କେନ୍ଦ୍ର ତଥା ରାଜ୍ୟ ସରକାରମାନଙ୍କର ଏପରି ପୁନଃପୁନଃ ଋଣ ଛାଡ଼ ଫଳରେ ନିର୍ବାଚନ ଆସିଲେ ଋଣ ଛାଡ଼ ପାଇବେ ବୋଲି ଚାଷୀମାନେ ଆଉ ଋଣ ପରିଶୋଧ କଲେ ନାହିଁ । ରିଜର୍ଭ ବ୍ୟାଙ୍କ ତଥା ନାବାର୍ଡ଼ ଋଣ ଛାଡ଼ ପଦକ୍ଷେପ ବିରୁଦ୍ଧରେ ରାଜ୍ୟ ସରକାରମାନଙ୍କୁ ତାଗିଦ କରି ରାଜ୍ୟ ସମବାୟ ବ୍ୟାଙ୍କମାନଙ୍କୁ ପୁନଃ ଲଗାଣ କରିବେ ନାହିଁ ବୋଲି ସତର୍କ କରାଇଲେ । ରାଜ୍ୟ ସରକାରମାନେ ଋଣ କିମ୍ବା ସୁଧ ଛାଡ଼ ଆଉ କଲେ ନାହିଁ । ସମବାୟ ଋଣ ସମିତି ଓ ବ୍ୟାଙ୍କମାନଙ୍କୁ ସଚଳ କରିବା ପାଇଁ ନାବାର୍ଡ଼ ୧୯୯୪ରେ ଓଡ଼ିଶା ସରକାର ଓ ରାଜ୍ୟ ସମବାୟ ବ୍ୟାଙ୍କ ସହିତ ଚୁକ୍ତିବଦ୍ଧ କଲେ । ଋଣ ଲଗାଣ ଓ ଅସୁଲ ପ୍ରତି ମାସରେ ପର୍ଯ୍ୟାଲୋଚନା ହେଉଛି ଏବଂ ଋଣ ଅସୁଲ ତ୍ୱରାନ୍ୱିତ କରିବାପାଇଁ ବିଭିନ୍ନ ପଦକ୍ଷେପ ନିଆଯାଉଛି । ତଥାପି ୨୦୦୨ରେ ଦେଶରେ ବ୍ୟାପକ ମରୁଡ଼ି ହେତୁ ଖରିଫ ଫସଲ ନଷ୍ଟ ହେବାରେ କେନ୍ଦ୍ର ସରକାର କୃଷି ଋଣକୁ ୫ ବର୍ଷିଆ କିସ୍ତି କରି ସୁଧ ପରିମାଣର ଶତକଡ଼ା ୨୦ ଭାଗ ଛାଡ଼ ଘୋଷଣା କଲେ । ସେଥିପାଇଁ ବଜେଟରେ ୬ ହଜାର କୋଟି ଟଙ୍କା ବ୍ୟବସ୍ଥା କଲେ । ସରକାରୀ ନିର୍ଦ୍ଦେଶମତେ ଋଣ ସମବାୟ ସମିତିମାନେ ସଭ୍ୟମାନଙ୍କର ସୁଧ ଛାଡ଼ କଲେ । କିନ୍ତୁ ଏପର୍ଯ୍ୟନ୍ତ ସମିତିମାନେ ସୁଧ ଛାଡ଼ ଟଙ୍କା ନପାଇ ଦୁର୍ବଳ ହୋଇଛନ୍ତି ।

ପୁରୁଣା ଖିଲାପି ଋଣ ଅସୁଲ ପାଇଁ ରିଜର୍ଭ ବ୍ୟାଙ୍କ ଏକକାଳୀନ ଋଣ ଅସୁଲ (One time settlement) ପଦ୍ଧତି ୦୧.୦୪.୨୦୦୧ ମସିହାରୁ ପ୍ରବର୍ତ୍ତନ କରିଛନ୍ତି । ପୁରୁଣା ଖିଲାପି ଋଣୀମାନେ ୧୯୯୮ ପୂର୍ବ ଖିଲାପି ଋଣର ମୂଳ ଓ ସୁଧ ଶୁଝିଲେ ନିୟମ ଅନୁଯାୟୀ ୧୯୯୮ରୁ ସୁଧ ରିହାତି ପାଇବେ । କିନ୍ତୁ ଉକ୍ତ ଛାଡ଼ ଟଙ୍କା କେନ୍ଦ୍ର ତଥା ରାଜ୍ୟ ସରକାରମାନେ ବହନ କରୁନାହାନ୍ତି । ଉକ୍ତ ଛାଡ଼ ଟଙ୍କା ନିଜେ ବହନ କରୁଛନ୍ତି । ତଥାପି ଘର ପୋଡ଼ିରୁ କୁଟା ଖଣ୍ଡେ ବି ପାଇଲେ ଭଲ । ବ୍ୟାଙ୍କମାନେ ମୂଳ ଟଙ୍କା ଅସୁଲ କରି ପୁନଃ ଲଗାଣ କରି ସୁଧ ଅର୍ଜନ କରିପାରୁଛନ୍ତି । ବ୍ୟାଙ୍କମାନଙ୍କର ଅଣ ଉତ୍ପାଦନକ୍ଷମ ଋଣ (Non performing asset) କମିବାରେ ବ୍ୟାଙ୍କମାନଙ୍କର ପତିଆରା ବୃଦ୍ଧି ପାଉଛି ।

ଋଣ ଲଗାଣ ଉତ୍ପାଦନତାର ମୂଳପିଣ୍ଡ । କେନ୍ଦ୍ର ତଥା ରାଜ୍ୟ ସରକାରମାନଙ୍କର ଋଣ ଛାଡ଼ ନୀତି ବ୍ୟାଙ୍କମାନଙ୍କୁ ଅସୁବିଧାରେ ପକାଉଛି । ଋଣ ଅସୁଲରେ ଅସ୍ଥିରତା ସୃଷ୍ଟି କରୁଛି । ଫଳରେ ଖିଲାପି ଋଣୀ ସଂଖ୍ୟା ବୃଦ୍ଧି ପାଉଛି । ବ୍ୟାଙ୍କମାନେ ଦୁର୍ବଳ ହେବାରେ ଜମାକାରୀମାନେ ଜମା ଫେରସ୍ତ ନପାଇବା ଆଶଙ୍କା କରୁଛନ୍ତି । ଋଣ ପ୍ରଦାନ ଓ ଅସୁଲ ଏକ ଅବର୍ତ୍ତିତ (Cyclic) ପାଣ୍ଠି । ଏହାର ଗତିରୁଦ୍ଧ ହେବା ଉଚିତ ନୁହେଁ । ସମବାୟ ଋଣ ସମିତି ଓ ବ୍ୟାଙ୍କମାନେ ଦେବାଳିଆ ଋଣୀମାନଙ୍କୁ ସହାୟତା କରିବା ପାଇଁ ନିଜ ଲାଭରୁ ମନ୍ଦ ଋଣ ପାଣ୍ଠି ଗଠନ କରିଛନ୍ତି । ଦୁର୍ବିପାକ ଚାଷୀମାନଙ୍କର କୃଷି ଋଣ କିସ୍ତି କରିବା ପାଇଁ ନିଜ ଲାଭରୁ କୃଷି ସମୀକରଣ ପାଣ୍ଠି କରିଛନ୍ତି । ପରନ୍ତୁ ଦୁର୍ବିପାକରେ ଫସଲ କ୍ଷତି ଭରଣା ପାଇଁ ରାଷ୍ଟ୍ରୀୟ କୃଷିବୀମା ଯୋଜନା ପ୍ରବର୍ତ୍ତନ ହୋଇଛି । ଏଣୁ କୃଷି ଋଣୀ ସଭ୍ୟମାନଙ୍କର ଋଣ ଛାଡ଼ ହେବା ଉଚିତ ନୁହେଁ । ଏପରି ଋଣ ଛାଡ଼ ଅସୁଲରେ ବାଧା ସୃଷ୍ଟି କରୁଛି । ଫଳରେ ସମବାୟ ବ୍ୟାଙ୍କମାନେ ଦୁର୍ବଳ ହେଉଛନ୍ତି । ଅର୍ଥାତ୍ ବିଭିନ୍ନ ସମୟରେ ଋଣ ଛାଡ଼ ସମବାୟ ବ୍ୟାଙ୍କମାନଙ୍କର ବିପର୍ଯ୍ୟୟର ମୁଖ୍ୟ କାରଣ ହୋଇଛି । ବାଣିଜ୍ୟ ବ୍ୟାଙ୍କମାନେ ମଧ୍ୟ ବାଦ ପଡ଼ିନାହାନ୍ତି । ସେମାନଙ୍କୁ ପୁନର୍ଜୀବିତ କରିବାପାଇଁ କେନ୍ଦ୍ର ସରକାର ନିଜ ବଜେଟ ୨୪ ହଜାର କୋଟିରୁ ୯ ଶହ ୩୪ କୋଟି ଟଙ୍କା ମୂଳଧନ ଦେଲେଣି ।

୧୯୯୮ରେ ଚାଷୀମାନେ ତୁରନ୍ତ କୃଷି ଋଣ ପାଇବା ପାଇଁ ଋତୁ କାଳୀନ ଫସଲ ନୀତି ପରିବର୍ତ୍ତେ ଭାରତ ସରକାର କିଷାନ କ୍ରେଡ଼ିଟ୍ କାର୍ଡ଼ ପ୍ରଚଳନ କରିଛନ୍ତି । ଅର୍ଥାତ୍ ଚାଷୀମାନେ ଆଜି କୃଷି ଋଣ ଶୁଝିଲେ ତତ୍କାଳ ପୁନଃଶ୍ଚ ଋଣ ଲଗାଣ ପାଇପାରୁଛନ୍ତି ।

ଅଦ୍ୟାବଧି କେନ୍ଦ୍ର ଓ ରାଜ୍ୟ ସରକାରମାନେ କେବଳ ଖିଲାପି ଋଣୀମାନଙ୍କର ଋଣ ଛାଡ଼ କରାଇ ପୁରସ୍କୃତ କରୁଥିଲେ । କିନ୍ତୁ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ପ୍ରଥମେ ନିୟମିତ କୃଷି ଋଣ ପଇଠକାରୀମାନଙ୍କୁ ପୁରସ୍କୃତ କରିବା ପାଇଁ ପ୍ରଚଳିତ ସୁଧହାରଠାରୁ ୧ରୁ ୨ ଶତାଂଶ ରିହାତି ସୁଧ ପ୍ରଦାନ କରି ଭାରତରେ ପଥପ୍ରଦର୍ଶକ ହୋଇଛି । ୨୦୦୧ରୁ କଳିଙ୍ଗ କିଷାନ ଗୋଲ୍ଡ କାର୍ଡ଼ ପ୍ରଚଳନ କରିଛି । ଉକ୍ତ ଚାଷୀମାନେ ଲଗାତର ୨ ବର୍ଷ କିସ୍ତି ତାରିଖ ପୂର୍ବରୁ ଋଣ ପଇଠ କଲେ ପ୍ରଚଳିତ ସୁଧ ହାରଠାରୁ ଏକ ଶତାଂଶ ସୁଧ ରିହାତି ପାଇବେ । ରାଜ୍ୟ ସମବାୟ ବ୍ୟାଙ୍କ ଉକ୍ତ ରିହାତି ସୁଧ ବହନ କରୁଛି । ଦୈବ ଦୁର୍ଘଟଣାରେ ବୀମା କମ୍ପାନୀରୁ ୨୫୦୦୦ ଟଙ୍କା କ୍ଷତି ପୂରଣ ପାଇବେ । ରାଜ୍ୟ ସମବାୟ ବ୍ୟାଙ୍କ ଋଣୀ କୃଷକଙ୍କର ବୀମା ଦେୟ ଦେଉଛି । କଳିଙ୍ଗ କିଷାନ ଗୋଲ୍ଡ କାର୍ଡ଼ଧାରୀମାନେ କୃଷି ଋଣ ସହିତ ପ୍ରାଥମିକ ଭାବରେ ୫୦୦୦ ଟଙ୍କା ନଗଦ ପତିଆରା ଋଣ ଓ ୩୦୦୦ ଟଙ୍କା ଦୀର୍ଘକାଳୀନ ଋଣ ପାଇପାରିବେ । ପିଢ଼ିଆ ନିଜ ଇଚ୍ଛା ଅନୁଯାୟୀ ଯେକୌଣସି ସଂସ୍ଥାରୁ କିଣି ପାରିବେ । ବ୍ୟାଙ୍କ ଖର୍ଚ୍ଚରେ କୃଷିରେ ତାଲିମ ପାଇବା ପାଇଁ ଫାର୍ମ ପରିଦର୍ଶନର ସୁବିଧା ପାଇବେ । ପ୍ରତିବର୍ଷ ଲଟେରୀ ଉଠାଣରେ ୩ଟି ଗୋଲ୍ଡ କାର୍ଡ଼ଧାରୀ ପ୍ରଥମ ପୁରସ୍କାର ସ୍ୱରୂପ ୫୦ ହଜାର ଟଙ୍କା, ଦ୍ୱିତୀୟ ପୁରସ୍କାର ସ୍ୱରୂପ ୩୦ ହଜାର ଟଙ୍କା ଓ ତୃତୀୟ ପୁରସ୍କାର ସ୍ୱରୂପ ୨୦ ହଜାର ଟଙ୍କା ପାଉଛନ୍ତି । ଏହିପରି ୬ଟି ସୁବିଧା ପାଇବେ । ସେହିପରି ୨୦୦୨ରୁ କଳିଙ୍ଗ କିଷାନ ସିଲ୍‌ଭର କାର୍ଡ଼ ପ୍ରଚଳନ କରାଯାଇଛି । ଉକ୍ତ କୃଷି ଋଣୀମାନେ ଗୋଟିଏ ବର୍ଷ ଋଣ ଶୁଝିଲେ ପ୍ରଚଳିତ ସୁଧ ହାରଠାରୁ ୧ ଶତାଂଶ ସୁଧ ରିହାତି ପାଇବେ । କିନ୍ତୁ ଗୋଲ୍ଡ କାର୍ଡ଼ଧାରୀମାନଙ୍କ ପରି ଅନ୍ୟାନ୍ୟ ସୁବିଧା ପାଇପାରିବେ ନାହିଁ । ଉପରୋକ୍ତ ପଦକ୍ଷେପମାନ ହେତୁ ଋଣ ଅସୁଲ ହାର ଶତକଡ଼ା ୫୫ରୁ ୬୫କୁ ବୃଦ୍ଧି ପାଇଛି ଓ ଖିଲାପି ଋଣୀଙ୍କ ସଂଖ୍ୟା କମିବାରେ ଲାଗିଛି । ଅବଶ୍ୟ ବାଣିଜ୍ୟ ବ୍ୟାଙ୍କମାନଙ୍କ ପରି ସମବାୟ ଋଣ ସମିତି ଓ ବ୍ୟାଙ୍କମାନଙ୍କର ଦେଣାପାଉଣା ଫର୍ଦ୍ଦ (Balance Sheet) ସମତୁଲ କରିବା ପାଇଁ ଚଳିତ ବଜେଟରେ ଭାରତ ସରକାର ୧୫ ହଜାର କୋଟି ଟଙ୍କା ମୂଳଧନ ଯୋଗାଇବା ପାଇଁ ବ୍ୟବସ୍ଥା କରିଛନ୍ତି । କିନ୍ତୁ କେନ୍ଦ୍ର ଓ ରାଜ୍ୟ ସରକାର ଉଭୟେ ଉକ୍ତ ଅର୍ଥ ବହନ କରିବା ପାଇଁ ନିଷ୍ପତ୍ତି ହୋଇଛି । କିନ୍ତୁ ରାଜ୍ୟ ସରକାରମାନଙ୍କର ଦୁର୍ବଳ ଆର୍ଥିକ ଅବସ୍ଥା ଦୃଷ୍ଟେ ସମବାୟ ବ୍ୟାଙ୍କମାନଙ୍କୁ ତୁରନ୍ତ ସବଳ କରିବାପାଇଁ ରାଜ୍ୟମାନଙ୍କୁ ଭାଗୀଦାର ନକରି କେନ୍ଦ୍ର ସରକାର ନିଜେ ସମସ୍ତ ଅର୍ଥ ବହନ କରିବା ଉଚିତ । ଫଳରେ ବ୍ୟାଙ୍କମାନଙ୍କର ଋଣ ଗ୍ରହଣ କ୍ଷମତା ବୃଦ୍ଧି ପାଇବ ଓ ଚାଷୀମାନେ ସମବାୟ ବ୍ୟାଙ୍କ ତଥା ସମିତିମାନଙ୍କରୁ ସହଜରେ କୃଷି ଋଣ ପାଇପାରିବେ । ଉପରୋକ୍ତ ସୁବିଧା ଦୃଷ୍ଟେ କେନ୍ଦ୍ର ତଥା ରାଜ୍ୟ ସରକାରମାନେ ଆଉ ଋଣ ଛାଡ଼ କରିବା ଉଚିତ ନୁହେଁ ।

୩୧.୦୩.୧୯୯୯ ସୁଦ୍ଧା ଭାରତର ସମସ୍ତ ଗ୍ରାମ ଓ ଶତକଡ଼ା ୬୭ ପରିବାର ସମବାୟ ପରିସରଭୁକ୍ତ ହୋଇଥିଲେ । ୫ ଲକ୍ଷ ୩

ହଜାର ୯ ଶହ ୬୨ ସମବାୟ ସମିତିର ୨୧ କୋଟି ସଭ୍ୟ ଥିଲେ । ସମିତିମାନଙ୍କର ୧୭ ହଜାର ୮ ଶହ ୬୮ କୋଟି ଟଙ୍କା ଅଂଶଧନ, ୧୭ ହଜାର ୯ ଶହ ୧୪ କୋଟି ଟଙ୍କା ରିଜର୍ଭ ପାଣ୍ଠି, ଜମା ୧ ଲକ୍ଷ ୧୫ ହଜାର ୯ ଶହ ୬୬ କୋଟି ଟଙ୍କା ଓ ୨ ଲକ୍ଷ ୨୭ ହଜାର ୧ ଶହ ୧୧ କୋଟି ଟଙ୍କା ମୂଳଧନ ଥିଲା । ୨୦୦୧-୦୨ ବର୍ଷରେ ଉତ୍ପାଦକ ସ୍ୱଳ୍ପକାଳୀନ କୃଷି ଋଣ ୪୧ ହଜାର କୋଟି ଟଙ୍କା ଥିଲା । ଅଥଚ ୧୯୫୦-୫୧ରେ ମାତ୍ର ୨୮୧ କୋଟି ଟଙ୍କା କୃଷି ଋଣ ଥିଲା ।

ବିହାର ପ୍ରଦେଶରୁ ବିଚ୍ଛିନ୍ନ ହୋଇ ନୂତନ ଓଡ଼ିଶା ପ୍ରଦେଶ ୦୧.୦୪.୧୯୩୬ ମସିହାରେ ସୃଷ୍ଟି ହୋଇଥିଲା । ୧୯୦୩ ମସିହାରେ ଓଡ଼ିଶାରେ ୩ଟି ଋଣ ସମବାୟ ସମିତିର ୫୦ ଜଣ ସଭ୍ୟ ଓ ୧୦୦୦ ଟଙ୍କା ମୂଳଧନ ଥିଲା । ୧୯୩୬-୩୭ରେ ସମିତି ସଂଖ୍ୟା ବୃଦ୍ଧି ପାଇ ୨୧୫୪ଟି ସମବାୟ ସମିତିର ୭୪ ହଜାର ସଭ୍ୟ ଓ ୯୮ ଲକ୍ଷ ମୂଳଧନ ଥିଲା । କୁପରିଚାଳନା ହେତୁ ବହୁ ସମବାୟ ସମିତିମାନ ଦୁର୍ବଳ, ଅଥର୍ବ ତଥା ମୃତ ହୋଇଗଲେଣି । କ୍ଷୁଦ୍ର ସମିତିମାନଙ୍କୁ କାର୍ଯ୍ୟକ୍ଷମ କରିବା ପାଇଁ ରିଜର୍ଭ ବ୍ୟାଙ୍କର ୧୯୬୪ କାର୍ଯ୍ୟକ୍ରମ Action Programme ଅନୁଯାୟୀ ବହୁ ସମିତି ମିଶିଯାଇ ବୃହତ୍‌କାର ସମିତିମାନ ହୋଇଥିଲେ । ସମିତି ସଂଖ୍ୟା କମିଯାଇଛି । ଏପରି ଉତ୍‌ଥାନ ଓ ପତନ ସତ୍ତ୍ୱେ ସମବାୟ ସମିତିମାନଙ୍କର ସଭ୍ୟ ସଂଖ୍ୟା ଓ ମୂଳଧନ ବୃଦ୍ଧି ପାଉଛି । ଅର୍ଥାତ୍ ୨୦୦୦-୦୧ରେ ଓଡ଼ିଶାର ସମୁଦାୟ ୬୩ ଲକ୍ଷ ପରିବାର ମଧ୍ୟରୁ ୪୯୮୬ଟି ସମବାୟ ସମିତିମାନଙ୍କର ୫୭ ଲକ୍ଷ ୨୯ ହଜାର ସଭ୍ୟ ହେଲେଣି । ସେମାନଙ୍କର ୬୭୧୨ କୋଟି ୫୪ ଲକ୍ଷ ଟଙ୍କା ମୂଳଧନ ହୋଇଥିଲା । ଉକ୍ତ ପରିପ୍ରେକ୍ଷୀରେ ଓଡ଼ିଶାରେ ସମବାୟ ପ୍ରଗତି ପଥରେ ଆଗେଇ ଚାଲିଛି ।

ସମବାୟକୁ ରାଜନୈତିକ ତଥା ଅମଲା ତାନ୍ତ୍ରିକକରଣରୁ ରକ୍ଷା କରିବା ପାଇଁ ୧୯୯୫ରେ ଆନ୍ଧ୍ର ସରକାର ଏକ ସମାନ୍ତରାଳ ପରସ୍ପର ସାହାଯ୍ୟ (Mutual Aid) ଆଇନ ପ୍ରବର୍ତ୍ତନ କରିଛନ୍ତି । ଉକ୍ତ ଆଇନରେ ୩୧.୦୩.୨୦୦୩ ସୁଦ୍ଧା ୫ ହଜାରରୁ ଊର୍ଦ୍ଧ୍ୱ ସମବାୟ ସମିତି ନିବନ୍ଧନ ହୋଇ ଆନ୍ଧ୍ର ସରକାରଙ୍କ ବିନା ଆର୍ଥିକ ସାହାଯ୍ୟରେ ପରିଚାଳିତ ହେଉଛନ୍ତି । ଆନ୍ଧ୍ର ଅନୁକରଣରେ ବିହାର, କର୍ଣ୍ଣାଟକ, ମଧ୍ୟପ୍ରଦେଶ, ଜାମ୍ମୁ ଓ କାଶ୍ମୀର ସରକାରମାନେ ସ୍ୱ-ନିର୍ଭରଶୀଳ ଆଇନ ଗୃହୀତ କଲେଣି । ୨୦୦୨ରେ ଓଡ଼ିଶା ସରକାର ସ୍ୱ-ନିର୍ଭରଶୀଳ ଆଇନ କାର୍ଯ୍ୟକାରୀ କରିଛନ୍ତି । ଉକ୍ତ ଆଇନରେ ୩ ଶହରୁ ଊର୍ଦ୍ଧ୍ୱ ସମବାୟ ସମିତି ନିବନ୍ଧନ ହେଲେଣି । ଏପରିକି କେତେକ ଋଣ ସମବାୟ ସମିତି ଉକ୍ତ ଆଇନରେ ନିବନ୍ଧନ ହୋଇ ଦେଶ ଲାଭବାନ ହେଉଛନ୍ତି ।

୧୯୦୩ର ସମବାୟ ବୃକ୍ଷଟି ୨୦୦୨-୦୩ରେ ଏପରି ବୃହତ୍ ବରଗଛ ହୋଇ କୃଷକମାନଙ୍କୁ ଛାୟା ତଥା ସୁରକ୍ଷା ପ୍ରଦାନ କଲାଣି । ୨୦୦୨-୦୩ରେ ସମବାୟ ବ୍ୟାଙ୍କମାନେ ଓଡ଼ିଶାର ସମୁଦାୟ କୃଷି ଋଣର ଶତକଡ଼ା ୭୦ ଭାଗ ବହନ ସ୍ଥଳେ ବାଣିଜ୍ୟ ଓ ଗ୍ରାମ୍ୟ ବ୍ୟାଙ୍କମାନେ ମିଶି କେବଳ ୪୦ ଭାଗ ବହନ କରିଥିଲେ । କେବଳ ବାଙ୍କୀରେ ୧୯୦୩ରେ ୩ଟି କୃଷି ଋଣ ସମବାୟ ସମିତିର ୫୦ ଜଣ ସମବାୟ ସଭ୍ୟ ଓ ଋଣ ଲଗାଣ ୧ ହଜାର ଟଙ୍କା ଥିବା ସ୍ଥଳେ ୨୦୦୩ରେ ବାଙ୍କୀ କେନ୍ଦ୍ର ସମବାୟ ବ୍ୟାଙ୍କ୍ ଅଧୀନସ୍ଥ ବାଙ୍କୀର ୨ଟି ବ୍ଲକ୍‌ର ୧୫୦ଟି ସମିତିର ୩୦ ହଜାର ସଭ୍ୟ ଓ ଜମା ୧୭ କୋଟି ଟଙ୍କା ହୋଇଥିଲା । ୩୧.୦୩.୨୦୦୩ ସୁଦ୍ଧା ୨ ହଜାର ୭ ଶହ ୬୦ କୃଷି ଋଣ ସମିତିର ଓଡ଼ିଶାରେ ଶତକଡ଼ା ୭୦ ଭାଗ ପରିବାର ସଭ୍ୟ ହୋଇଥିଲେ । ଏହି ତାରିଖ ସୁଦ୍ଧା ଋଣୀ ସଭ୍ୟମାନଙ୍କ ଉପରେ ୧ ହଜାର ୬୨ କୋଟି ଟଙ୍କା ଋଣ ଥିଲା । ବହୁ ପ୍ରତିବନ୍ଧକ ସତ୍ତ୍ୱେ ସମବାୟ ଆନ୍ଦୋଳନ ଆଗେଇଛି ଓ ଗ୍ରାମ୍ୟ ଅର୍ଥନୀତିରେ ପ୍ରମୁଖ ଅଂଶୀଦାର ହୋଇଛି । କିନ୍ତୁ ଗାନ୍ଧିଜୀଙ୍କ ବାଣୀ ଅନୁଯାୟୀ ଲୋକ ଚରିତ୍ର ଠିକ୍ ନରହିଲେ ସମବାୟ ଉଧେଇବ ନାହିଁ । ଓଡ଼ିଶାରେ ବାଙ୍କୀ ସମବାୟର ଜନ୍ମସ୍ଥଳୀ ହୋଇଥିବାରୁ ୨୪.୧୧.୨୦୦୩ରେ ଓଡ଼ିଶାର ଶତବାର୍ଷିକ ସମବାୟ ଆନ୍ଦୋଳନ ମହାସମାରୋହର ବାଙ୍କୀ କେନ୍ଦ୍ର ସମବାୟ ବ୍ୟାଙ୍କ୍ ପରିସରରେ ବେଶ୍ ଜାକଜମକରେ ପାଳିତ ହୋଇଯାଇଛି ।

ଅବିଭକ୍ତ ଭାରତରେ ୧୮୯୧ରେ ପଞ୍ଜାବ ପ୍ରଦେଶର ଡାଙ୍ଗ ଜିଲ୍ଲାରେ ପ୍ରଥମେ କୃଷି ଜମି ସମବାୟ ସମିତି ଗଠିତ ହୋଇଥିଲା । କିନ୍ତୁ ୧୯୦୪ ମସିହା ପର୍ଯ୍ୟନ୍ତ କେତେକ କାଁ ଭାଁ ସମିତିମାନ ଗଠିତ ହୋଇଥିଲା । ଭାରତରେ ୨୫.୦୩.୧୯୦୪ରେ ସମବାୟ ଆଇନ ପ୍ରଚଳନ ହେବାରେ ସମବାୟ ଆନ୍ଦୋଳନ ବିଧିବଦ୍ଧ ଭାବରେ ଆଗେଇ ଚାଲିଥିଲା ଓ ସମବାୟ ସମିତି ସଂଖ୍ୟା ବୃଦ୍ଧି ପାଇଥିଲା । ଏଣୁ ୨୦୦୪ରେ ଭାରତ ସାରା ସମବାୟ ଶତବାର୍ଷିକ ଉତ୍ସବ ପାଳନ ହେବାକୁ ଯାଉଛି ।



# ମହିଳା ସଶକ୍ତିକରଣ ଓ ସମବାୟ ଆନ୍ଦୋଳନ

ଡଃ ଲକ୍ଷ୍ମୀନାରାୟଣ ରାୟସିଂହ

୧୯୦୪ ମସିହାରେ ସର୍ବପ୍ରଥମ ଭାରତବର୍ଷରେ ସମବାୟ ଆଇନ ପ୍ରବର୍ତ୍ତନ କରାଗଲା । ଏହିବର୍ଷ ତାହାର ଶତବର୍ଷ ପୂର୍ତ୍ତି । ଇତିହାସ ପ୍ରମାଣ କରେ ଯେ, ଧନତାନ୍ତ୍ରିକ ଅର୍ଥନୈତିକ ବ୍ୟବସ୍ଥାରେ ଦରିଦ୍ର ଶ୍ରମିକ, କୃଷକ, ସାଧାରଣ କ୍ରେତା ଯେତେବେଳେ ଅର୍ଥନୈତିକ ଚାପର ସମ୍ମୁଖୀନ ହେଲେ, ସେତେବେଳେ ୧୯୦୪ ମସିହାରେ ଏହି ସମବାୟ ଆନ୍ଦୋଳନ ଗଢ଼ି ଉଠିଲା । ଗତ ଶହେ ବର୍ଷ ମଧ୍ୟରେ ଭାରତବର୍ଷ ତଥା ଓଡ଼ିଶାରେ 'ସମବାୟ ଆନ୍ଦୋଳନ' ଏକ ଐତିହାସିକ ପଦକ୍ଷେପ ନେଇଥିବାବେଳେ ସମାଜର ଜନସଂଖ୍ୟାର ଅର୍ଦ୍ଧେକ ମହିଳାଙ୍କ ମଧ୍ୟରୁ ଅଧିକାଂଶ ଏହି ଆନ୍ଦୋଳନରୁ ଦୂରରେ ରହିଛନ୍ତି ।

ସମଚିନ୍ତା ଭାବନାରୁ ଉତ୍ପନ୍ନ କୌଣସି ପ୍ରକ୍ରିୟାକୁ ଚାଲୁ କରି ରଖିବାର ଚୂଡ଼ାନ୍ତ ରୂପ ହିଁ ଏହି 'ସମବାୟ' । ମଣିଷର କଲ୍ୟାଣ ପାଇଁ ସମ୍ମିଳିତ ପ୍ରଚେଷ୍ଟାରେ ଗଢ଼ି ଉଠିଥିବା, ସର୍ବୋପରି ଜାତୀୟ ସଂପଦ ସୃଷ୍ଟି ଓ ଉତ୍ପାଦନ ପ୍ରକ୍ରିୟାର ଏହି ସଂଘବଦ୍ଧ ପ୍ରୟାସକୁ ମର୍ଯ୍ୟାଦା ଦେବାର ଧାରଣାରୁ ଏହି ସମବାୟ ଭାବନାର ଉତ୍ପତ୍ତି ।

ସଂପ୍ରତି ଏକବିଂଶ ଶତାବ୍ଦୀର ପ୍ରାରମ୍ଭ ଦଶନ୍ଧି ସମୟରେ ଆର୍ଥିକ ସଂକଟର ରୂପରେଖ ସମସ୍ତଙ୍କ ଅନୁଭବରେ ଆସୁଛି । ଜଗତିକରଣ, ଉଦାରୀକରଣ ଓ ଘରୋଇକରଣ ପ୍ରକ୍ରିୟାରେ, ସାମାଜିକ ପ୍ରତିଫଳନରେ, ବିଶେଷକରି ଆଧୁନିକ ଜଗତିକରଣର ଭୋଗବାଦ ମହିଳାମାନଙ୍କୁ ଭୋଗ୍ୟବସ୍ତୁ ହିସାବରେ, ବ୍ୟବସାୟିକ ବଜାରରେ, ପଣ୍ୟ ହିସାବରେ ବ୍ୟବହାର କରିବାର ଭୟଙ୍କର ବିପଦ ଦେଖାଦେଇଛି । ଜଗତିକରଣ ଅର୍ଥନୈତିକ ବ୍ୟବସ୍ଥା ପ୍ରଚଳନ ପୂର୍ବରୁ ମଣିଷର ଯେଉଁ ମୂଲ୍ୟବୋଧ, ସାମାଜିକ ନୈତିକତା, ମାନବିକ ରୁଚିବୋଧ ବିକଶିତ ହୋଇଥିଲା, ତାହା ବର୍ତ୍ତମାନ ଅବକ୍ଷୟୀ ଏହି ପୁଂଜିବାଦୀ ସମାଜ ବ୍ୟବସ୍ଥାରେ ଆକ୍ରାନ୍ତ ହୋଇପଡ଼ିଛି । ଏହି ପରିପ୍ରେକ୍ଷୀରେ ଭାରତବର୍ଷର ଲୋକସଂଖ୍ୟାର ଅର୍ଦ୍ଧେକ - ପୁରୁଷ ପ୍ରାଧାନ୍ୟ ସମାଜ ବ୍ୟବସ୍ଥାରେ ମହିଳା ନାନାପ୍ରକାର ନିର୍ଯାତନାର ଶିକାର ହେଉଛି ।

ଶ୍ରେଣୀ ଶୋଷଣ ହିଁ ଏହି ବୈଷମ୍ୟର ମୂଳ କାରଣ । ଏହି ଶୋଷଣ କାରଣରୁ ଏବେ ମଧ୍ୟ ନାରୀଙ୍କୁ ଗୃହସେବିକା ଭୂମିକାରେ ଦେଖିବାକୁ ପୁରୁଷ ଶାସିତ ସମାଜ ଚାହେଁ ।

ସଚରାଚର ଦେଖାଯାଏ, ବିବାହ ପରେ ଗୃହଗତ ଅବସ୍ଥାନରେ ସ୍ୱସ୍ତି ଓ ଶାନ୍ତି ପାଇଁ ଗୃହସେବିକା ଭୂମିକାଟି ଯଥାଯଥ ପାଳନ ପାଇଁ ଚାକିରି କରୁଥିବା ମହିଳାକୁ ସ୍ୱଇଚ୍ଛାରେ ହେଉ ବା ବାଧ୍ୟ ହୋଇ ହେଉ - ତାହା ତ୍ୟାଗ କରିବାକୁ ପଡ଼ିଥାଏ । ଠିକ୍ ବିପରୀତ ଭାବେ ପୁରୁଷକୁ ସେହିପରି ଭାବେ କରିବାକୁ ହୋଇନଥାଏ । ନାରୀର ଅର୍ଥନୈତିକ ଯୋଗ୍ୟତାର ମର୍ଯ୍ୟାଦା ଦେବା ପାଇଁ ପୁରୁଷ ନିଜର ଉପାର୍ଜନଜନିତ ଚାକିରି ଛାଡ଼ିଦେବା ଘଟଣା ଦେଖାଯାଏ ନାହିଁ ।

ନାରୀ ପ୍ରତ୍ୟେକ ପ୍ରକାର କାର୍ଯ୍ୟରେ ନିଜକୁ ନିୟୋଜିତ କରିପାରନ୍ତି । ଗୃହବଧୂମାନେ ପରିଶ୍ରମ କରି ସଂସାରକୁ ସୁଖୀ କରିଥାନ୍ତି । ଅର୍ଥ ଉପାର୍ଜନ ପାଇଁ ଗୃହ ବାହାରକୁ ଯାଇ ଶିକ୍ଷାନୁଷ୍ଠାନ, ଅଫିସ୍ କାର୍ଯ୍ୟାଳୟ, ବ୍ୟବସାୟ କ୍ଷେତ୍ରମାନଙ୍କରେ ନାରୀମାନେ ଦାୟିତ୍ୱ ନେଇ କାର୍ଯ୍ୟ ମଧ୍ୟ ସୂଚାରୁ ରୂପେ ସମ୍ପନ୍ନ କରିଥାନ୍ତି । ତଥାପି ନାରୀମାନେ ଶ୍ରେଣୀ ବୈଷମ୍ୟ ସମାଜରେ ବିଭିନ୍ନ ଭାବରେ ବୈଷମ୍ୟର ଶିକାର ହେଉଛନ୍ତି ।

ଏପରି ଏକ ପରିସ୍ଥିତିରେ ନାରୀର କ୍ଷମତାୟନ ବା ସଶକ୍ତିକରଣ ବର୍ଷ ପାଳନ ବ୍ୟବସ୍ଥା କରାଯାଇଛି । ଏହି ବର୍ଷ ପାଳନ ସତ୍ତ୍ୱେ ନାରୀ ତା'ର ସ୍ୱ-ଉପାର୍ଜିତ ଅର୍ଥକୁ ସ୍ୱାଧୀନ ଭାବେ ବ୍ୟୟକରିବା ଅଧିକାର ମଧ୍ୟ ପାଇଲା ନାହିଁ । ଆଉ କି କ୍ଷମତାୟନ ବା ସଶକ୍ତିକରଣ ହେଲା ?

ଆର୍ଥିକ ସ୍ୱ ନିର୍ଭରତା ଅର୍ଜନର ଅନ୍ୟତମ ଅବଲମ୍ବନ ହେଉଛି ଏହି 'ସମବାୟ' ସଂଗଠନ । ଅବଶ୍ୟ ଏକଥା ସତ ଯେ 'ସମବାୟ' ଆନ୍ଦୋଳନରେ ଶୋଷଣମୁକ୍ତ ସମାଜ ଗଢ଼ା ହୋଇ ପାରିବ ନାହିଁ । କିନ୍ତୁ ଏହା ପୁଂଜିବାଦୀ ସମାଜ ପରିବର୍ତ୍ତନର ଭିତ୍ତି ସ୍ୱରୂପ କାର୍ଯ୍ୟ କରିବ ।

ସୋଭିଏତ୍ ଋଷ (ଯାହା ବର୍ତ୍ତମାନ ନାହିଁ)ର ଏହି ସମବାୟ ଆନ୍ଦୋଳନର ସଫଳତା ପୃଥିବୀର ବିଭିନ୍ନ ଦେଶ ଦେଖିଛନ୍ତି । ୧୯୧୭ ନଭେମ୍ବର ବିପ୍ଳବ ପରେ ସମାଜବାଦର ବ୍ୟାପକ କାର୍ଯ୍ୟକ୍ରମରେ ସମବାୟ ଅନୁଷ୍ଠାନମାନ ବିଭିନ୍ନ କ୍ଷେତ୍ରରେ ଅର୍ଥନୈତିକ ପରିକଳ୍ପନା କାର୍ଯ୍ୟକାରୀ କରିବାରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରାଯାଇଥିଲା ।

ସଂପ୍ରତି ଆମ ରାଜ୍ୟ ଓଡ଼ିଶାରେ ସମବାୟ ଆନ୍ଦୋଳନ, ମହିଳା ସଶକ୍ତିକରଣ ବର୍ଷ ପାଳନ ହେବା ସତ୍ତ୍ୱେ ଅଧିକାଂଶଙ୍କ ପାଖରେ ପହଞ୍ଚି ପାରି ନାହିଁ । ରାଜ୍ୟରେ ତ୍ରିସ୍ତରୀୟ ପଞ୍ଚାୟତ ନିର୍ବାଚନ ମାଧ୍ୟମରେ ନାରୀମାନଙ୍କ ପାଇଁ ଶତକଡ଼ା ୩୦ ଭାଗ ପ୍ରଶାସନିକ କ୍ଷମତା ଦିଆଯାଇଥିଲେ ମଧ୍ୟ ଲୋକସଭା କେନ୍ଦ୍ରରେ ତାହା ଧର୍ମୀୟ ମୌଳବାଦ ଚାପରେ ଏପର୍ଯ୍ୟନ୍ତ ୩୩ ଶତାଂଶ ଦାବି କାର୍ଯ୍ୟକାରୀ ହୋଇପାରି ନାହିଁ । ବର୍ତ୍ତମାନର ପ୍ରଗତିଶୀଳ ମେଣ୍ଟ ସରକାର ଅମଳରେ ତାହା ଆଇନରେ ପରିଣତ ହୋଇପାରେ । ତେବେ ସଂପ୍ରତି ବିଭିନ୍ନ ରାଜ୍ୟରେ 'ସମବାୟ' ସଂପର୍କରେ ଅନେକ ପରିମାଣର ଉତ୍ସାହ ପରିଲକ୍ଷିତ ହେଉଛି । ବିଶେଷତଃ ରାଜନୈତିକ ଦଳମାନେ ଏ ଦିଗରେ ଦୃଷ୍ଟି ଦେଉଥିବା ଉଲ୍ଲେଖଯୋଗ୍ୟ ।

ଆମ ଭାରତବର୍ଷରେ ଯେଉଁ ସମବାୟ ଆନ୍ଦୋଳନ ସୃଷ୍ଟି କରାଯାଇଛି, ତାହା କୌଣସି 'ପୁଞ୍ଜି'ର ଯୌଥ ସଂଗଠନ ନୁହେଁ । ସ୍ୱଇଚ୍ଛାରେ ଅଂଶ ଗ୍ରହଣକାରୀ ମଣିଷମାନଙ୍କର ଯୌଥ ସଂଗଠନ । ସାଧାରଣ ମଣିଷଙ୍କ ସଂଗଠନ ।

ସମବାୟ ସଂଗଠନର ପ୍ରସାର କ୍ଷେତ୍ର କେବଳ ସହର ନୁହେଁ, ଗ୍ରାମାଞ୍ଚଳକୁ ମଧ୍ୟ ବ୍ୟାପିଛି । ଶ୍ରେଣୀ ବିଭକ୍ତ ପୁଂଜିବାଦୀ ସମାଜ ବ୍ୟବସ୍ଥାରେ ଏହି ସମବାୟ ଆନ୍ଦୋଳନ ଅବଶ୍ୟ ସମାଜ ତାନ୍ତ୍ରିକ ବ୍ୟବସ୍ଥା ଗଢ଼ିବାରେ ସାହାଯ୍ୟକାରୀ ହେବ । ଦେଶର ଅର୍ଥନୈତିକ ସଂକଟକୁ ମୁକାବିଲା କରିବାରେ ଏହା ମଧ୍ୟ ସାହାଯ୍ୟ କରିବ ।

ଇତିହାସରୁ ଜଣାଯାଏ, ଯେତେବେଳେ କର୍ମହୀନତା ଅନାହାର, ଶିକ୍ଷାହୀନତା, ମାନବିକ ଓ ସାମାଜିକ ଅବକ୍ଷୟ ସମାଜରେ ଦେଖା ଦେଲା, ସେତେବେଳେ ଜେରେମି ବେନ୍ଥାମ (୧୭୪୮-୧୮୩୨), ଜେମସ୍ ଷ୍ଟୁୟାର୍ଟ ମିଲ୍ (୧୮୦୬-୧୮୭୩) ପ୍ରମୁଖ ମନୀଷୀମାନେ ଧନୀ ଗୋଷ୍ଠୀକୁ ମାନବିକ ଓ ସାମାଜିକ ହେବାକୁ ଆହ୍ୱାନ କରିଥିଲେ । ଏମାନଙ୍କ ପ୍ରଚେଷ୍ଟା ପୁଞ୍ଜିପତି ଗୋଷ୍ଠୀଙ୍କୁ ପ୍ରଭାବିତ କରିନଥିଲା । ସେମାନେ ମାନବିକ ହେଲେ ନାହିଁ କି ସାମାଜିକ ମଧ୍ୟ ହେଲେ ନାହିଁ । ତା'ପରେ ରର୍ବଟ୍ ଓଏନ୍ (୧୭୭୧-୧୭୫୩), ଡକ୍ଟର ଉଇଲିଅମ୍ କିଙ୍ଗ୍ (୧୭୮୬-୧୮୬୫), ଫ୍ରାନ୍ସର ଚାର୍ଲସ କୋରିୟାର (୧୭୭୧-୧୮୩୭), ଲୁଇବ୍ଲାଙ୍କ (୧୮୧୩-୧୮୮୨) ପ୍ରମୁଖ ମନୀଷୀମାନେ ଶୋଷଣ ବିରୁଦ୍ଧରେ ସ୍ୱରୋତ୍ତଳନ କରିବାରେ ପାଶ୍ଚାତ୍ୟ ଦେଶମାନଙ୍କରେ ସମାଜବାଦୀ ଭାବଧାରା ପ୍ରବେଶ କଲା । କିନ୍ତୁ ସମାଜ ପରିବର୍ତ୍ତନ ପାଇଁ ଯେଉଁ କାମର ଆବଶ୍ୟକତା ଥିଲା, ତାହା ହୁଏତ ହେଲା ନାହିଁ ।

୧୮୪୮ ମସିହାରେ ଆଧୁନିକ ସମାଜ ତନ୍ତ୍ରର ଜନକ କାର୍ଲମାର୍କ୍ସ (୧୮୧୮-୧୮୮୩) କମ୍ୟୁନିଷ୍ଟ ମାନିଫେଷ୍ଟୋ (କମ୍ୟୁନିଟ୍ ଇସ୍ତାହାର) ପ୍ରକାଶ କରି ସମଗ୍ର ବିଶ୍ୱରେ ଚେତନା ଜାଗ୍ରତ କରାଇ ଦେଲେ ଯେ ଶୋଷଣହୀନ ସମାଜ ଚେତନା ଶ୍ରେଣୀ ସଂଗ୍ରାମ ବ୍ୟତୀତ ସମ୍ଭବ ନୁହେଁ । ରର୍ବଟ ଓଏନଙ୍କଠାରୁ ସେ ଜାଣିଥିଲେ ଯେ ଶ୍ରମିକ - ଶୋଷଣ ବିରୁଦ୍ଧରେ ସଂଗ୍ରାମର ହତିହାର ହିସାବରେ 'ସମବାୟ'ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବିଶେଷକରି ଶ୍ରେଣୀ ବିଭକ୍ତ ସମାଜରେ ସମାଜ ପରିବର୍ତ୍ତନର ଅନେକ କାର୍ଯ୍ୟକ୍ରମ ମଧ୍ୟରେ 'ସମବାୟ' ଅନ୍ୟତମ ।

ଦାରିଦ୍ର୍ୟ ସୀମାରେଖା ତଳେ ଥିବା ମଣିଷମାନଙ୍କୁ ନେଇ ଗଢ଼ା ଯାଇପାରେ ଏହି 'ସମବାୟ' । ସ୍ୱାଭାବିକ ଭାବେ କ୍ଷେତ ମଜଦୂର, ଶ୍ରମିକ, ଦରିଦ୍ର କୃଷକ, କ୍ଷୁଦ୍ର କୁଟୀର ଶିଳ୍ପୀ ଇତ୍ୟାଦି ଶ୍ରେଣୀର ଅସଂଗଠିତ ମଣିଷମାନେ ହିଁ ସମାଜର ତଳସ୍ତରରେ ଦାରିଦ୍ର୍ୟ ସୀମାରେଖା ତଳେ ବାସ କରନ୍ତି ।

ଏମାନଙ୍କ ମଧ୍ୟରେ ନାରୀ ସମାଜ ଦୁଃସହ ନିର୍ଯ୍ୟାତନା ଓ ପ୍ରତାରଣାର ଶିକାର ହୋଇଥାନ୍ତି । ତେଣୁ ନାରୀ ହିଁ ଦାରିଦ୍ର୍ୟ ସୀମାରେଖା ତଳେ ରହିଥିବା ମଣିଷ ଭାବେ ବିଚାର୍ଯ୍ୟ । ଏଥିସହିତ ନାରୀ ସମାଜରେ ରହିଛି ନିରକ୍ଷରତାର ନିର୍ମମ ଅଭିଶାପ । ଦୁର୍ବଳ, ଅଭାବ ଜଡ଼ିତ, ଅଦକ୍ଷ ଓ ଉତ୍ପାଦନ ବିମୁଖ ଜୀନ ନାରୀକୁ ଅଧିକାଂଶ କ୍ଷେତ୍ରରେ ପାଳନ କରିବାକୁ ହୋଇଥାଏ । ପାରିବାରିକ ଅର୍ଥନୀତିରେ ତା'ର କୌଣସି ଭୂମିକା ନଥାଏ ।

ନାରୀ ସମାଜକୁ ସମାନ ଅଧିକାର ଭିତ୍ତିରେ 'ସମବାୟ' ସମିତି ଗଠନ ମାଧ୍ୟମରେ ଅର୍ଥନୈତିକ ପ୍ରତିଷ୍ଠା ଦିଆଯାଇପାରେ । ନାରୀମୁକ୍ତି ଓ ସଶକ୍ତିକରଣ ପାଇଁ ସହର ଓ ଗ୍ରାମମାନଙ୍କର ମହିଳାମାନଙ୍କୁ ଶିକ୍ଷା ପ୍ରଦାନ ସହ ସଚେତନତା ସୃଷ୍ଟି ମାଧ୍ୟମରେ ପରିବାରରେ ପ୍ରତିଷ୍ଠା ପାଇବା ପାଇଁ ଭିତ୍ତି ସୃଷ୍ଟି କରିବା ଆବଶ୍ୟକ । ସ୍ୱୟମ୍ଭର ଗୋଷ୍ଠୀ ଗଠନ କରି ଗୋଟାଏ ଆନ୍ଦୋଳନ ସୃଷ୍ଟି କରିବା ନିହାତି ଦରକାର ।

ଭାରତରେ ଶହେ ପାଞ୍ଚକୋଟି ଲୋକ ସଂଖ୍ୟା ମଧ୍ୟରେ ପ୍ରାୟ ୫୦ କୋଟି ନାରୀ । ଏଥିମଧ୍ୟରୁ ୩୩ କୋଟି ମହିଳା ପ୍ରାପ୍ତ ବୟସ୍କା । ଭାରତର ପ୍ରାୟ ୨୧ କୋଟି ପୁରୁଷ ସମବାୟ ସହ ସଂପୃକ୍ତ ବୋଲି ହିସାବରୁ ଜଣାଯାଏ । କିନ୍ତୁ ଏକ କୋଟି ମହିଳାଙ୍କୁ ଏ ପର୍ଯ୍ୟନ୍ତ ସମବାୟ ସହ ଯୁକ୍ତ କରାଯାଇପାରି ନାହିଁ । ଏହାର କାରଣ ଏହିପରି ହୋଇପାରେ ।

କ) ମହିଳାମାନଙ୍କ ମଧ୍ୟରେ ସମବାୟ ସଚେତନତା ସୃଷ୍ଟିର ଅଭାବ ।

ଖ) ଅର୍ଥନୈତିକ ଦିଗରୁ ଦୁର୍ବଳତମ ଶ୍ରେଣୀ ହିସାବରେ ଅସଂଗଠିତ ।

ଗ) ଉତ୍ପାଦନ କ୍ଷେତ୍ରରେ ସୁଯୋଗ କମ ଇତ୍ୟାଦି ।

ଏହିସବୁ କାରଣରୁ ସମବାୟ ଅନୁଷ୍ଠାନରେ ସେମାନଙ୍କର ଯୋଗଦାନ ନଗଣ୍ୟ ।

୧୯୮୩ ମସିହାଠାରୁ ସ୍ୱନିର୍ଭର ଗୋଷ୍ଠୀ ପାଇଁ ମହିଳା ବ୍ୟାଙ୍କ୍ ସୃଷ୍ଟି କରାଯାଇ ମହିଳା ଋଣଦାନ ସମିତି ପ୍ରଭୃତି କାର୍ଯ୍ୟ କରୁଛି । ଏହାଦ୍ୱାରା ସଂଚୟ ପ୍ରବଣତା, ଉପାର୍ଜନଶୀଳ କାର୍ଯ୍ୟରେ ନିଯୁକ୍ତି, ଭୋଗ୍ୟ ପଣ୍ୟ କ୍ରୟ ପାଇଁ ଋଣ, ଶିଳ୍ପ ଉଦ୍ୟୋଗ ପାଇଁ ଋଣ ଦେବା, ସ୍ୱନିର୍ଭର ଗୋଷ୍ଠୀଙ୍କୁ ଆର୍ଥିକ ସାହାଯ୍ୟ ପ୍ରଭୃତି କାର୍ଯ୍ୟ ଚାଲୁ ରହିଛି ।

ଅବଶ୍ୟ ବର୍ତ୍ତମାନ ସମୟରେ ମହିଳାମାନେ ନାନା ପ୍ରକାର ସମବାୟ ସଂଗଠନ ଗଢ଼ି ନିଜର କ୍ଷମତାକୁ ସମାଜରେ ଚିହ୍ନିତ କରିପାରିଛନ୍ତି । ଉତ୍ପାଦନଭିତ୍ତିକ ସମବାୟ ସହ ନୂତନ ବ୍ୟବସାୟଭିତ୍ତିକ ସମବାୟ ଗଠନର ସୁଯୋଗ ରହିଛି । ମହିଳାମାନେ ନିଜର ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରି ଅର୍ଥନୈତିକ ସ୍ୱାଧୀନତା ଲାଭର ସୁଯୋଗ ପାଇପାରିବେ । ଏହାଦ୍ୱାରା ନାରୀମାନଙ୍କର ସଶକ୍ତିକରଣ ଦିଗରେ ଆଗେଇ ଯିବାରେ ମହିଳା ସଂଘମାନେ ନିଷ୍ଠାର ସହ କାର୍ଯ୍ୟ କରିବା ଆବଶ୍ୟକ ।

'ସମବାୟ' ସୃଷ୍ଟିର ଏହି ଶତାବାର୍ଷିକୀ ପାଳନ ଅବସରରେ ଏହା ହେଉ ଦେଶର ଅଗ୍ରଗତିର ବାହକ ।

---

# ବେକାରୀ ଦୂରୀକରଣ ପାଇଁ 'ନିଯୁକ୍ତି ମିଶନ'

ରାଜ୍ୟରେ ଆର୍ଥିକ ସଙ୍କଟ ଯୋଗୁଁ କାର୍ଯ୍ୟକାରୀ ହେଉଥିବା ଅର୍ଥନୈତିକ ଓ ପ୍ରଶାସନିକ ସଂସ୍କାର ତଥା ନିଯୁକ୍ତି ବନ୍ଦଥିବାରୁ ଶିକ୍ଷିତ ବେକାର ଯୁବକ ଯୁବତୀଙ୍କ ପାଇଁ ବିକଳ୍ପ ଜୀବିକା ଯୋଗାଇ ଦେବାକୁ ରାଜ୍ୟ ସରକାର 'ନିଯୁକ୍ତି ମିଶନ' କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । କେନ୍ଦ୍ରୀୟ ପ୍ରଯୋଜିତ ଆତ୍ମନିଯୁକ୍ତି ଯୋଜନା, ପଞ୍ଚାୟତିରାଜ, କୃଷି, ଶିଳ୍ପ ବୟନ ତଥା ହସ୍ତତନ୍ତ ବିଭାଗ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଯୋଜନାରେ ଅଧିକରୁ ଅଧିକ ବେକାରଙ୍କୁ ଆତ୍ମନିଯୁକ୍ତି ସଂପର୍କରେ ମିଶନ କାର୍ଯ୍ୟକ୍ରମରେ ସ୍ୱତନ୍ତ୍ର ଦୃଷ୍ଟି ଦିଆଯିବ । ରାଜ୍ୟରେ ହେବାକୁ ଯାଉଥିବା ଇସ୍ପାତ ପ୍ରକଳ୍ପଗୁଡ଼ିକରେ ବ୍ୟାପକ ନିଯୁକ୍ତିକୁ ମିଶନ ତତ୍ତ୍ୱାବଧାନ କରିବ । ମିଶନ ଜରିଆରେ ନିଯୁକ୍ତିଭିତ୍ତିକ କୋଚିଂ ସେଣ୍ଟର ଖୋଲାଯିବ, ଜିଲ୍ଲାସ୍ତରରେ ଆତ୍ମନିଯୁକ୍ତି ମେଳା କରାଯିବ ଏବଂ ଉନ୍ନତମାନର ତାଲିମ କେନ୍ଦ୍ର ଖୋଲାଯିବ । ଏଥିପାଇଁ ମୁଖ୍ୟମନ୍ତ୍ରୀଙ୍କ ଅଧକ୍ଷତାରେ ୧୨ ଜଣ ମନ୍ତ୍ରୀଙ୍କୁ ସଦସ୍ୟ ରୂପେ ଗ୍ରହଣ କରାଯାଇ ଉଚ୍ଚସ୍ତରୀୟ କମିଟି ଗଠନ କରାଯାଇଥିବାବେଳେ ଅନୁରୂପ ଭାବେ ସମସ୍ତ ବିଭାଗର ଶାସନ ସଚିବଙ୍କୁ ନେଇ ମୁଖ୍ୟ ଶାସନ ସଚିବ ଡଃ ସୁବାସ ପାଣିଙ୍କ ଅଧକ୍ଷତାରେ ଏକ ଟାସ୍କଫୋର୍ସ ଗଠନ କରିବାକୁ ସ୍ଥିର କରାଯାଇଛି ।

ସୌଜନ୍ୟ : ଗବେଷଣା ଓ ତଥ୍ୟ ସୂଚନା ଶାଖା

# ଶତାବ୍ଦୀ ପୂର୍ତ୍ତିର ଆହ୍ୱାନ

ପୂର୍ଣ୍ଣଚନ୍ଦ୍ର ମହାନ୍ତି

ଆଜି ଶତାବ୍ଦୀର ପୂର୍ତ୍ତିରେ ସମବାୟ କ୍ଷେତ୍ର ତଥା ସହଯୋଗୀ ବନ୍ଧୁଗଣ ଉତ୍ସବ ମୁଖରିତ ହେବା ସଂଗେ ସଂଗେ ହୃଦୟଙ୍ଗମ କରିବା ଉଚିତ ଯେ ଦେଶର ଦୁର୍ଦ୍ଦିନର ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ଏହାର କର୍ତ୍ତବ୍ୟ ଓ ଦାୟିତ୍ୱ ବହୁଗୁଣିତ ହୋଇଉଠିଛି । କାରଣ ଏହା ଗରିବର ଏକମାତ୍ର ବନ୍ଧୁ ଓ ଦେଶର ଗରିବି ହଟିବାର ଚାବିକାଠିଟି ଏହାର ହାତ ମୁଠା ଭିତରେ ହିଁ ରହିଛି ।

୧୯୦୪ ମସିହାରେ ସେ କାଳର ନ'ଙ୍କ ଦୁର୍ଭିକ୍ଷର 'ହା ଅନ୍ନ'ର ମଶାଣୀ ଭୂଇଁ ଉପରେ କୋଟି କୋଟି ଛତରଖିଆ ବୁଭୁକ୍ଷୁ ପଲ ଭିତରେ ଜଗୁ ଓ ଉମା ଗୋଷ୍ଠୀ 'ଶାସ୍ତି'ର ନ'ଙ୍କ ବାହୁଡ଼ା କୁଡ଼ କୁଡ଼ ଅଜାତିଆ ସନିଆ, କଇଁ ଆଉ ଜୋହାନ ଚା ଚା ପଲ ତଥା 'ଛ'ମାଣ ଆଠ ଗୁଣ୍ଠ'ର ଭଗିଆ ତନ୍ତୀ ଆଉ ସାରିଆ ତନ୍ତିଆଣୀ ପଲକୁ ଗାଁ ମହାଜନ ଦାଉରୁ ତା'ର ଉଜୁଡ଼ା ସଂସାରକୁ ସୁରକ୍ଷିତ କରିବା ପାଇଁ ବିଂଶ ଶତାବ୍ଦୀର ପ୍ରାରମ୍ଭର ବିଭିନ୍ନ ଅନ୍ଧକାର ଭିତରେ କେତେଜଣ ଦରଦୀ ପ୍ରାଣର ବିଦେଶୀ ପ୍ରଶାସକ, ଏ ଦେଶ ମାଟି ଉପରେ ଜର୍ମାନୀରୁ ଆଣି ଯେଉଁ ସମବାୟ ଆନ୍ଦୋଳନର ବୀଜଟି ବପନ କରି ଯେଉଁ ଆଶାର ଛୋଟ ଦୀପାଳିଟି ଜାଳି ଦେଇଥିଲେ, ତାହା ଆଜି ଶତାବ୍ଦୀ ପରେ ଏକ ସୁବିଶାଳ ବୃକ୍ଷରେ ପରିଣତ ହୋଇ ଶକ୍ତିମାନ ସୂର୍ଯ୍ୟ ପରି ପ୍ରତିଭାତ ହୋଇ ଏ ଦେଶବାସୀଙ୍କୁ ଆଲୋକରେ ଉଦ୍ଭାସିତ କରି ପକାଇଛି ।

ଏଇ ଶତାବ୍ଦୀ ଭିତରେ ସମବାୟ କ୍ଷେତ୍ର, ତା'ର ସେଇ ଚାଷୀ କୁଳକୁ ମହାଜନ ଦାଉରୁ ସୁରକ୍ଷିତ କରିବାର ମୂଳ ଲକ୍ଷ୍ୟକୁ ଅନେକ ପଛରେ ଛାଡ଼ି ଦେଇଆସି, ସମୟର ଚାହିଦା କ୍ରମେ ନିଜକୁ ବହୁଭାବେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ କରି ମାନବ ସମାଜର ଜୀବନ ଧାରଣର ସକଳ ଆବଶ୍ୟକତା କ୍ଷେତ୍ରକୁ ସମ୍ପ୍ରସାରିତ କରିପାରିଛି ।

ଏଇ ଦେଖନ୍ତୁନା ! ରାତି ପାହିଲା । କାଉ ରାବିଲା । ମୁହଁ ଉପରେ ଚେନାଏ ଉଜୁଡ଼ା ହସ ଫୁଟାଇ ଘରଣୀ, ହାତରେ ଚା କପ୍‌ଟି ଧରି ବେଡ଼ରୁମ ଭିତରକୁ ପଶି ଆସିଲେ । ଚା କପ୍‌ଟିର କ୍ଷୀର ଆମ ଓମ୍‌ଫେଡ଼୍‌ର, ଚିନି ଆସିକା ସୁଗାର ମିଲ୍‌ର, ବାଥରୁମ୍‌ର ମୁହଁପୋଛା ଗାମୁଛାଟି ବଡ଼ବାଗ ତନ୍ତୁବାୟ ସମିତିର । ଝିଅ ଘର ଓଳାଉଥିବା ଫୁଲ ଛାଞ୍ଚୁଣୀଟି ଆମ ଟିକାବାଲୀ ମାଳ ବାଣିଜ୍ୟ ସମିତିର । ବ୍ରେକ୍‌ଫାଷ୍ଟ ପ୍ଲେଟ୍‌ର ଆମଲେଟ୍‌ଟି ଆନ୍ଧ୍ରର ପୁଡ଼ିଓ୍ୱାଡ଼ା କୁକୁଡ଼ା ପାଳନ ସମିତିର । ଲଞ୍ଚ ପାଇଁ ରନ୍ଧା ଭାତ, ଡାଲି, ତରକାରୀ ସବୁର ଆବଶ୍ୟକୀୟ ଦ୍ରବ୍ୟ ଆମ ଗାଁ ଚାଷୀ ରାମଦାସ, ସେବା ସମିତିର ଋଣ, ସାର ତଥା ବିହନରେ ଉତ୍ପାଦନ କରିଛି । ତେଲ, ଅଏଲ ଓଡ଼ିଶାର । ଲୁଣ, ହୁମା ଲବଣ ସମିତିର । ଯେଉଁ ମୋଟର ସାଇକେଲ ଅଫିସ୍ ଯିବା ପାଇଁ ବାହାର କଲେ ସେଇଟି ଚାରିମାସ ତଳେ ଅର୍ବାନ ବ୍ୟାଙ୍କ୍ ଋଣରେ କିଣାଯାଇଛି । ଅଫିସ୍ ଯିବାବେଳକୁ ଯେଉଁ ବାରଣ୍ଡାରେ ଘରଣୀ ହସି ହସି ବିଦାୟ ଦେଲେ, ସେଇ ଘରଟି ଗୃହ ନିର୍ମାଣ ସମିତି ଋଣରେ ନିର୍ମିତ । ଏମିତି ହିସାବ କରି ବସିଲେ ଆମ ଜାଣତ ବା ଅଜାଣତରେ ଆମ ଜୀବନର ପ୍ରାୟ ସକଳ କ୍ଷେତ୍ରରେ ଆମେ ଏହି ଆନ୍ଦୋଳନ ସହିତ ଓତଃପ୍ରୋତଃ ଭାବରେ ସଂଶ୍ଳିଷ୍ଟ ହୋଇପଡ଼ିଛୁ । ହେଲେ ଆମକୁ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ ଯେ ଏହା ବିଗତ ଶହେ ବର୍ଷ ଭିତରେ ନିଜର ଲକ୍ଷ୍ୟ ସାଧନରେ ଆବଶ୍ୟକୀୟ ସଫଳତା ହାସଲ କରିବାକୁ ସକ୍ଷମ ହୋଇ ପାରିନାହିଁ । ତଥାପି ଏକଥା ମାନିବାକୁ ହେବ ଯେ ଏହା ଆମ ଗାଁ ଗହଳରେ ଏକ ସୁଦୃଢ଼ ଭିତ୍ତିଭୂମି ସ୍ଥାପନ କରିବାରେ ଅନେକଟା ସଫଳ ହୋଇଥିଲେ ମଧ୍ୟ ନିଜର ଲକ୍ଷ୍ୟ ସାଧନରେ ବିଫଳ ହୋଇଛି । ତେବେ ବରଫ ମୁଣ୍ଡା ଫାଟିଛି । ଆବଶ୍ୟକୀୟ ପରିବେଶ ମିଳିଲେ ଏହା ତରଳି ବ୍ୟବହାର ଯୋଗ୍ୟ ହେବା ପାଇଁ ଅଧିକ ସମୟ ନଲାଗି ପାରେ ।

ଆଜକୁ ଅର୍ଦ୍ଧ-ଶତାବ୍ଦୀ ତଳେ ୧୯୫୪ରେ ଗୋରେୟାରଙ୍କର (ଗ୍ରାମ୍ୟ ଋଣ ତଦନ୍ତ କମିଟି) ପ୍ରଦତ୍ତ ମନ୍ତବ୍ୟ ଆଜି ବି ଏହି କ୍ଷେତ୍ର ପାଇଁ ଅତୁଟ ଭାବେ ପ୍ରଯୁଜ୍ୟ ରହିଛି । ସେ କହିଥିଲେ - 'ଅତୀତରେ ସମବାୟ ବିଫଳ ହୋଇଛି ସତ, ହେଲେ ଭାରତୀୟ ପଲ୍ଲୀର ଆର୍ଥିକ ବିକାଶ ସାଧନ ପାଇଁ ଏହାକୁ ସଫଳ କରିବା ଭିନ୍ନ, ଆମ ହାତରେ ଅନ୍ୟ ବିକଳ୍ପ ପନ୍ଥା ନାହିଁ ।

ଏମିତିରେ ସମବାୟ କ୍ଷେତ୍ରକୁ ଏକ ଶତାବ୍ଦୀର ଆନ୍ଦୋଳନ ବୋଲି (୧୯୦୪ରୁ ୨୦୦୪) ହିସାବ କଲେ ମଧ୍ୟ ବାସ୍ତବରେ ପ୍ରଥମ

ଅର୍ଦ୍ଧ-ଶତାବ୍ଦୀଟି ଅର୍ଥାତ୍ ସ୍ୱାଧୀନତା ପ୍ରାପ୍ତି ପୂର୍ବ ସମୟରେ, ଏକ ବିଦେଶୀ ପୋଲିସ ଶାସନ ନୀତି ଅନୁସରଣ କରୁଥିବା ପ୍ରଶାସନ ଅମଳରେ, ଏହା କେବଳ କୃଷି ଋଣଭିତ୍ତିକ କାର୍ଯ୍ୟକ୍ରମ ଭିତରେ ସୀମିତ ରହିଥିଲା । ତାହା ପୁଣି ଆବଶ୍ୟକତାଠାରୁ ଯଥେଷ୍ଟ ଊଣା ପରିମାଣରେ । ତେଣୁ ଏହି କ୍ଷେତ୍ରରେ ଯାହାକିଛି ହୋଇଛି ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କାଳରେ ଅର୍ଥାତ୍ ୧୯୫୫ର ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରୁ ଅର୍ଥାତ୍ ବିଗତ ଅର୍ଦ୍ଧ-ଶତାବ୍ଦୀ ସମୟ ଭିତରେ ।

ସମବାୟ କ୍ଷେତ୍ରର ସୌଭାଗ୍ୟ ଥିଲା ଯେ ସ୍ୱାଧୀନତା ପ୍ରାପ୍ତି ପରେ ଆମ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ନେହେରୁଜୀ ଦେଶର ଆର୍ଥିକ ବିକାଶ ସାଧନ ପାଇଁ ବୃହତ ଶିଳ୍ପ କ୍ଷେତ୍ର ପାଇଁ ରାଷ୍ଟ୍ରାୟତ୍ତ ଉଦ୍ୟୋଗ, ଲଘୁ ଓ ମଧ୍ୟମ ଶିଳ୍ପ କ୍ଷେତ୍ର ପାଇଁ ଘରୋଇ ଉଦ୍ୟୋଗ ତଥା ଗ୍ରାମ୍ୟ ଓ କୃଷି ଶିଳ୍ପ କ୍ଷେତ୍ର ପାଇଁ ସମବାୟ ଉଦ୍ୟୋଗ, ଲଘୁ ଓ ମଧ୍ୟମ ଶିଳ୍ପ କ୍ଷେତ୍ର ପାଇଁ ସମବାୟ ଉଦ୍ୟୋଗ ଉପରେ ଅଖଣ୍ଡ ଆସ୍ଥା ସ୍ଥାପନ କରିଥିଲେ । ରାଜା ମତେ ରାଜ୍ୟ ଚାଲିଥାଏ । ଫଳରେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରୁ ଷଷ୍ଠ ଯୋଜନା ଅର୍ଥାତ୍ ବିଗତ ଶତାବ୍ଦୀର ୮୦ ଦଶକ ପର୍ଯ୍ୟନ୍ତ ସମବାୟ କ୍ଷେତ୍ର ପ୍ରଭୂତ ପରିମାଣର ସରକାରୀ ଆର୍ଥିକ, ବୈଷୟିକ ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ସହାୟତାମାନ ହାସଲ କରି ଅଭୂତ ପୂର୍ବ ଭାବେ ବିକଶିତ ହୋଇଥିଲା । ଏପରିକି ଆମ ସୁଦୂର ଗାଁ ଗହଳରେ ଚିନିକଳ, ସୂତାକଳ, ତେଲକଳ, ଚାଉଳ କଳ, ଶୀତଳ ଭଣ୍ଡାର ତଥା ଦୁଗ୍ଧ ଶୀତଳୀକରଣ କେନ୍ଦ୍ରମାନ ସମବାୟ ଭିତ୍ତିରେ ପ୍ରତିଷ୍ଠିତ ହୋଇ ସେସବୁ ସ୍ଥାନରେ କଳ୍ପନା ବହିର୍ଭୂତ ଭାବେ ନିଯୁକ୍ତି ସୁଯୋଗମାନ ସୃଷ୍ଟି ହୋଇପାରିଥିଲା । ସେତେବେଳେ ଏସବୁ ଦେଖିଲେ ମନେ ହେଉଥିଲା, ହୁଏତ ଶତାବ୍ଦୀର ଅନ୍ତିମ ଚରଣରେ ଏ ଦେଶର ଗ୍ରାମୀଣ କ୍ଷେତ୍ର ସମବାୟ କୃଷି ଶିଳ୍ପ କ୍ଷେତ୍ରରେ ବିପ୍ଳବ ସୃଷ୍ଟି କରି ଉଭୟ ପ୍ରତିଷ୍ଠିତ ରାଷ୍ଟ୍ରାୟତ୍ତ ତଥା ଘରୋଇ ଉଦ୍ୟୋଗକୁ ଅନେକ ପଛରେ ପକାଇ ଏକ ନୂତନ ବିକଶିତ ଗ୍ରାମ୍ୟ ଯୁଗ ପ୍ରତିଷ୍ଠା କରିବ ।

ହେଲେ ବିଧିର ବିଡ଼ମ୍ବନା, ନେହରୁଜୀ ଚାଲିଗଲେ । ତାଙ୍କ ପରେ ଯେଉଁମାନେ ଶାସନ କ୍ଷମତାସୀନ ହେଲେ, ସେମାନେ ଦେଶର ସ୍ୱାର୍ଥକୁ ବଳିଦେଇ, ନିଜ ଗାଦୀ ସୁରକ୍ଷା କରିବା ପାଇଁ ଦଳୀୟ ସ୍ୱାର୍ଥକୁ ଯଥେଷ୍ଟ ଅଧିକ ଗୁରୁତ୍ୱ ଦେଲେ । ଗ୍ରାମ୍ୟ ଆର୍ଥିକ ବିକାଶ ପାଇଁ ସେମାନେ ସମବାୟ କ୍ଷେତ୍ରକୁ ମାଧ୍ୟମ ପଦରୁ ବହିଷ୍କାର କରି ପଞ୍ଚାୟତିରାଜକୁ ଅଧିକ ଗୁରୁତ୍ୱ ଦେଇ ଗ୍ରାମ ବିକାଶ କାର୍ଯ୍ୟ ଦଳୀୟ ନେତୃତ୍ୱ ତଥା ଠିକାଦାରମାନଙ୍କ ଜରିଆରେ କରାଇଲେ । ଦୁଇ ଗାଣ୍ଡୁଆ ମାଟି ରାସ୍ତାରେ ପକାଇ ସେମାନେ ୨ ଲକ୍ଷ ଟଙ୍କାର ବିଲ୍ ଦାଖଲ କଲେ । ଏପରିକି ଏହି କ୍ଷେତ୍ରର ଲୋକ ପ୍ରିୟତାର ସୁଯୋଗ ନେଇ ଏହାକୁ ନିର୍ବାଚନ ବୈତରଣୀ ପାର ହେବା ପାଇଁ ଆୟୁଧ ରୂପେ ବ୍ୟବହାର କଲେ । ପ୍ରଥମ ଚୋଟ ପଡ଼ିଲା କୃଷିଋଣ ଛାଡ଼ ପ୍ରକ୍ରିୟାରୁ । ଏବେ ଏହି କ୍ଷେତ୍ରର ଗଣତାନ୍ତ୍ରିକ ପରିଚାଳନା ନୀତିକୁ ରଦ୍ଦ କରି ବିଭିନ୍ନ ଆଳରେ ନିଜ ଦଳର ଦ୍ୱିତୀୟ ଧାଡ଼ି ନେତୃତ୍ୱକୁ ଥଇଥାନ କରିବା ପାଇଁ ସମିତିମାନଙ୍କର ପରିଚାଳନା ଦାୟିତ୍ୱ ଦେଇ ଆଉ ଯାହା କିଛି ରହିଯାଇଛି ସେତିକି ଚଳୁ କରିବାରେ ଲାଗି ପଡ଼ିଛନ୍ତି ।

ସମବାୟ କ୍ଷେତ୍ରକୁ ସରକାରୀ ସହାୟତା ବଞ୍ଚିତ କରିବାର କାରଣ ସ୍ୱରୂପ ଯୁକ୍ତ କରାଯାଇଛି ଯେ ଏମାନେ ଏତେ ପରିମାଣର ଆର୍ଥିକ ସହାୟତା ପାଇ ମଧ୍ୟ ଆତ୍ମ ନିର୍ଭରଶୀଳ ହୋଇ ପାରୁନାହାନ୍ତି । ସେମାନେ ଜାଣତ ବା ଅଜାଣତରେ ଭୁଲି ଯାଉଛନ୍ତି ଯେ ସମବାୟ ଉଦ୍ୟୋଗ ଗରିବ ଚାଷୀ ମୂଲିଆର ମିଳିତ ଅନୁଷ୍ଠାନ । ଏହା ଦାରିଦ୍ର୍ୟ ସୀମାରେଖା ତଳ ଗୋଷ୍ଠୀର ଆର୍ଥିକ ବିକାଶ ପାଇଁ ଉଦ୍ଦିଷ୍ଟ । ଏହା ଏକ ବ୍ୟବସାୟିକ ଅନୁଷ୍ଠାନ ହୋଇଥିଲେ ମଧ୍ୟ ଏହାର ଲକ୍ଷ୍ୟ ଲାଭ କରିବା ନହୋଇ ସାମାଜିକ ନ୍ୟାୟ ପ୍ରତିଷ୍ଠା ନିମନ୍ତେ ଉଦ୍ଦିଷ୍ଟ । ଲକ୍ଷେ ଭିକାରୀଙ୍କ ଭିକ୍ଷା ଥାଳର ସବୁତକ ଚାଉଳକୁ ଏକତ୍ର କରି ରାନ୍ଧି ଦେଲେ ଶହେ ଜଣ କଣ ପେଟପୂରା ଖାଇବାକୁ ପାଇବେ ? କୋଟି କୋଟି ଶୂନ୍ୟକୁ ମିଶାଇଲେ ମିଶ୍ର ଫଳ କ'ଣ କେବେ ଏକ ହେବ । ଏହି ପ୍ରଶାସକମାନେ ସମବାୟ କଖାରୁ ଲଟାକୁ ଆମ୍ବ ଗଛ ପରି ସଳଖି ଛିଡ଼ା ହେବାକୁ ଚାହିଁଲେ । ଏଠାରେ ଏକ ବାସ୍ତବ ଉଦାହରଣ ନିଆଯାଉ । ମୋ ଗାଁ ସେବା ସମିତିର ସଭ୍ୟ ସଂଖ୍ୟା ୨୦୦୦ ଜଣକୁ ଟ.୫/- କରି ଅଂଶଧନ କିଣିଛନ୍ତି । ମୋଟ ଆଦାୟ ଟ.୧୦,୦୦୦/- । ଜଣକୁ ଟ.୨୦୦୦ ଋଣ ଦେଲେ ସମିତିର ବ୍ୟବସାୟ ୪୦ ଲକ୍ଷ ଟଙ୍କା ହେବ । ଟ.୧୦,୦୦୦ ପୁଞ୍ଜିରେ ୪୦ ଲକ୍ଷ ଟଙ୍କାର ବ୍ୟବସାୟ କ'ଣ ସମ୍ଭବ ? ବାହାରୁ ସହାୟତା ବିନା ଏହି ସମିତିଟି ଚଳିବ କିପରି ? ପରିଣତି, ବିନା ରଞ୍ଜାରେ କଳରା ଭାଡ଼ି ଅବସ୍ଥା ଯାହା ହୁଏ, ତାହା ହିଁ ହୋଇଛି । ଏହି ସମବାୟ କ୍ଷେତ୍ରରେ ପ୍ରତିଦିନ ଖବର କାଗଜରେ ଦେଖିବାକୁ ମିଳୁଛି ଚାଷୀର କୋଟି କୋଟି ଟଙ୍କା ମୂଲ୍ୟର ଚିନିକଳ, ସୂତାକଳ ଇତ୍ୟାଦି ଶାଗମାଛ ମୂଲ୍ୟରେ ସରକାର ଘରୋଇସ୍ତର ହାତକୁ ଟେକି ଦେଉଛନ୍ତି । ଲୋକମାନେ ଆନ୍ଦୋଳନ କଲେ କିଛି ଦିନ ଗଡ଼ି ଯାଉଛି । କ୍ରେତା ମଧ୍ୟ ମାରି ପିଟି ଖାଇ ଖସି ପଳାଉଛନ୍ତି । ସରକାର ମୋକଦ୍ଦମା କରି ଓକିଲ ପୋଷୁଛନ୍ତି । ସବୁଠୁଁ ଦୁର୍ଭାଗ୍ୟ, ବିଚରା ଚାଷୀ କୁଳର । ଯେଉଁ ରାମଦାସ କାଲି ପର୍ଯ୍ୟନ୍ତ ଚିନିକଳର ସଭାପତି ଥିଲେ, ଆଜି ସେ ସେଇ ଚିନିକଳର ମୂଲିଆ ପାଲଟିଛନ୍ତି ।

କୁଆଡ଼େ ଗଲେ ଅସୁମାରୀ ବାଣିଜ୍ୟ ସମିତି, ଖାଉଟୀ ଭଣ୍ଡାର, ଆଉ ବାବା ସାହେବଙ୍କର ଆଦିବାସୀମାନଙ୍କର ସାମୂହିକ କଲ୍ୟାଣ ପାଇଁ ଗଠିତ ଲ୍ୟାମ୍ପ ସମିତି ? ସବୁ ଇତିହାସ ଭିତରେ ହଜି ଗଲେଣି । ବିକାଶଠାରୁ ପତନ ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଥାଏ । ଏକମାତ୍ର ଯତ୍ ସାମାନ୍ୟ ସରକାରୀ ସହାୟତା ପ୍ରାପ୍ତ ଚାଲୁ ରହିଥିବା ସେବା ସମିତିର ସ୍ଥିତି ମଧ୍ୟ ନ କହିଲେ ଭଲ । ତା'ର ସୁବୃହତ୍ ଗୋଦାମ ଘର ପାରା ଚେମେଣୀଙ୍କର ଆଖେଡ଼ା ଘର, ଆଉ ଖାଉଟୀ ଭଣ୍ଡାର ଶାଖା ଆଜି ଗାଁ ଠାକୁର ଷଣ୍ଢର ଗୁହାଳ ଘର ପାଲଟିଛି ।

ପରିଣତି, ଗାଁ ଗହଳରେ ଅପର୍ଯ୍ୟାପ୍ତ ଗରିବି । ସାରା ଭାରତରେ ୨୫% ଗରିବି ଥିବାବେଳେ ଓଡ଼ିଶାରେ ଏହା ୪୭% ପାଖାପାଖି । ସରକାର ସମିତିକୁ ଆର୍ଥିକ ସହାୟତା ବାଦ୍ କରି ପଞ୍ଚାୟତିରାଜ ଜରିଆରେ ଗାଁ ଗହଳକୁ ଯେତେ ଟଙ୍କା ଠେଲିଲେ ମଧ ସେ କ୍ଷେତ୍ରରୁ ଗରିବି ହଟିବା ପରିବର୍ତ୍ତେ ଅପରିସୀମ ଭାବେ ବୃଦ୍ଧି ପାଇବାର ଗୋଲକ ଧନ୍ଦା ସୃଷ୍ଟି ହୋଇ ଚାଲିଛି । ଏକମାତ୍ର ଧନ୍ଦା ଧାନଚାଷ, ତାହା ମଧ ଅଭାବୀ ବିକ୍ରି ନେଇ ବନ୍ଦ ହେବାକୁ ବସିଲାଣି । ଗାଁ ଗହଳର ଲକ୍ଷ ଲକ୍ଷ ସମ୍ପୂର୍ଣ୍ଣ, ଅର୍ଦ୍ଧ ତଥା ଗୁପ୍ତ ବେକାର ଆଜି ନିଯୁକ୍ତି ସୁଯୋଗକୁ ଅଭାବରୁ ରୋଜଗାର ହୀନ ଭାବେ ସହର ବଜାର ଧାଇଁ ପେଟ ପାଳିବାକୁ ବାର ଦୁଆର ଶୁଣ୍ଢି ପିଣ୍ଡା ହେଉଛନ୍ତି ।

ଏହି ଅହେତୁକ ପରିସ୍ଥିତି ଉପୁଜିବାର ଏକମାତ୍ର କାରଣ ନିଯୁକ୍ତି ସୁଯୋଗର ଅଭାବ । ଏବେ ଗାଁ ଗହଳରେ ବେକାରୀ ସମସ୍ୟା କିପରି ବିକଟ ରୂପ ଧାରଣ କରିଛି, ସମାଜ କିପରି ରସାତଳଗାମୀ ହେଲାଣି ତା'ର ଏକ ନିଚ୍ଛକ ବାସ୍ତବ ଚିତ୍ର ରଖୁଛି ।

ଆମ ଗାଁ ଯୁକ୍ତ୨ କଳା ମହାବିଦ୍ୟାଳୟରେ କଲେଜର ସେକ୍ରେଟାରୀ ମୁଁ । ୧୯୯୩ରେ ଏହି କଲେଜଟି ୧୨୮ଟି ସିଟ୍ ନେଇ ପ୍ରତିଷ୍ଠିତ ହୋଇଥିଲା । ୧୯୯୮ ବେଳକୁ ସିଟ୍ ନିଅଣ୍ଟ ଧରିବାରୁ ଆମେ ଆଉ ୬୪ଟି ସିଟ୍ ବୃଦ୍ଧି ପାଇଁ ଆବେଦନ କରିଥିଲୁ । ହେଲେ ୧୯୯୯ର ମହାବାତ୍ୟା ପରେ ଗତ ପାଞ୍ଚବର୍ଷ ହେଲା କଲେଜ ପାଇଁ ଶହେଟି ପିଲା ମଧ ଜୁଟୁ ନାହାଁନ୍ତି । ଏହାର କାରଣ କ'ଣ ବୋଲି ଜଣେ ନେତାକାଟିଆ ଯୁବକକୁ ପଚାରିଲି ।

ସେ ଉତ୍ତର ଦେଲା - ପାଠପଢ଼ା କ'ଣ ପାଇଁ ? ଏହାର ଯୋଡ଼ିଏ କାରଣ ରହିଛି ।

୧. ଭଲ ଚାକିରି ଜୁଟିବ

୨. ଭଲ ଦେବା ନେବା ପରି ଶ୍ୱଶୁର ଘରର ପାଠୋଇ ଝିଅ ଜୁଟିବ । ଏବେ ପ୍ରଥମଟିତ ସାତ ସପନ । ଆଉ ଦ୍ୱିତୀୟଟି ଏବେ ମାଟ୍ରିକ୍ ପାଶ୍ ପୁଅକୁତ ଗ୍ରାଜୁଏଟ ଝିଅ ଅଭାବ ନାହାଁନ୍ତି ।

ଚାକିରିତ ନାହିଁ । ଲାଭ ବେପାରଟିଏ କରିବାକୁ ପୁଞ୍ଜିବି ନାହିଁ । ଶେଷରେ ପାନ ଦୋକାନଟିଏ ଖୋଲିବାକୁ ପଡ଼ିବ । ଆଉ ପାନ ଦୋକାନ ଖୋଲିବା ପାଇଁ ମାଟ୍ରିକ୍ ପାଶ୍ ଯଥେଷ୍ଟ । ଆଇ.ଏ., ବି.ଏ. ପାଠପଢ଼ି ଅଯଥାରେ ଖର୍ଚ୍ଚାନ୍ତ ଓ ସମୟ ନଷ୍ଟ କରିବାକୁ କେହି ରାଜି ନୁହଁନ୍ତି । ବାହାହୋଇ ପଡ଼ି ୪୦/୫୦ ହଜାର ଆଣି ନିଜ ଦାଣ୍ଡ ଘରେ ପାନ ଦୋକାନଟିଏ ଖୋଲିବା କଥା । ହେଲେ ଘରେ ଘରେ ତ ପାନ ଦୋକାନ । ଗରାଖ କାହାନ୍ତି । ସବୁ ଯୋଗୀ ଥାଳ ଧରିବେତ ଭିକ ଦେବ କିଏ ? ଗରାଖ ଅଭାବରୁ ବର୍ଷେ ଦି ବର୍ଷ ଭିତରେ ଦୋକାନଟି ତୁଟି ଯିବ । ତା'ପରେ ବାପା ବୋଉ, ବୋହୂ ଉପରେ ଜୁଲମ ଆରମ୍ଭ କରିଦେବେ । ବାପଘରୁ ପୁନଃ ଯୌତୁକ ଦାବି ନ ଆଣିଲେ, ଡାଳ କିରାସିନି ମାର ଦିଆସିଲି ।

ଗାଁ ଗହଳରେ ବୋହୂ ପୋଡ଼ିତ ଏବେ ନିତିଦିନିଆ ଦିହ ଘଷା କଥା । ଗାଁ ଗହଳରେ ଆଜି ଯୁବକ ଉଚ୍ଚଶିକ୍ଷା ପାଇଁ ବିମୁଖ । ଯୁବତୀମାନେ ସମ୍ପୂର୍ଣ୍ଣ ଅସୁରକ୍ଷିତ । ସମାଜ ଅନ୍ଧକାର ଗହ୍ୱର ଭିତରେ ପ୍ରବେଶ ଅଭିମୁଖୀ ।

ଏହାର ଏକମାତ୍ର ସମାଧାନ ଗାଁ ଗହଳରେ ପ୍ରଭୂତ ନିଯୁକ୍ତି ସୁଯୋଗ ସୃଷ୍ଟି । ଏହା କାଁ ଭାଁ ଅଙ୍ଗନବାଡ଼ି ବା ସର୍ବଶିକ୍ଷା ଯୋଜନାରେ ଶିକ୍ଷକ ନିଯୁକ୍ତି ଜରିଆରେ ନୁହେଁ, ଏହି ନିଯୁକ୍ତି ବ୍ୟାପକ ତଥା ଉତ୍ପାଦନ ଭିତ୍ତିକ ହେବା ଦରକାର ।

ପ୍ରତି ଗ୍ରାମ୍ୟ ସ୍ତରରେ ଆତ୍ମନିଯୁକ୍ତି ସମିତିମାନ ସଂଗଠିତ କରାଯାଇ ପ୍ରତି ଯୁବକ ଯୁବତୀଙ୍କୁ ଏହାର ସଭ୍ୟ ଶ୍ରେଣୀଭୁକ୍ତ କରାଇ ସେମାନଙ୍କୁ କାର୍ଯ୍ୟକ୍ଷମ କରାଯିବା ପାଇଁ ସମିତି ଆବଶ୍ୟକୀୟ ଯନ୍ତ୍ରପାତି, କଞ୍ଚାମାଲ, ପୁଞ୍ଜି ଯୋଗାଣ ସଂଗେସଂଗେ ଆବଶ୍ୟକୀୟ ତାଲିମର ବ୍ୟବସ୍ଥା କରନ୍ତୁ । ତାଙ୍କ ଉତ୍ପାଦିତ ଦ୍ରବ୍ୟର ବିକ୍ରୟ ଦାୟିତ୍ୱ ସମିତିର । ଅଭାବୀ ଧାନ ବିକ୍ରୀ ପରିସ୍ଥିତି ନଉପୁଜୁ । ଏହି ବିକ୍ରିରେ ଯେଉଁ କ୍ଷତି ହେବ ତାହା ସରକାର ଭରଣା କରନ୍ତୁ । ୟୁ.ପି.ଏ. ସରକାରତ ପ୍ରତି ପରିବାରର ଯୁବକ ଯୁବତୀଙ୍କୁ ବର୍ଷରେ ୧୦୦ ଦିନ ନିଯୁକ୍ତି ଦେବା ପାଇଁ ପ୍ରତିଶ୍ରୁତିବଦ୍ଧ ଓ ଏବେତ ଗ୍ରାମାଞ୍ଚଳ ଋଣକୁ ବର୍ଷକେ ୩୦% ବୃଦ୍ଧି କରିବାର ଯୋଜନା କରିଛନ୍ତି । ତେଣୁ ଏଥିପାଇଁ ଅର୍ଥର ଅଭାବ ହେବ ନାହିଁ ।

ଆମ ରାଜ୍ୟର ସ୍ଥିତି ସବୁଠୁଁ ଅଲଗା, କାରଣ ଦେଶର ଗରିବି ୨୪% ଥିବାବେଳେ ଆମର ୪୭% । ଆଦିବାସୀ ଅଞ୍ଚଳରେ ଏହା ହୁଏତ ୭୦% ପାଖାପାଖି ।

ଏଥିପାଇଁ ଆମ ରାଜ୍ୟର ସମବାୟ କ୍ଷେତ୍ରର ଦାୟିତ୍ୱ ଅପରିସୀମ । ଏଣୁ ସମବାୟ ନେତୃତ୍ୱ ଯଥା- ଯୋଗେଶ ବାବୁ, ଯଜ୍ଞେଶ୍ୱର ବାବୁ, ରାଜା ରାମ ବାବୁ ଓ ଅନ୍ୟମାନେ ନେତୃତ୍ୱ ନିଅନ୍ତୁ । ରାଜ୍ୟ ସରକାର ମଧ ଚିଫ୍ ସେକ୍ରେଟାରୀଙ୍କ କର୍ତ୍ତୃତ୍ୱରେ ଏକ ବିଶେଷଜ୍ଞ କମିଟି ବସେଇ ଏହି ଯୋଜନା କିପରି କାର୍ଯ୍ୟକାରୀ କରାଯିବ ତାହାର ଆକଳନ କରନ୍ତୁ । ସରକାରଙ୍କ ତରଫରୁ ଏକ ଯୋଜନା କେନ୍ଦ୍ର ସରକାରଙ୍କ ପାଖରେ ଦାଖଲ କରାଯାଇ ମଞ୍ଜୁରୀ ହାସଲ କରାଯାଉ ।

ଶତବାର୍ଷିକୀ ଉତ୍ସବ ବାସ୍ତବରେ ଗରିବି ହଟିବା ପାଇଁ ଏକ ଯୁଗାନ୍ତକାରୀ ଆହ୍ୱାନ ହେଉ ।

- - - -

# ଏକବିଂଶ ଶତାବ୍ଦୀରେ ସମବାୟ ଆନ୍ଦୋଳନର ପ୍ରାସଙ୍ଗିକତା

ତୁଷାରକାନ୍ତି ପଣ୍ଡା

**ବିଂ**ଶ ଶତାବ୍ଦୀର ପ୍ରାରମ୍ଭରେ ସମବାୟ ଆନ୍ଦୋଳନର ପ୍ରବର୍ତ୍ତନ ଆମ ଦେଶର ତତ୍‌କାଳୀନ ଗ୍ରାମ୍ୟଭିତ୍ତିକ ଅର୍ଥନୀତି ନିମନ୍ତେ ଏକ ଅପରିହାର୍ଯ୍ୟ ଆବଶ୍ୟକତା ଥିଲା । ଦରିଦ୍ର କୃଷକର ଋଣ ଆବଶ୍ୟକତା ପୂରଣ କରିବା ପାଇଁ ଆନୁଷ୍ଠାନିକ ବ୍ୟବସ୍ଥା ନଥିବା ଥିଲା ସଂପୂର୍ଣ୍ଣ ସ୍ୱାଭାବିକ । ଶିଳ୍ପ ବିପ୍ଳବ ସାଂଗରେ ତାଳ ଦେଇ ଗଢ଼ି ଉଠିଥିବା ଅର୍ଥନୈତିକ ଅନୁଷ୍ଠାନମାନେ କୃଷିଜୀବୀମାନଙ୍କର ଋଣ ଗ୍ରହଣ କରି ପରିଶୋଧ କରିବାର କ୍ଷମତା ଉପରେ ସଂପୂର୍ଣ୍ଣ ସନ୍ଦିହାନ ଥିଲେ । ଜର୍ମାନୀରେ ଗଢ଼ି ଉଠିଥିବା ସମବାୟ ଆନ୍ଦୋଳନ ପ୍ରାରମ୍ଭିକ ସହଯୋଗ ଭିତ୍ତିରେ ପ୍ରତିଷ୍ଠିତ ହୋଇ ସଭ୍ୟମାନଙ୍କର ଅର୍ଥନୈତିକ ଓ ସାମାଜିକ ଆବଶ୍ୟକତାକୁ ପୂର୍ତ୍ତି କରିବାରେ ସକ୍ଷମ ହୋଇଥିଲା ଏବଂ ସେଇଥିପାଇଁ ତତ୍କାଳୀନ ବ୍ରିଟିଶ ସରକାର ଆମ ଦେଶରେ ପରୀକ୍ଷାମୂଳକ ଭାବରେ ସମବାୟ ଆଇନ ପ୍ରଣୟନ କରି ବିଧିବଦ୍ଧ ଭାବରେ ସମବାୟ ଆନ୍ଦୋଳନର ସୂତ୍ରପାତ କରିଥିଲେ । ଚଳିତବର୍ଷ ଏହି ଆନ୍ଦୋଳନର ଶତବାର୍ଷିକୀ ପାଳନ କରାଯାଉଛି । ଅନେକ ପରୀକ୍ଷା ନିରୀକ୍ଷା ଏବଂ ଘାତ-ପ୍ରତିଘାତ ମଧ୍ୟରେ ଗତିକରି ଏକବିଂଶ ଶତାବ୍ଦୀରେ ପାଦ ଦେଇଥିବା ଏହି ଆନ୍ଦୋଳନର ପ୍ରାସଙ୍ଗିକତା ଉପରେ ଆଲୋକପାତ କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

ଏହା ଅନସ୍ୱୀକାର୍ଯ୍ୟ ଯେ ବିଂଶ ଶତାବ୍ଦୀର ପ୍ରାରମ୍ଭ ଏବଂ ଏକବିଂଶ ଶତାବ୍ଦୀର ପ୍ରଥମ ଦଶକ ଭିତରେ ଉଭୟ ସାମାଜିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ସମଗ୍ର ବିଶ୍ୱରେ ବ୍ୟାପକ ପରିବର୍ତ୍ତନ ଘଟିଛି । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଦୃଶ୍ୟପଟ୍ଟ ଥିଲା ସଂପୂର୍ଣ୍ଣ ଭିନ୍ନ । ଆମ ଦେଶର ପ୍ରାୟ ଛଅ ଲକ୍ଷ ଗ୍ରାମରେ ବସବାସ କରୁଥିବା ଜନସାଧାରଣ ନିମନ୍ତେ ଦୈନନ୍ଦିନ ଜୀବନଯାପନ ଥିଲା ନିହାତି କଷ୍ଟକର ବ୍ୟାପାର । ଗମନାଗମନର କୌଣସି ସୁବିଧା ନଥିଲା । ନଥିଲାକି ମନୁଷ୍ୟର ସର୍ବନିମ୍ନ ଆବଶ୍ୟକତା ପୂର୍ଣ୍ଣ କରିବା ନିମନ୍ତେ ପର୍ଯ୍ୟାପ୍ତ ପରିମାଣରେ ଖାଦ୍ୟ, ବସ୍ତ୍ର ଏବଂ ବାସଗୃହର ବ୍ୟବସ୍ଥା । ଦୈବୀ ଦୁର୍ବିପାକରେ କ୍ଷତିଗ୍ରସ୍ତ ଅଞ୍ଚଳକୁ ବାହାରୁ ସାହାଯ୍ୟ ପଠାଇବାର ବ୍ୟବସ୍ଥା ଥିଲା ସୀମିତ । ଶିକ୍ଷା ଓ ସ୍ୱାସ୍ଥ୍ୟକୁ ଅଗ୍ରାଧିକାର ଦେବାର ପ୍ରଶ୍ନ ଉଠି ନଥିଲା । ଏହି ସାମଗ୍ରୀକ ଦୃଶ୍ୟପଟ୍ଟର ସଂପୂର୍ଣ୍ଣ ପରିବର୍ତ୍ତନ ସମ୍ଭବ ହୋଇପାରିଛି ଗତ ଶହେ ବର୍ଷ ମଧ୍ୟରେ । ଦେଶ ସ୍ୱାଧୀନ ହେବା ପରେ ଗ୍ରାମାଞ୍ଚଳର ଉନ୍ନତି ନିମନ୍ତେ ବିଭିନ୍ନ ପଦକ୍ଷେପ ନିଆଯାଇଛି । ଜନସାଧାରଣଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା ପାଇଁ ସାଂବିଧାନିକ ବ୍ୟବସ୍ଥା କରାଯାଇଅଛି । ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ପ୍ରଭୃତିର ସମସ୍ୟା ଅନେକ ପରିମାଣରେ ଦୂର କରାଯାଇ ପାରିଛି । ସ୍ୱାଧୀନତାର ପ୍ରାକ୍‌କାଳରେ ଖାଦ୍ୟ ପାଇଁ ଆମେରିକା ପ୍ରଭୃତି ଦେଶମାନଙ୍କ ଉପରେ ନିର୍ଭରଶୀଳ ହୋଇ ପଡ଼ିଥିବା ଦେଶ ସବୁଜ ବିପ୍ଳବ ମାଧ୍ୟମରେ କୃଷି ଉତ୍ପାଦନ ଓ ଉତ୍ପାଦକତାକୁ ବହୁ ପରିମାଣରେ ବୃଦ୍ଧି କରି ସଂପୂର୍ଣ୍ଣ ଆତ୍ମନିର୍ଭରଶୀଳ ହୋଇପାରିଛି । ଆଜି ଆମ ଦେଶ ଏସିଆ ମହାଦେଶର ଏକ ପ୍ରମୁଖ ଅର୍ଥନୈତିକ ଶକ୍ତି ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଛି ।

ଏହିସବୁ ଉଲ୍ଲେଖନୀୟ ଅଗ୍ରଗତି ସତ୍ତ୍ୱେ, ଏବେ ବି ଆମ ଦେଶର ପ୍ରାୟ ସତୁରୀ ପ୍ରତିଶତ ଜନସାଧାରଣ କୃଷି ଉପରେ ନିର୍ଭର କରୁଛନ୍ତି । ଯଦିଓ ଦେଶର ସାମଗ୍ରୀକ ଉତ୍ପାଦନରେ କୃଷି ଓ କୃଷିଜାତ ପଦାର୍ଥର ଅଂଶ ବାଇଶି ପ୍ରତିଶତକୁ ଖସି ଆସିଛି । ପ୍ରାୟ ୩୭ ପ୍ରତିଶତ ଜନସାଧାରଣ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି, ଅର୍ଥାତ୍ ସେମାନଙ୍କର ସର୍ବନିମ୍ନ ଆବଶ୍ୟକତା, ଖାଦ୍ୟ, ବସ୍ତ୍ର ଏବଂ ବାସଗୃହର ବ୍ୟବସ୍ଥା ସମ୍ଭବପର ହୋଇପାରିନାହିଁ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରବର୍ତ୍ତିତ ହୋଇଥିବା ଆନୁଷ୍ଠାନିକ କୃଷି ଋଣ ବ୍ୟବସ୍ଥା ଉପରେ ପରୀକ୍ଷା ନିରୀକ୍ଷା କରାଯାଇ ବ୍ୟାଙ୍କ୍ ଜାତୀୟକରଣ, ଗ୍ରାମ୍ୟ ବ୍ୟାଙ୍କ୍‌ର ପ୍ରତିଷ୍ଠା, ଅଗ୍ରଣୀ ବ୍ୟାଙ୍କ୍ ଯୋଜନା, କୃଷି ପାଇଁ ସହଜରେ ପୁନଃ ବିତ୍ତ ଯୋଗାଇବାର ଲକ୍ଷ୍ୟ ନେଇ ଜାତୀୟ କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କ୍‌ର ଗଠନ, ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ଦରିଦ୍ରତମ ଲୋକମାନଙ୍କୁ ଋଣ ଯୋଗାଇବାର ବ୍ୟବସ୍ଥା ସତ୍ତ୍ୱେ, ଏବେ ବି ତିରିଶି ପ୍ରତିଶତ ଜନସାଧାରଣ ଅଣଆନୁଷ୍ଠାନିକ ଅର୍ଥ ବ୍ୟବସ୍ଥା ଉପରେ ନିର୍ଭରଶୀଳ । ସହଜ ଏବଂ ସରଳ ଭାଷାରେ କହିଲେ, ଏବେ ବି ମହାଜନୀ କାରବାର ଚାଲିଛି ଏବଂ ଗ୍ରାମାଞ୍ଚଳର କୃଷକ ପରିବାରଙ୍କୁ ଶୋଷଣ କରାଯାଇଅଛି । ଏତଦ୍‌ବ୍ୟତୀତ ଅର୍ଥନୈତିକ ଅଗ୍ରଗତି ନିର୍ଦ୍ଦିଷ୍ଟ ଅଞ୍ଚଳ, ନିର୍ଦ୍ଦିଷ୍ଟ ଜନସାଧାରଣ ଏବଂ ନିର୍ଦ୍ଦିଷ୍ଟ କ୍ଷେତ୍ର ଭିତରେ ସୀମିତ ରହି ସାମାଜିକ

ଅସନ୍ତୁଳନ ସୃଷ୍ଟି କରିଛି ଏବଂ ଏହି ସମସ୍ୟାର ସମାଧାନ କରିବା ନିମନ୍ତେ କୌଣସି ନିର୍ଦ୍ଦିଷ୍ଟ ଉପାୟ ଖୋଜି ବାହାର କରାଯାଇ ପାରିନାହିଁ ।

ଏହି ପରିପ୍ରେକ୍ଷୀରେ ଯଦି ସମବାୟ ଆନ୍ଦୋଳନର ଅଗ୍ରଗତି ଏବଂ ଆମ ଦେଶର ସାମାଜିକ ଏବଂ ଅର୍ଥନୈତିକ ସ୍ଥିତି ଉପରେ ଏହାର ପ୍ରଭାବକୁ ଆଲୋଚନା, ପର୍ଯ୍ୟାଲୋଚନା କରାଯାଏ, ତେବେ କ୍ରମେ ବିସ୍ତୃତ ହୋଇ ଯାଉଥିବା କେତୋଟି ଦୃଶ୍ୟପଟ୍ଟ ଆମ ସମ୍ମୁଖରେ ପୁନଃ ଉଦ୍‌ଭାସିତ ହୋଇପାରେ । ପ୍ରଥମେ କୃଷି ପାଇଁ ଋଣ ବ୍ୟବସ୍ଥାକୁ ବିଚାର କରାଯାଉ । କୃଷିକୁ ସଂପୂର୍ଣ୍ଣ ବ୍ୟବସାୟିକ କରିବା ଏପର୍ଯ୍ୟନ୍ତ ସମ୍ଭବପର ହୋଇପାରିନାହିଁ । ଅନ୍ୟାନ୍ୟ ଉନ୍ନତ ଦେଶ ପରି କୃଷି କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣି ଆବଶ୍ୟକୀୟ ଭିତ୍ତିଭୂମି ପ୍ରତିଷ୍ଠା କରିବା ସ୍ୱାଧୀନତାର ୫୬ ବର୍ଷ ପରେ ମଧ୍ୟ ସମ୍ଭବପର ହୋଇପାରିନାହିଁ । ପଞ୍ଜାବ, ହରିଆନା, ଆନ୍ଧ୍ରପ୍ରଦେଶ, ତାମିଲନାଡୁ, ମହାରାଷ୍ଟ୍ର, ଗୁଜରାଟ ଏବଂ ପଶ୍ଚିମବଂଗର କେତେକ ଅଞ୍ଚଳକୁ ବାଦ୍ ଦେଲେ ଅନ୍ୟାନ୍ୟ ଅଂଚଳରେ ଆବଶ୍ୟକୀୟ ଜଳସେଚନର ଅଭାବରୁ ଅର୍ଥକରୀ ଫସଲ ଉତ୍ପାଦନ ସମ୍ଭବ ହୋଇପାରୁନାହିଁ । କୃଷି ଏବେ ବି ମୌସୁମୀ ପ୍ରବାହ ଉପରେ ନିର୍ଭରଶୀଳ । ବଢ଼ି ଓ ମରୁଡ଼ିକୁ ନିୟନ୍ତ୍ରଣ କରିବା ପାଇଁ ନିଆଯାଇଥିବା ପଦକ୍ଷେପ ସଂପୂର୍ଣ୍ଣ ଫଳପ୍ରସୂ ହୋଇପାରିନାହିଁ । ତେଣୁ କୃଷି ପାଇଁ ଆବଶ୍ୟକୀୟ ଅର୍ଥ ଯୋଗାଇ ଦେବା ନିମନ୍ତେ କୌଣସି ବ୍ୟବସାୟିକ ବ୍ୟାଙ୍କର ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ନରହିବା ସ୍ୱାଭାବିକ । ସମବାୟ ଅନୁଷ୍ଠାନମାନେ ଏବେ ବି ସମଗ୍ର ଦେଶରେ କୃଷିଋଣ ଆବଶ୍ୟକତାର ୫୭ ପ୍ରତିଶତ ଯୋଗାଉଛନ୍ତି ଏବଂ ଅନ୍ୟାନ୍ୟ ବ୍ୟାଙ୍କମାନଙ୍କୁ କୃଷିଋଣ ଯୋଗାଇବାକୁ ସରକାରଙ୍କୁ ନିର୍ଦ୍ଦେଶ ଦେବାକୁ ପଡୁଛି ।

ଗୁଜରାଟରେ ସୂତ୍ରପାତ ହୋଇ ସମଗ୍ର ଦେଶକୁ ପରିବ୍ୟାପ୍ତ ହୋଇଥିବା ଶ୍ୱେତ ବିପ୍ଳବ କଥା ବିଚାରକୁ ନିଆଗଲେ କେବଳ ସମବାୟ ଆନ୍ଦୋଳନ ହିଁ ଅମୂଲ ଭଳି ଏକ ନାଁ ସୃଷ୍ଟି କରିପାରିଛି ଏବଂ ହଜାର ହଜାର ଚାଷୀଙ୍କ ପାଇଁ ଅନ୍ନ ସଂସ୍ଥାନର ବ୍ୟବସ୍ଥା କରିପାରିଛି । ସେହିପରି ଖାଇବା ତେଲ ଉତ୍ପାଦନରେ ଦେଶକୁ ସଂପୂର୍ଣ୍ଣ ଆତ୍ମନିର୍ଭରଶୀଳ କରିବା ନିମନ୍ତେ ସମବାୟ ଆନ୍ଦୋଳନ ହିଁ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଆଖୁ, କପା, ତୈଳବୀଜ ପ୍ରଭୃତି ଅର୍ଥକରୀ ଫସଲ ଉତ୍ପାଦନରେ ସମବାୟ ଆନ୍ଦୋଳନ ମୁଖ୍ୟ ଭୂମିକା ଗ୍ରହଣ କରିବା ସଂଗେ ସଂଗେ ଚିନିକଳ ଓ ସୂତାକଳ ପ୍ରତିଷ୍ଠା କରାଯାଇ ମହାରାଷ୍ଟ୍ର ଓ ଗୁଜରାଟର ଗ୍ରାମାଞ୍ଚଳରେ ଭିତ୍ତିଭୂମି ପ୍ରତିଷ୍ଠା ସମ୍ଭବ ହୋଇପାରିଛି ।

ଆମ ଦେଶର ଅର୍ଥନୀତିକୁ ପୁଷ୍ଟ କରିବା ନିମନ୍ତେ ସମବାୟ ଆନ୍ଦୋଳନର ଅନସ୍ୱୀକାର୍ଯ୍ୟ ଅବଦାନ ସତ୍ତ୍ୱେ, ବିଂଶ ଶତାବ୍ଦୀର ଶେଷ ଦଶକରୁ ଏହି ଆନ୍ଦୋଳନର ପ୍ରାସଙ୍ଗିକତା ଉପରେ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ମୁକ୍ତ ଏବଂ ବଜାର ଭିତ୍ତିକ ଅର୍ଥନୀତି ପ୍ରବର୍ତ୍ତନ ସହ ଜଗତୀକରଣ ଏହାର ଅନ୍ୟତମ କାରଣ ବୋଲି କୁହାଯାଉଛି । ଆସନ୍ତୁ, ଏହାର ସତ୍ୟାସତ୍ୟ ସମ୍ବନ୍ଧରେ ଆଲୋଚନା କରିବା । ପ୍ରତ୍ୟେକ କ୍ଷେତ୍ରରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ । ସମୟ ସହିତ ତାଳଦେଇ ମନୁଷ୍ୟର ଆବଶ୍ୟକତାରେ ବ୍ୟାପକ ପରିବର୍ତ୍ତନ ଘଟିଛି ଏବଂ ଏହି ପରିବର୍ତ୍ତିତ ଆବଶ୍ୟକତାକୁ ପୂର୍ତ୍ତି କରିବା ନିମନ୍ତେ ବିଶ୍ୱ ଅର୍ଥନୀତିରେ ଆନ୍ଦୋଳନାତ୍ମକ ପରିବର୍ତ୍ତନ ସମ୍ଭବ ହୋଇପାରିଛି । ଉତ୍ପାଦନ, ବିପଣନ ଏପରିକି ଋଣ ପ୍ରଦାନକାରୀ ସଂସ୍ଥାମାନଙ୍କର କାର୍ଯ୍ୟଧାରା ପ୍ରତିଦ୍ୱନ୍ଦିତା ଆଧାରିତ ହେବାରୁ ପ୍ରତ୍ୟେକ କ୍ଷେତ୍ରରେ ଆମୂଳଚୂଳ ସଂସ୍କାରର ଆବଶ୍ୟକତା ସୃଷ୍ଟି ହୋଇଛି । କୌଣସି ଅର୍ଥନୈତିକ କ୍ଷେତ୍ରରେ ଏକଚାଟିଆ କାରବାର ଆଉ ସମ୍ଭବ ହେଉନାହିଁ । ଅର୍ଥନୀତିକୁ ମୁକ୍ତ କରାଯିବା ପରେ ଆମ ଦେଶର ବଜାରରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଅବାଧ ପ୍ରବେଶ ଏହି ପ୍ରତିଦ୍ୱନ୍ଦିତାକୁ ଆହୁରି ତୀବ୍ରତର କରି ଦେଇଛି । ପରିବର୍ତ୍ତିତ ଅର୍ଥନୀତିରେ କେବଳ ସମବାୟ ଅନୁଷ୍ଠାନ ନୁହଁନ୍ତି, ଅନ୍ୟାନ୍ୟ ସମସ୍ତ ଅନୁଷ୍ଠାନ ପ୍ରଭାବିତ ହୋଇଛନ୍ତି । ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହୋଇନପାରି ଅନେକ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଦେବାଳିଆ ହୋଇଯିବାପରେ ସେମାନଙ୍କର ଘରୋଇକରଣ କରାଯାଉଛି । ସେହିପରି ବ୍ୟାଙ୍କିଙ୍ଗ୍ ଶିଳ୍ପ ଏହି ବଜାରଭିତ୍ତିକ ଅର୍ଥନୀତି ପ୍ରଭାବରୁ ମୁକ୍ତ ରହିପାରି ନାହିଁ । କେନ୍ଦ୍ର ସରକାରଙ୍କ ନିଜସ୍ୱ ସଂସ୍ଥା ଜାତୀୟକରଣ ଏବଂ ଗ୍ରାମ୍ୟ ବ୍ୟାଙ୍କଗୁଡ଼ିକୁ ସରକାର ପ୍ରାୟ ୨୭,୪୦୦ କୋଟି ଟଙ୍କା ସାହାଯ୍ୟ ଆକାରରେ ଯୋଗାଇ ଦେଇ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହେବାପାଇଁ ଦୃଢ଼ କରିବାକୁ ପଦକ୍ଷେପ ନେଇଛନ୍ତି । ଉତ୍ପାଦନ ଓ ବିପଣନ କ୍ଷେତ୍ରରେ ଘଟିଥିବା ପରିବର୍ତ୍ତନକୁ ସମ୍ମୁଖୀନ ହେବାପାଇଁ ଦ୍ରୁତ ସଂସ୍କାର ଏବଂ ପୁନଃ ବିନ୍ୟାସ ଅବ୍ୟାହତ ରହିଅଛି ।

ଏହି ପରିପ୍ରେକ୍ଷୀରେ ସମବାୟ ସଂସ୍ଥାମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପରିବର୍ତ୍ତିତ ପରିସ୍ଥିତିକୁ ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ହେବା ବ୍ୟତୀତ ପ୍ରବଳ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହୋଇ ମୁକ୍ତ ଅର୍ଥନୀତି ନିଜର ପ୍ରାସଙ୍ଗିକତାକୁ ଅକ୍ଷୁଣ୍ଣ ରଖିବା ଆଦୌ ସମ୍ଭବପର ନୁହେଁ । ପରିଚାଳନାଠାରୁ ଆରମ୍ଭ କରି କାର୍ଯ୍ୟଧାରା, ଉତ୍ପାଦନର ମାନ ପ୍ରଭୃତି ଯଦି ବଜାର ଭିତ୍ତିକ କରାଯାଇ ନପାରେ ତେବେ କୌଣସି ଅନୁଷ୍ଠାନ ତିଷ୍ଠି ରହିପାରିବ ନାହିଁ । ପ୍ରତ୍ୟେକ ସମବାୟ ଅନୁଷ୍ଠାନ ପ୍ରାୟତଃ ବ୍ୟବସାୟିକ ଅନୁଷ୍ଠାନ । ଅର୍ଥନୀତିର ବିକାଶ ସହ ବିଭିନ୍ନ କ୍ଷେତ୍ରରେ ଅଧିକାଂଶ ସମବାୟ ଅନୁଷ୍ଠାନମାନଙ୍କର ଏକାଧିପତ୍ୟ ଲୋପ ପାଇସାରିଛି । ଉଦାହରଣ ସ୍ୱରୂପ, କୃଷିଋଣ ଯୋଗାଣ କ୍ଷେତ୍ରରେ ଜାତୀୟକରଣ ବ୍ୟାଙ୍କମାନଙ୍କର ପ୍ରବେଶ ଏବଂ ନିକଟରେ ଘରୋଇ ବ୍ୟାଙ୍କମାନେ କୃଷି ଋଣ ଯୋଗାଣକୁ ଏକ ବ୍ୟବସାୟିକ ସଫଳତାର ସ୍ୱୀକୃତି ଦେବା ଏହି ପ୍ରତିଦ୍ୱନ୍ଦିତାକୁ ତୀବ୍ରତର କରିଛି । ସ୍ୱାଧୀନତାର ପ୍ରାକ୍ କାଳରେ କୃଷି ଋଣ ପାଇଁ ସମବାୟ ଅନୁଷ୍ଠାନମାନଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରୁଥିବା କୃଷିଜୀବୀମାନଙ୍କ ଆଗରେ ଏବେ ବ୍ୟାଙ୍କର

ସଂଖ୍ୟା ଅନେକ । ସମବାୟ ସମିତିର ସଭ୍ୟ ଭାବରେ ଅନୁଷ୍ଠାନ ପ୍ରତି ଆନୁଗତ୍ୟ । ସେମାନେ ଲାଭ କ୍ଷତିର ମାପକରେ ତରଳିବା ଆରମ୍ଭ କରୁଛନ୍ତି ଏବଂ ଏହା ସଂପୂର୍ଣ୍ଣ ସ୍ୱାଭାବିକ । ସେହିପରି ରାସାୟନିକ ସାର ଯୋଗାଣ କ୍ଷେତ୍ରରେ ଘରୋଇ ଉଦ୍ୟୋଗର ପ୍ରବେଶ ଫଳରେ ସମବାୟ ସଂସ୍ଥାମାନଙ୍କର ଗୁରୁତ୍ୱ ହ୍ରାସ ପାଇଛି । ସମାନ ଅବସ୍ଥା ପରିଲକ୍ଷିତ ହୋଇଛି ଚିନିଶିଳ୍ପ, ସୂତାକଳ ଏବଂ ଅନ୍ୟାନ୍ୟ ଉତ୍ପାଦନ ଏବଂ ବିପଣନ କ୍ଷେତ୍ରରେ । ମିଲ୍ ଲୁଗାସହ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହୋଇ ନପାରି ହସ୍ତତନ୍ତ ଶିଳ୍ପ ଆଜି ଏକ ସଂକଟମୟ ପରିସ୍ଥିତିର ସମ୍ମୁଖୀନ ହୋଇଛି । ଦେଶର ପରିବର୍ତ୍ତିତ ଅର୍ଥନୀତିର ସ୍ୱର ସୁସ୍ପଷ୍ଟ । ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହେବା ପାଇଁ ନିଜକୁ ପ୍ରସ୍ତୁତ କରି ନପାରିଲେ ସରକାର ସଂରକ୍ଷଣାତ୍ମକ ଆଶ୍ରୟ ଦେବେ ନାହିଁ । ଏହି ପରିପ୍ରେକ୍ଷୀରେ ଗୁଜରାଟର ସମବାୟ ଦୁଗ୍ଧ ଶିଳ୍ପ ଯଦି ବିଚାରକୁ ନିଆଯାଏ, ଘରୋଇ ଉଦ୍ୟୋଗଠାରୁ ପ୍ରବଳ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହୋଇ ମଧ ନିଜର ସ୍ୱତନ୍ତ୍ର ସ୍ଥିତିକୁ ହରାଇ ବସି ନାହିଁ । ଘରୋଇ କମ୍ପାନୀମାନେ 'ଅମୂଲ' ସହ ପ୍ରତିଦ୍ୱନ୍ଦିତା କରି ବଜାରରେ ନିଜର ଅଂଶବୃଦ୍ଧି କରିବା ପାଇଁ ତତ୍ପର ଅଛନ୍ତି । ଅମୂଲର କାର୍ଯ୍ୟଧାରାରେ ଗୋପନୀୟତା କିଛି ନାହିଁ । ସଭ୍ୟମାନଙ୍କର ଏହି ଅନୁଷ୍ଠାନ ପରିବର୍ତ୍ତିତ ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଠିକ୍ ସମୟରେ ନିଜକୁ ପ୍ରସ୍ତୁତ କରି ପାରିଛି ।

କଥାରେ ଅଛି, ଏ ଦୁନିଆରେ ପ୍ରତ୍ୟେକ ବସ୍ତୁର କ୍ରମ ପରିବର୍ତ୍ତନ ଏକ ଅବଧାରିତ ସତ୍ୟ । ପରିବର୍ତ୍ତିତ ପରିସ୍ଥିତି ସହ ନିଜକୁ ଖାପ ଖୁଆଇବା ନିତାନ୍ତ ଆବଶ୍ୟକ । ଯେକୌଣସି ସମବାୟ ଅନୁଷ୍ଠାନର ପରିଚାଳନା ପ୍ରଣାଳୀକୁ ବିଚାରକୁ ନିଆଗଲେ କେତୋଟି ଅପ୍ରିୟ ସତ୍ୟର ଉଦ୍‌ଘାଟିତ ହେବା ସଂପୂର୍ଣ୍ଣ ସ୍ୱାଭାବିକ । ପରିବର୍ତ୍ତନ ସହ ନିଜକୁ ସାମିଲ କରିବା ପରିବର୍ତ୍ତେ କ୍ରମେ ବଦଳି ଯାଉଥିବା ଧାରାକୁ ପ୍ରତିହତ କରିବାର ବ୍ୟର୍ଥ ପ୍ରୟାସ ପ୍ରତ୍ୟେକ କ୍ଷେତ୍ରରେ ସୁସ୍ପଷ୍ଟ । ପରିଚାଳନା ବିଜ୍ଞାନର ନିଷ୍ଠୁର ଏବଂ ଉଦ୍‌ଘାଟିତ ସତ୍ୟକୁ ଆପଣେଇ ନେଇ ବ୍ୟକ୍ତି ସ୍ୱାର୍ଥକୁ ପ୍ରାଧାନ୍ୟ ଦିଆଯିବା ସମବାୟ ଅନୁଷ୍ଠାନମାନଙ୍କରେ ଆଦୌ ବିରଳ ନୁହେଁ । ଏହି ପରିପ୍ରେକ୍ଷୀରେ ବେଦାନ୍ତ ଓ ଉପନିଷଦ ଉପରେ ଆଧାରିତ ଜଣେ ଦର୍ଶନ ଶାସ୍ତ୍ରବିତ୍ ପାର୍ଥ ସାରଥୀଙ୍କର ମନୁଷ୍ୟର ଶ୍ରେଣୀ ବିଭାଗକୁ ବିଚାରକୁ ନିଆଯାଇପାରେ । ସେ ସମଗ୍ର ମନୁଷ୍ୟ ସମାଜକୁ ପାଞ୍ଚ ଭାଗରେ ବିଭକ୍ତ କରିଛନ୍ତି । ପ୍ରସ୍ତର ମାନବ, ବୃକ୍ଷ ମାନବ, ପଶୁ ମାନବ, ମନୁଷ୍ୟ ମାନବ ଏବଂ ଈଶ୍ୱରୀୟ ମାନବ । ପ୍ରସ୍ତର ମାନବ, ବୃକ୍ଷ ମାନବମାନେ ଆଦୌ ଆତ୍ମସଚେତନ ନୁହନ୍ତି । ସେମାନଙ୍କର ଆଶା ଓ ଆକାଂକ୍ଷା ସୀମିତ । ଅନ୍ୟଦ୍ୱାରା ପ୍ରଭାବିତ ନହେଲେ, ସେମାନେ ନିଜର ଉନ୍ନତି ପାଇଁ ଆଦୌ ଚେଷ୍ଟା କରନ୍ତି ନାହିଁ । ଦିନକର ଖାଦ୍ୟ ସଂଗ୍ରହ ସମ୍ଭବ ହେଲେ, ଭବିଷ୍ୟତ ପାଇଁ ସେମାନେ ଆଦୌ ବ୍ୟସ୍ତ ହୁଅନ୍ତି ନାହିଁ ଏବଂ ସ୍ୱଭାବରେ ନିତାନ୍ତ ସରଳ ହୋଇଥିବାରୁ ଅତି ସହଜରେ ଅନ୍ୟଦ୍ୱାରା ପ୍ରଭାବିତ ହୋଇ ପାରନ୍ତି । ପଶୁ ମାନବ କିନ୍ତୁ ସଂପୂର୍ଣ୍ଣ ଭିନ୍ନ । ସେ ଚିନ୍ତା କରେ, ପାର୍ଥିବ ଜଗତରୁ ସୁଖଶାନ୍ତି ଆହରଣ କରିବା ତା'ର ଜନ୍ମଗତ ଅଧିକାର । ତାହାରି କାମନା ପୂର୍ତ୍ତି ନିମନ୍ତେ ସାମଗ୍ରୀକ ଜାତ ଏବଂ ଜାଗତିକ ବସ୍ତୁମାନଙ୍କର ସୃଷ୍ଟି । ନିଜ ସ୍ୱାର୍ଥ ସାଧନ ହିଁ ପଶୁ ମାନବର ଚରମ ଲକ୍ଷ୍ୟ । ମନୁଷ୍ୟ ମାନବ ନିଜ ସହ ଅନ୍ୟମାନଙ୍କର ବିକାଶ ଉପରେ ଯତ୍ନଶୀଳ ହୁଏ । ମାନବିକ ଗୁଣ ଏବଂ ସଂବେଦନଶୀଳତା ମନୁଷ୍ୟ ମାନବର ପ୍ରଧାନ ଗୁଣ ହୋଇଥିବାରୁ ସ୍ନେହ, ମମତା, ପାରସ୍ପରିକ ସହଯୋଗ ପ୍ରଭୃତିକୁ ସେ ପ୍ରାଧାନ୍ୟ ଦେଇଥାଏ । ଈଶ୍ୱରୀୟ ମାନବମାନେ ଜାଗତିକ ସ୍ୱାର୍ଥର ଉର୍ଦ୍ଧ୍ୱରେ ରହି ସମଗ୍ର ମାନବ ସମାଜର ମଂଗଳ ପାଇଁ ଚେଷ୍ଟା କରିଥାଆନ୍ତି ।

ଆମ ସମାଜରେ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ଅଧିକାଂଶ ମନୁଷ୍ୟକୁ ପ୍ରସ୍ତର ଏବଂ ବୃକ୍ଷ ମାନବ ଶ୍ରେଣୀଭୁକ୍ତ କରାଯାଇପାରେ । ଏମାନେ ନିତାନ୍ତ ସରଳ ବିଶ୍ୱାସୀ ଏବଂ ଅତି ସହଜରେ ଅନ୍ୟମାନଙ୍କ ଦ୍ୱାରା ପ୍ରଭାବିତ ହୋଇପାରନ୍ତି । ସ୍ୱଭାବରେ ଶାନ୍ତ ଓ ଅନେକାଂଶରେ ପ୍ରତିକ୍ରିୟାଶୀଳ ହୋଇ ନଥିବାରୁ ଏମାନେ ନିଜେ ସମାଜର କ୍ଷତି କରନ୍ତି ନାହିଁ । ପଶୁ ମାନବ ଏମାନଙ୍କୁ ସହଜରେ ପ୍ରଭାବିତ କରି ନିଜ ସ୍ୱାର୍ଥ ସାଧନ ନିମନ୍ତେ ପ୍ରସ୍ତର ଓ ବୃକ୍ଷ ମାନବଙ୍କୁ ବ୍ୟବହାର କରେ । ବାହାର ଦୁନିଆଁ ସମ୍ବନ୍ଧରେ ଏମାନେ ସଂପୂର୍ଣ୍ଣ ଅବଗତ ନଥିବାରୁ ପଶୁ ମାନବ ଦ୍ୱାରା ସହଜରେ ଶୋଷିତ ଏବଂ ଉତ୍ପୀଡ଼ିତ ହୋଇଯାଆନ୍ତି । ମନୁଷ୍ୟ ମାନବ ଏହି ଶ୍ରେଣୀର ଲୋକମାନଙ୍କର ଉନ୍ନତି ସାଧନ ନିମନ୍ତେ ବିହିତ ବ୍ୟବସ୍ଥା କରିବାକୁ ଚେଷ୍ଟା କଲାବେଳେ ପଶୁ ମାନବ ନିଜ ସ୍ୱାର୍ଥରେ ବାଧା ଆସୁଥିବାରୁ ବିରୋଧ କରିଥାଏ ଏବଂ ସେଇଥି ପାଇଁ ସାମାଜିକ ତଥା ଅର୍ଥନୈତିକ ଅସନ୍ତୁଳନର ସୂତ୍ରପାତ ହୁଏ ।

ଆମ ସମାଜରେ ମନୁଷ୍ୟ ମାନବର ଛଦ୍ମବେଶରେ ବିଭିନ୍ନ ଦାୟିତ୍ୱରେ ଅବସ୍ଥାପିତ ହୋଇଥିବା ପଶୁ ମାନବମାନଙ୍କର ସଂଖ୍ୟା ଆଦୌ କମ୍ ନୁହେଁ । ନିଜ ସ୍ୱାର୍ଥର ପରିପନ୍ଥୀ ହୋଇଥିବାରୁ ସେମାନେ ପ୍ରଚଳିତ ବ୍ୟବସ୍ଥାର ପରିବର୍ତ୍ତନ କରି ମନୁଷ୍ୟ ମାନବ ହାତରେ ପରିଚାଳନା କ୍ଷମତା ହସ୍ତାନ୍ତର କରିବାକୁ ପ୍ରତ୍ୟେକ କ୍ଷେତ୍ରରେ ବିରୋଧ କରିଥାନ୍ତି । ପାର୍ଥ ସାରଥୀଙ୍କ ବିଚାରଧାରାକୁ ଯଦି ଗ୍ରହଣ କରାଯାଏ, ତେବେ ଆମ ଦେଶର ସମାଜ ଓ ଅର୍ଥନୀତି କ୍ଷେତ୍ରରେ ସୃଷ୍ଟି ହୋଇଥିବା ଅସନ୍ତୁଳନ ଏବଂ ବିଭିନ୍ନ ଲୋକହିତକର କାର୍ଯ୍ୟକ୍ରମର ବିଫଳତାର କାରଣ ସ୍ପଷ୍ଟ ହୋଇଯିବ ।

ସମବାୟ ଆନ୍ଦୋଳନ କେବଳ ଏକ ଅର୍ଥନୈତିକ ଆନ୍ଦୋଳନ ନୁହେଁ, ଏହା ଏକ ବିଚାରଧାରା ଏବଂ ଏକ ସାମାଜିକ ବ୍ୟବସ୍ଥା । ପାରସ୍ପରିକ ସହଯୋଗର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଏହି ଆନ୍ଦୋଳନରେ ସବୁ ଶ୍ରେଣୀର ମନୁଷ୍ୟମାନେ ଅନ୍ତର୍ଭୁକ୍ତ । କେତେକ ସଭ୍ୟଙ୍କର ସମିତିର କାର୍ଯ୍ୟକଳାପରେ କୌଣସି ଆଗ୍ରହ ନଥିଲେ ମଧ

ପରିଚାଳନା ପରିଷଦକୁ ନିର୍ବାଚିତ ହୋଇ ଶାସନ ଡୋରି ନିଜ ହାତରେ ଧରିବାର ଲକ୍ଷ୍ୟ ନେଇ ଅନୁଷ୍ଠାନରେ ପ୍ରବେଶ କରିଯା'ନ୍ତି । ସେମାନେ ଯଦି ମନୁଷ୍ୟ ମାନବ ନହୋଇ ପଶୁ ମାନବ ହୁଅନ୍ତି, ତେବେ ଅନୁଷ୍ଠାନର ଧ୍ୱଂସ ଏବଂ ବିଲୟ ଅନିବାର୍ଯ୍ୟ । ସମବାୟ ଆନ୍ଦୋଳନର ଅନ୍ୟତମ ଲକ୍ଷ୍ୟ ଉପଯୁକ୍ତ ନେତୃତ୍ୱ ସୃଷ୍ଟି କରିବା । ସେହି ନେତୃତ୍ୱ ମନୁଷ୍ୟ ମାନବ ନେବା ଉଚିତ । ସ୍ୱାର୍ଥ ତ୍ୟାଗ ଉପରେ ନେତୃତ୍ୱ ଆଧାରିତ ହେବା ଉଚିତ । ବ୍ୟକ୍ତିଗତ ସ୍ୱାର୍ଥ ଉପରେ ନୁହେଁ । ଏହି ବିଚାରକୁ ଗ୍ରହଣ କରିନେଲେ ସଂପ୍ରତି ବିଭିନ୍ନ ସମବାୟ ଅନୁଷ୍ଠାନମାନଙ୍କରେ ପ୍ରଚଳିତ ନିୟମର ଜଳାଞ୍ଜଳି ଦେଇ ଅନୁଷ୍ଠାନର ପ୍ରତୀକକୁ ଆହ୍ୱାନ କରିବାର କାରଣ ସ୍ପଷ୍ଟ ହୋଇଯିବ ।

ପ୍ରତ୍ୟେକ ଅନୁଷ୍ଠାନ ମନୁଷ୍ୟ ଦ୍ୱାରା ପରିଚାଳିତ । ପରିବର୍ତ୍ତନ ସହ ନିଜକୁ ଖାପଖୁଆଇ ପରିବର୍ତ୍ତିତ ପରିସ୍ଥିତିକୁ ସଫଳ ଭାବରେ ସମ୍ମୁଖୀନ ହେବା ମନୁଷ୍ୟର ଜନ୍ମଗତ ପ୍ରବୃତ୍ତି । ସମବାୟ ଅନୁଷ୍ଠାନଗୁଡ଼ିକ ସାଧାରଣ ଅନୁଷ୍ଠାନମାନଙ୍କଠାରୁ ଭିନ୍ନ ନୁହନ୍ତି । ବ୍ୟକ୍ତିଗତ ସ୍ୱାର୍ଥର ଊର୍ଦ୍ଧ୍ୱରେ ଯଦି ଏହି ଅନୁଷ୍ଠାନମାନଙ୍କର କାର୍ଯ୍ୟଧାରା ଭିନ୍ନ ନହୁଏ, ତେବେ ଓଡ଼ିଶାରେ ସମବାୟ ଆନ୍ଦୋଳନର ପ୍ରବର୍ତ୍ତକ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ଭାଷାରେ -

'ଜାତି ନନ୍ଦିଘୋଷ ଚଳିବ କି ଭାଇ ସ୍ୱାର୍ଥକୁ ସାରଥୀ କଲେ
ଟାଣେ କିରେ ଗାଡ଼ି ଦାନାର ଥୋବଡ଼ା ଘୋଡ଼ା ମୁହେଁ ବନ୍ଧା ଥିଲେ ।'

ଏକବିଂଶ ଶତାବ୍ଦୀରେ ନିଜର ପ୍ରାସଙ୍ଗିକତାକୁ ଅକ୍ଷୁଣ୍ଣ ରଖିବାକୁ ହେଲେ ପ୍ରତ୍ୟେକ ସମବାୟ ଅନୁଷ୍ଠାନକୁ ପରିସ୍ଥିତି ସହ ତାଳ ଦେଇ ନିଜର କାର୍ଯ୍ୟଧାରାକୁ ପରିବର୍ତ୍ତନ କରିବାକୁ ହେବ । ବ୍ୟବସାୟିକ ଆଭିମୁଖ୍ୟକୁ ସ୍ୱୀକାର କରିବାକୁ ହେବ ଏବଂ ପ୍ରତ୍ୟେକ ଅନୁଷ୍ଠାନକୁ ଲାଭଜନକ ସଂସ୍ଥାରେ ପରିଣତ ନକରିପାରିଲେ ମୁକ୍ତ ଏବଂ ବଜାର ଭିତ୍ତିକ ଅର୍ଥନୀତିରୁ ସଂପୂର୍ଣ୍ଣ ଅପସାରିତ ହେବାର ସମ୍ଭାବନାକୁ ଆଦୌ ଏଡ଼ାଇ ଦିଆଯାଇ ନପାରେ । ପ୍ରତ୍ୟେକ କ୍ଷେତ୍ରରେ ସୂଚନା ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ, ପରିଚାଳନାରେ ସଂପୂର୍ଣ୍ଣ ସ୍ୱଚ୍ଛତା, ପରିଚାଳନା ପରିଷଦର ସଭ୍ୟମାନଙ୍କର ଅନୁଷ୍ଠାନ ପ୍ରତି ଆନୁଗତ୍ୟ ଏବଂ ସଂସ୍ଥାରେ ସଭ୍ୟମାନଙ୍କର ସମୟୋପଯୋଗୀ ଅଂଶ ଗ୍ରହଣ ଆଦିର ସର୍ବନିମ୍ନ ପ୍ରୟୋଜନୀୟତାକୁ ଏବଂ ଏହାକୁ ଉପଲବ୍‌ଧ କରାଯିବା ଉଚିତ ।

କ୍ରମେ ପରିଚାଳନା ପରିଷଦକୁ ଉତ୍ତରଦାୟୀ କରାଯିବା ନିମନ୍ତେ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଅଛି । ବିଭିନ୍ନ ଅନୁଷ୍ଠାନରେ ସୃଷ୍ଟି ହେଉଥିବା ଦୁର୍ବଳତା ସଂପର୍କରେ ପୂର୍ବାଭାସ ପାଇବା ସଂଗେସଂଗେ ଠିକ୍ ସମୟରେ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର ଆବଶ୍ୟକତା ସବୁସ୍ତରରେ ଅନୁଭୂତ ହେଲାଣି । ଏହିସବୁ ବ୍ୟବସ୍ଥାର ପ୍ରବର୍ତ୍ତନ ସମବାୟ ଅନୁଷ୍ଠାନମାନଙ୍କରେ କରାଯିବା ଉଚିତ ।

ଆମ ଦେଶର ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ଜନସାଧାରଣ ଏବଂ କୃଷିଜୀବୀମାନଙ୍କର ଆବଶ୍ୟକତା ପୂରଣ ନିମନ୍ତେ ସମବାୟର ବିକଳ୍ପ ଏ ପର୍ଯ୍ୟନ୍ତ ସୃଷ୍ଟି ହୋଇପାରି ନାହିଁ । ମୁକ୍ତ ତଥା ବଜାର ଭିତ୍ତିକ ଅର୍ଥନୀତିରେ ବ୍ୟବସାୟିକ ଅନୁଷ୍ଠାନମାନେ ଏହି ଗୋଷ୍ଠୀ ଅନ୍ତର୍ଭୁକ୍ତ ବ୍ୟକ୍ତିମାନଙ୍କ ପ୍ରତି ଦୃଷ୍ଟି ନଦେବା ସଂପୂର୍ଣ୍ଣ ସ୍ୱାଭାବିକ । ସଂପ୍ରତି ଦେଶରେ ସୃଷ୍ଟି ହେଉଥିବା ସାମାଜିକ ତଥା ଅର୍ଥନୈତିକ ଅସନ୍ତୁଳନକୁ ପ୍ରତିହତ କରି ଏକ ସୁସ୍ଥ ବାତାବାରଣ ସୃଷ୍ଟି କରିବା ନିମନ୍ତେ ସମବାୟ ଆନ୍ଦୋଳନର ଦାୟିତ୍ୱ ଏବଂ ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ ।

---



ସ୍ୱର୍ଗତଃ ପଣ୍ଡିତ ନୀଳକଣ୍ଠ ଦାସଙ୍କ ୩୭ତମ ଶ୍ରାଦ୍ଧ ବାର୍ଷିକ ପାଳନ ଅବସରରେ ବିଧାନସଭା ପରିସର ମଧ୍ୟରେ ଥିବା ତାଙ୍କ ପ୍ରତି ମୂର୍ତ୍ତି ନିକଟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଶ୍ରଦ୍ଧାସୁମନ ଅର୍ପଣ କରୁଛନ୍ତି । ନିକଟରେ ମାନ୍ୟବର ବାଚସ୍ପତି ଶ୍ରୀ ମହେଶ୍ୱର ମହାନ୍ତି ଓ ଆଇନ, ଗ୍ରାମ୍ୟ ଉନ୍ନୟନ ଓ ଶିକ୍ଷା ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଉପସ୍ଥିତ ଅଛନ୍ତି । ୬.୧୧.୦୪

# ଶହେବର୍ଷ ପରେ ଓଡ଼ିଶାର ସମବାୟ

ସରଳା ରାୟ

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଶ୍ରେଣୀ ସଂଘର୍ଷରୁ ଉତ୍ପନ୍ନ ହୋଇଥିଲା ସମବାୟ । ସମାଜର ଦୁର୍ବଳ, ଅବଳା, ନିଷ୍ପେସିତ, ଶୋଷିତ ବର୍ଗର ଦରିଦ୍ରତମ ଲୋକମାନଙ୍କ ନିକଟରେ ବିକାଶର ଫଳ ପହଞ୍ଚାଇ ସେମାନଙ୍କୁ ସମାଜର ମଧ୍ୟମ ଓ ଧନୀ ଶ୍ରେଣୀମାନଙ୍କ ଶୋଷଣରୁ ମୁକ୍ତ କରିବା ପାଇଁ ସମବାୟ ଯୁଗେ ଯୁଗେ ଉଦ୍ୟମ ଜାରି ରଖିଛି । ସମବାୟ ଯେକୌଣସି ଜାତିର ଆର୍ଥିକ ବିକାଶ କ୍ଷେତ୍ରରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିଛି । ସମବାୟ ବିକାଶ ରୂପୀ ଯାନଟି ସମବାୟ ଆନ୍ଦୋଳନ ପଥରେ ସଦାସର୍ବଦା ଚିର ପ୍ରବାହମାନ । ବର୍ତ୍ତମାନର ଉଦାରୀକରଣ ଅର୍ଥନୀତି ଦୁନିଆରେ ସରକାର ଯେତେବେଳେ ସରକାରୀ ଉଦ୍ୟୋଗମାନଙ୍କରୁ ପୁଞ୍ଜି ପ୍ରତ୍ୟାହାର କରୁଛନ୍ତି, ନିଜର ଅଂଶ ବିକ୍ରୀ କରୁଛନ୍ତି, ସେତେବେଳେ ଜୀବନର ମାନଦଣ୍ଡ ଓ କ୍ରୟ ଶକ୍ତିର ଉନ୍ନତି ପାଇଁ ସମବାୟ ହେଉଛି, ଲୋକମାନଙ୍କର ଏକମାତ୍ର ଆଶା ଓ ଭରଷା । ସମବାୟର ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରର କାର୍ଯ୍ୟକ୍ରମ ଆଜି ଏହି ଆନ୍ଦୋଳନକୁ ଜନାଭିମୁଖୀ କରିପାରିଛି । ଚଳିତ ବର୍ଷର ସମବାୟ ସପ୍ତାହର ବିଶେଷତ୍ୱ ହେଉଛି, ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ଏଇଥିପାଇଁ ଯେ ଏହି ଆନ୍ଦୋଳନ ତା'ର ଶତବାର୍ଷିକୀ ପାଳନ କରୁଛି । ଚଳିତବର୍ଷ ସମବାୟ ସପ୍ତାହର ବିଶେଷତ୍ୱ ହେଉଛି, ସମବାୟ ମାଧ୍ୟମରେ ନୂତନ ପିଢ଼ିର ଆର୍ଥିକ ବିକାଶ । ନୂତନ ପିଢ଼ିର ଆର୍ଥିକ ବିକାଶ ପାଇଁ ସମବାୟ ଗଣତାନ୍ତ୍ରିକ ନୀତି ଓ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ । ସେଥିପାଇଁ ନୂତନ ପିଢ଼ି ଏହି ଆଦର୍ଶ ଉପରେ ଅତ୍ୟନ୍ତ ଧ୍ୟାନ ଦେବା ଆବଶ୍ୟକ ।

ମାତ୍ର ସମବାୟର ଏହି ସନ୍ଧିଗଣ ମୁହୂର୍ତ୍ତରେ ତାକୁ ଆଗେଇ ନେବା ପାଇଁ ଏହାର ବିଭିନ୍ନ ଦିଗପ୍ରତି ଆମକୁ ଆତ୍ମ ବିଶ୍ଳେଷଣ କରିବାକୁ ପଡ଼ିବ । ଏହାର ମୁଖ୍ୟ ପ୍ରସଙ୍ଗ - ଜନସଂଖ୍ୟାର ଅର୍ଦ୍ଧାଧିକ ମହିଳାଙ୍କୁ ଏହି ଆନ୍ଦୋଳନର ମୁଖ୍ୟ ସ୍ରୋତରେ ସାମିଲ କରିବା ପାଇଁ ବାସ୍ତବ ପଦକ୍ଷେପ ଗ୍ରହଣ କରିବା ଦରକାର । ସମବାୟର ବିକାଶ ନିମନ୍ତେ ଏହାର ଯୋଜନା, ସିଦ୍ଧାନ୍ତ ଗ୍ରହଣ, କାର୍ଯ୍ୟକ୍ରମ, ଆର୍ଥିକ ବିକାଶ ଏବଂ ପରିଚାଳନାଗତ ନିୟନ୍ତ୍ରଣରେ ମହିଳାମାନଙ୍କ ଯୋଗଦାନ ଏକାନ୍ତ ଆବଶ୍ୟକ । ମହିଳାମାନେ ଭାରତବର୍ଷରେ ୫୦ ପ୍ରତିଶତ ସଂଖ୍ୟାରେ ଅଧିକାରୀ । ମହିଳାମାନଙ୍କ କାର୍ଯ୍ୟଦକ୍ଷତା ଶକ୍ତିକୁ ବୃଦ୍ଧିକରି ଏବଂ ସେମାନଙ୍କର କ୍ଷମତାର ବିକାଶ କରାଇ ସମବାୟରେ ବିନିଯୋଗ ହୋଇପାରୁ ନଥିବା ମହିଳାମାନଙ୍କର ମାନବ ସମ୍ବଳରୁ ସମସ୍ତ ସୁବିଧାକୁ ଉପଲବ୍ଧ କରାଇପାରିବା ଆଜିର ଏକମାତ୍ର ଚିନ୍ତନ । ମହିଳାମାନେ ବିପଣନ ଏବଂ ବ୍ୟବସାୟରେ ସ୍ୱତନ୍ତ୍ର କୌଶଳ ପରିଦର୍ଶନ କରନ୍ତି । ଯଦି ମହିଳାମାନଙ୍କୁ ସକ୍ରିୟ ଭାବେ ସଂପୃକ୍ତ କରି, ମହିଳାମାନଙ୍କର ସ୍ୱତନ୍ତ୍ର କ୍ଷମତାର ବ୍ୟବହାର ପାଇଁ ଗୁରୁତ୍ୱ ଦିଆଯାଏ, ତେବେ ସମବାୟ ସମ୍ଭାବ୍ୟ ଶକ୍ତିଶାଳୀ ଅର୍ଥନୈତିକ ପ୍ରଭାବ ପ୍ରଦର୍ଶନ କରିପାରିବ ।

ପୁରୁଷ ଓ ମହିଳାମାନେ ସମୟେ ସମୟେ ସମସ୍ୟାର ସମାଧାନ ଭିନ୍ନ ପ୍ରକାରେ କରିଥାଆନ୍ତି । ସେମାନଙ୍କର ନୂଆ ନୂଆ ଚିନ୍ତାଧାରା ଏବଂ ଭାବନା ଶକ୍ତି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତେଣୁ ମହିଳାମାନଙ୍କୁ ସମବାୟ ଆନ୍ଦୋଳନର ସିଦ୍ଧାନ୍ତ ଗ୍ରହଣ ପ୍ରକ୍ରିୟାରେ ସଂଶ୍ଳିଷ୍ଟ କରି ସମବାୟର ଭବିଷ୍ୟତ ଅଭିବୃଦ୍ଧି ବର୍ଦ୍ଧିତ କାର୍ଯ୍ୟକ୍ରମ ମାଧ୍ୟମରେ ବହୁମୁଖୀ ଏବଂ ଶକ୍ତିଶାଳୀ କରାଯାଇପାରେ । ଅଧିକରୁ ଅଧିକ ମହିଳାମାନଙ୍କୁ ସମବାୟରେ ସଂଶ୍ଳିଷ୍ଟ କରାଗଲେ ସମବାୟର ପରିସର ପ୍ରଶସ୍ତ ହେବ ଓ ସେମାନଙ୍କର ସାମାଜିକ ଉନ୍ନତିର ବୃଦ୍ଧି ଘଟିବ । ପୁରୁଷ ଓ ମହିଳାମାନଙ୍କ ଅଗ୍ରାଧିକାର କ୍ଷେତ୍ର ସମୟେ ସମୟେ ତାରତମ୍ୟ ଥିବାର ଦେଖାଯାଏ । ସାଧାରଣତଃ ସାମାଜିକ ଉନ୍ନତି ଯଥା- ନିଯୁକ୍ତି, ସ୍ୱାସ୍ଥ୍ୟ, ପରିବେଶ ଓ ଶିଶୁମାନଙ୍କ ପାଇଁ ଜଡ଼ିତ ଅନୁଭୂତିରୁ ଦେଖାଯାଏ ଯେ ମହିଳାମାନେ ସମବାୟରେ ନେଇଥିବା ପ୍ରଚେଷ୍ଟା ଦ୍ୱାରା ସେମାନଙ୍କର ସାମାଜିକ, ଅର୍ଥନୈତିକ କ୍ଷେତ୍ରରେ ପରିବର୍ତ୍ତନ ଆସିଛି । ତେଣୁ ସମବାୟକୁ ପରିବର୍ତ୍ତନ ପ୍ରକ୍ରିୟାରେ ସଂଶ୍ଳିଷ୍ଟ କରିବାକୁ ହେଲେ ସେହିଭଳି ପରିବେଶ ସୃଷ୍ଟି କରିବାକୁ ହେବ । ଯଦ୍ୱାରା ଅନୁଷ୍ଠାନର ପରିବର୍ତ୍ତନ ପ୍ରକ୍ରିୟାରେ ସେମାନେ ସେମାନଙ୍କର କ୍ରିୟାଭିମୁଖୀ ଏବଂ ସକ୍ରିୟ ସମର୍ଥନ ଦେଇପାରିବେ । ମହିଳାମାନଙ୍କ ମୂଳ ଦାୟିତ୍ୱ ହେବ ଯେ, ସେମାନେ ସମସ୍ତଙ୍କୁ ପରିବର୍ତ୍ତନର ଆବଶ୍ୟକତା ବିଷୟରେ ସଚେତନ କରିବେ । ସେମାନଙ୍କୁ ସେମାନଙ୍କର ଗୁରୁତ୍ୱ ବିଷୟରେ ବୁଝିବାକୁ ହେବ ଏବଂ ସେମାନଙ୍କ ପାଇଁ ସମ୍ମାନର

ପରିବେଶ ସୃଷ୍ଟି କରିବାକୁ ହେବ । ଯେହେତୁ ସମାଜ ଗଠନ କରିବାରେ ମହିଳାମାନଙ୍କର ଗୁରୁଦାୟିତ୍ୱ ଅଛି ଏବଂ ସେହି ଦାୟିତ୍ୱକୁ ତୁଲାଇବାକୁ ହେଲେ ସେମାନେ ଦୈହିକ ଓ ମାନସିକ ଭାବେ ସୁସ୍ଥ ଏବଂ ଶିକ୍ଷିତ ହେବା ଆବଶ୍ୟକ ।

ଆମର ଦାବି ଏବଂ କର୍ତ୍ତବ୍ୟ ବିଷୟରେ ସଚେତନ ହେବା ନିମନ୍ତେ ସମବାୟ ସପ୍ତାହ ଏକ ସୁଯୋଗ । ଏହା ଏପରି ଏକ ସମୟ ଯେତେବେଳେ ମହିଳାମାନେ ବିକାଶମୂଳକ ପ୍ରକ୍ରିୟାରେ ଅଂଶ ଗ୍ରହଣ କରିବା ପାଇଁ ପ୍ରେରଣାତ୍ମକ ଓ ସହାୟତାଭିତ୍ତିକ ବାତାବରଣ ସୃଷ୍ଟି କରନ୍ତି । ତେଣୁ ଏହା ଗୋଟିଏ ଉପଯୁକ୍ତ ସମୟ । ଯେତେବେଳେ ମହିଳାମାନେ ବିଚାର କରିବେ ଯେ, ସେମାନଙ୍କର ନାରୀ ଜନ୍ମ ଅଭିଶାପ ନୁହେଁ ବରଂ ସମସ୍ତ ସୁବିଧା ଉପଲବ୍ଧି କରିବା ପାଇଁ ସବୁକ୍ଷେତ୍ର ଗୋଟିଏ ଗୋଟିଏ ମାଧ୍ୟମ ସେତେବେଳେ ସମବାୟର କ୍ଷେତ୍ର ସେମାନଙ୍କ ପାଇଁ ଅନେକ ଆଶା ଓ ପ୍ରତ୍ୟାଶା ସୃଷ୍ଟି କରିବ ।

ସମବାୟର ମାନବ ସମ୍ବଳର ଉପଯୁକ୍ତ ବିନିଯୋଗ ପାଇଁ ସମବାୟ ଶିକ୍ଷା ଓ ତାଲିମ ଏକାନ୍ତ ପ୍ରୟୋଜନ । ମାନବ ସମ୍ବଳର ଉପଯୁକ୍ତ ବିନିଯୋଗ ନହେଲେ ସମବାୟ ଆନ୍ଦୋଳନ ଅଚିରେ ଲୋପ ପାଇଯିବ । ପୁଣି ପୁଞ୍ଜିବାଦର ରାଜତ୍ୱ ଘଟିବ । ଏଥିପାଇଁ ଯୁବ ସଂପ୍ରଦାୟକୁ ଆଗେଇ ଆସିବାକୁ ପଡ଼ିବ । ଯୁବ ସଂପ୍ରଦାୟ ନିକଟରେ ରହିଛି ଅସୀମ ଶକ୍ତି, ଯେଉଁଥିପାଇଁ ମହାପୁରୁଷ ବିବେକାନନ୍ଦଙ୍କର ବାଣୀ ଥିଲା -

'ଉତିଷ୍ଠ, ଜାଗ୍ରତ, ପ୍ରାପ୍ୟ, ବରାନ୍ନବଧତେ ।'

ସମବାୟ ଆନ୍ଦୋଳନରେ ସମାଜର ଅର୍ଦ୍ଧଭାଗ ମହିଳା ପ୍ରତ୍ୟକ୍ଷ ଭାବରେ ଆଜି ସଂପୃକ୍ତ ନଥିବାରୁ ଓଡ଼ିଶାରେ ସମବାୟ ଆନ୍ଦୋଳନର ପ୍ରଗତି କ୍ଷେତ୍ରରେ ଅନେକ କିଛି ଅନ୍ତରାୟ ସୃଷ୍ଟି ହେଉଛି । ଏଥିପାଇଁ ଆମକୁ ଆମର ମାନସିକତା ସ୍ତରରେ ପରିବର୍ତ୍ତନ ଆଣିବାକୁ ପଡ଼ିବ । ଯାହାକି ଶହେବର୍ଷ ପରେ ଓଡ଼ିଶାର ସମବାୟ ଆନ୍ଦୋଳନ କ୍ଷେତ୍ରରେ ଏକ ସ୍ୱର୍ଣକାତର ପ୍ରଶ୍ନବାଚୀ ହୋଇଉଠିଛି ।

ଓଡ଼ିଶାରେ ସମବାୟ ଆନ୍ଦୋଳନ ଆଜି ଦିଗହରା ନୁହେଁ । ପ୍ରଚଣ୍ଡ ପ୍ରାଚୁର୍ଯ୍ୟ ଏବଂ ଖଣିଜ ସଂପଦ ଭରା ଏହି ଓଡ଼ିଶା ମାଟିରେ ପୂରି ରହିଛି ସମସ୍ତ ସମ୍ଭାବନାର ସଫଳ ପ୍ରୟାସ । କେବଳ ଅଭାବ ପରିଲକ୍ଷିତ ହେଉଛି ଦୃଢ଼ ମାନସିକତା ଏବଂ ମହନୀୟ ତ୍ୟାଗ । ଯେତେବେଳେ ଓଡ଼ିଶାର ଲୋକ ଚରିତ୍ର ଠିକଣା ବାଟରେ କାର୍ଯ୍ୟ କରିବ, ସେତେବେଳେ ସମବାୟ ଓଡ଼ିଶାର ଆର୍ଥିକ ବିକାଶ କ୍ଷେତ୍ରରେ ନିଜର ଉପଯୁକ୍ତ ସ୍ଥାନକୁ ବଜାୟ ରଖିପାରିବ ।

ସ୍ମୃତିର ଚଉହଦିରେ ଆଜି ସମବାୟ ଆନ୍ଦୋଳନ କ୍ଷେତ୍ରରେ ଉଙ୍କିମାରି ଉଠୁଚି ଅତୀତର ସମସ୍ତ ଗାଥା । ସେ ଗାଥାର ଆବହମାନରେ ସମଗ୍ର ଭାରତବର୍ଷ ଦିନେ ସୃଷ୍ଟି କରିଥିଲା ଓଡ଼ିଶା ପାଇଁ ନୀରବ ଆକର୍ଷଣ । ଏହି ଆକର୍ଷଣ ଥିଲା ସମବାୟ ଆନ୍ଦୋଳନ କ୍ଷେତ୍ରରେ ଓଡ଼ିଶାର ଅସମ୍ଭବ ସଫଳତା । ଉତ୍କଳର ଆଦର୍ଶ ଅଛି । ମାତ୍ର ମଉଳି ଯାଇଛି ତା'ର ମାନବିକତା । ଆଜି ସେବା ପାଇଁ ଆବଶ୍ୟକ ହେଉଛି ହୃଦୟଟିଏ ଯେଉଁଠି ତ୍ୟାଗ ଅଛି, ସେଠି ସେବା ଅଛି । ସମବାୟ ନିଦର୍ଶନରେ ତ୍ୟାଗ ଆଉ ସେବା ହେଉଛି ଆମ ସଫଳତାର ସବୁକିଛି । ଏହି ପରିପ୍ରେକ୍ଷୀରେ ଓଡ଼ିଶାରେ ସମବାୟ ଆନ୍ଦୋଳନକୁ ଶହେବର୍ଷ ପରେ ଆଗେଇ ନେବାକୁ ହେଲେ ଏହାର ପଚାଶ ପ୍ରତିଶତ ମହିଳାମାନଙ୍କୁ ଏହି ଆନ୍ଦୋଳନ ସହିତ ପ୍ରତ୍ୟକ୍ଷ ଭାବେ ସାମିଲ କରାଇ ଆମର ମାନସିକତା ସ୍ତରରେ ଏକ ବ୍ୟାପକ ପରିବର୍ତ୍ତନ ଆଣିବାକୁ ହେବ, ଯାହାକି ଓଡ଼ିଶାର ସମବାୟ ଆନ୍ଦୋଳନକୁ ଦ୍ରୁତଗତିରେ ବିକଶିତ କରିପାରିବ ।

---



ରାଜ୍ୟ ଜୟଦେବ ଭବନଠାରେ ଶହୀଦ ଜୟୀ ରାଜଗୁରୁ ଓ ଖୋର୍ଦ୍ଧା ବିପ୍ଳବର ଦ୍ୱିଶତବାର୍ଷିକୀ ପାଳନ ଅବସରରେ ଆଇନ, ଗ୍ରାମ୍ୟ ଉନ୍ନୟନ ଓ ଶିଳ୍ପ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ସାଂସଦ ଶ୍ରୀ ବ୍ରଜ ତ୍ରିପାଠୀ ଓ ସୂଚନା ଓ ଲୋକ ସଂପର୍କ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଲୋକନାଥ ତନ୍ତୀ ଉପସ୍ଥିତ ଅଛନ୍ତି । ୨୦.୧୧.୦୪

# ଓଡ଼ିଶାରେ ସମବାୟ ଆନ୍ଦୋଳନର ଇତିବୃତ୍ତି

ହେମନ୍ତ କୁମାର ନାୟକ

ଉତ୍କଳ ଗୌରବ ବାରିଷ୍ଟର ମଧୁସୂଦନ ଦାସ ୧୮୯୭ ମସିହାରେ ୟୁରୋପୀୟ ଦେଶମାନ ଭ୍ରମଣ କରି ସମବାୟ ଅନୁଭୂତି ପରିପ୍ରେକ୍ଷୀରେ ୧୮୯୮ ଜୁନ୍‌ରେ ଓଡ଼ିଶାର କଟକଠାରେ ପ୍ରଥମ ସମବାୟ ଭଣ୍ଡାର ଗଠନ କରିଥିଲେ । ଏହାପରେ ବାଙ୍କୀରେ ଭାରତବର୍ଷର ପ୍ରଥମ କୃଷି ଋଣ ସମବାୟ ସମିତି ଗଠିତ ହୋଇଥିଲା । ଗରିବ ଓ ଚାଷୀମାନଙ୍କୁ ମହାଜନର ଅତିରିକ୍ତ ସୁଧହାର ଋଣରୁ ମୁକ୍ତ କରିବା ପାଇଁ ୟୁରୋପୀୟ ଦେଶମାନଙ୍କରେ ସମାଜସେବୀମାନେ ଗ୍ରାମାଞ୍ଚଳ ଲୋକମାନଙ୍କୁ ସଭ୍ୟ କରାଇ ସେମାନଙ୍କଠାରୁ ସ୍ୱଳ୍ପ ଜମା ସଂଗ୍ରହ କରି ୧୮୪୪ ମସିହାରୁ ଋଣ, ଖାଉଟି, କୃଷି ଓ ଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ, ବିପଣନ, ଗୃହ ନିର୍ମାଣ ପ୍ରଭୃତି ବିଭିନ୍ନ ଆତ୍ମନିର୍ଭରଶୀଳ ସମବାୟ ସମିତିମାନ ଗଠନ କରିଥିଲେ । ୧୮୯୧ ମସିହାରେ ଭାରତର ଅବିଭକ୍ତ ପଂଜାବ ପ୍ରଦେଶର ଡାଙ୍ଗ ଜିଲ୍ଲାରେ ପ୍ରଥମ କୃଷି ଜମି ସମବାୟ ସମିତି ଗଠିତ ହୋଇଥିଲା । ଏହି ଜିଲ୍ଲା ଭାରତ ସ୍ୱାଧୀନ ହେବା ପରେ ପାକିସ୍ଥାନରେ ଅବସ୍ଥିତ । ଉକ୍ତ ସମିତି ୧୯୨୨ ମସିହା ପର୍ଯ୍ୟନ୍ତ ଚାଲିଥିଲା । ଠିକ୍ ସେହିପରି ଭାରତର ମହୀଶୂର ରାଜ୍ୟରେ ୧୮୯୪ରେ ଜମି ମାଲିକ କୃଷି ସମବାୟ ସଂଘ ଗଠିତ ହୋଇଥିଲା ।

ଭାରତର ପ୍ରଥମ ସମବାୟ ଆଇନ ୧୯୦୪ ମସିହା ମାର୍ଚ୍ଚ ୨୫ ତାରିଖରେ ଗୃହୀତ ହେବା ପରେ ଭାରତରେ ସମବାୟ ସମିତି ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା । ୧୯୧୨ କେନ୍ଦ୍ରୀୟ ସମବାୟ ଆଇନ ଗୃହୀତ ହେବା ପୂର୍ବରୁ ହିସାବ ସମୀକ୍ଷା, ଉତ୍ତମ ତଦାରଖ ତଥା ଜମା ସଂଗ୍ରହ ଓ ଋଣ ଲଗାଣ ବୃଦ୍ଧି ପାଇଁ ବାଙ୍କୀ ଅଂଚଳର ୫୦ ଗୋଟି ଗ୍ରାମ୍ୟ ଋଣ ସମବାୟ ସମିତି ଏକାଠି ହୋଇ ୧୯୧୦ ମାର୍ଚ୍ଚ ୨୬ ତାରିଖରେ ବାଙ୍କୀ-ଡମପଡ଼ା କେନ୍ଦ୍ର ସମବାୟ ବ୍ୟାଙ୍କ୍ ପ୍ରତିଷ୍ଠିତ ହୋଇଥିଲା । ଏହାପରେ ଓଡ଼ିଶା ସମେତ ଭାରତର ବିଭିନ୍ନ ସ୍ଥାନରେ କେନ୍ଦ୍ର ସମବାୟ ବ୍ୟାଙ୍କ୍ ବୃଦ୍ଧି ପାଇବାରେ ଲାଗିଲା । ଦେଶରେ ସମବାୟ ଆନ୍ଦୋଳନର ବ୍ୟାପକ ପ୍ରଚାର ଓ ପ୍ରସାର ପାଇଁ ୧୯୧୯ ମସିହାରେ ସମବାୟ ରାଜ୍ୟ ତାଲିକାଭୁକ୍ତ ହୋଇଥିଲା ଏବଂ ବିଭିନ୍ନ ରାଜ୍ୟରେ ସମବାୟ ଆଇନ୍ ପ୍ରଣୟନ କରାଯାଇ ସମବାୟ ସମିତିଗୁଡ଼ିକ ରେଜେଷ୍ଟ୍ରିଭୁକ୍ତ ହୋଇଥିଲା । ଭାରତ ସରକାର ବିଭିନ୍ନ ସମୟରେ କେତେକ କମିଶନ ଗଠନ କରାଇ ସମବାୟର ବିଭିନ୍ନ ତ୍ରୁଟି ସୁଧାରି ଏହାର ସଫଳ ରୂପାୟନ ନିମନ୍ତେ ପ୍ରୟାସ ଜାରି କରି ଆସିଛନ୍ତି । ୧୯୩୫ ମସିହାରେ ଭାରତୀୟ ରିଜର୍ଭ ବ୍ୟାଙ୍କ୍ ପ୍ରତିଷ୍ଠା ହେବାପରେ କେନ୍ଦ୍ର ସମବାୟ ବ୍ୟାଙ୍କ୍‌ମାନଙ୍କୁ ୧୯୩୯ରୁ ପୁନଃଋଣ ଲଗାଣ କରିଥିଲେ ।

ଦେଶ ସ୍ୱାଧୀନ ହେବାପରେ ଦେଶରେ ମିଶ୍ର ଅର୍ଥନୀତି ପ୍ରଚଳନ କରାଯାଇ ଉତ୍କଟ ଦାରିଦ୍ର୍ୟର ଦ୍ରୁତ ଦୂରୀକରଣ ନିମନ୍ତେ ସମବାୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ରିଜର୍ଭ ବ୍ୟାଙ୍କ୍ ୧୯୪୮ ମସିହାରେ ଜାତୀୟକରଣ ହେବା ପରେ ଓଡ଼ିଶା ସମେତ ବିଭିନ୍ନ ରାଜ୍ୟ ସମବାୟ ବ୍ୟାଙ୍କ୍ ପ୍ରତିଷ୍ଠା କରାଯାଇ, ରିଜର୍ଭ ବ୍ୟାଙ୍କ୍ ରାଜ୍ୟ ସମବାୟ ବ୍ୟାଙ୍କ୍ ଜରିଆରେ କେନ୍ଦ୍ର ସମବାୟ ବ୍ୟାଙ୍କ୍‌ମାନଙ୍କୁ କୃଷିଋଣ ଦେବା ଆରମ୍ଭ କରିଥିଲା । ୧୯୫୪ ମସିହାରେ ଗ୍ରାମ୍ୟଋଣ ତନଖି କମିଟିର ସୁପାରିଶକ୍ରମେ ସମବାୟ ସମିତିଗୁଡ଼ିକ ଋଣ ପ୍ରଦାନ ସହିତ ବହୁବିଧ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ସରକାର ପରିଚାଳନା କମିଟିର ଅଂଶୀଦାର ହୋଇ ସେଗୁଡ଼ିକର ମୂଳଧନ ବୃଦ୍ଧି କରିବା ପାଇଁ ଅଂଶ ପ୍ରଦାନ କଲେ । ଓଡ଼ିଶା ସରକାର ୧୯୬୨ ମସିହାରେ ସମବାୟ ସମିତିଗୁଡ଼ିକର ସୁପରିଚାଳନା ପାଇଁ ପ୍ରଚଳିତ ଥିବା ସମବାୟ ଆଇନକୁ ଆମୂଳଚୂଳ ସଂଶୋଧନ କରାଇ ଓଡ଼ିଶା ରାଜ୍ୟ ସମବାୟ ଆଇନ ପ୍ରଚଳନ କଲେ । ଉକ୍ତ ଆଇନରେ ସମବାୟ ନିବନ୍ଧକଙ୍କୁ ମୁଖ୍ୟ କରାଯାଇ ସମିତି ନିବନ୍ଧନ, ଉପବିଧି ନିବନ୍ଧନ, ତଦାରଖ, ପରିଚାଳନା କମିଟି ନିର୍ବାଚନ, କୁପରିଚାଳନାରେ ପରିଚାଳନା କମିଟି ବାତିଲ, ଋଣ ଅସୁଲର ପଦକ୍ଷେପ ପ୍ରଭୃତି ବହୁବିଧ କ୍ଷମତା ଏହା ଆଇନରେ ରଖାଗଲା । ପର୍ଯ୍ୟାୟକ୍ରମେ ରାଜ୍ୟ ସରକାର ବିଭିନ୍ନ ସମୟରେ ଏହି ଆଇନକୁ ସଂଶୋଧନ କରାଇ ସମବାୟ ସଂସ୍ଥାଗୁଡ଼ିକୁ ନିୟନ୍ତ୍ରଣ କଲେ । ଓଡ଼ିଶା ସରକାର ୧୯୬୨ ମସିହାରୁ ଅଦ୍ୟାବଧି ୧୨ ଥର ସମବାୟ ଆଇନ ସଂଶୋଧନ କରିଆସୁଛନ୍ତି ।

ଭାରତ ସରକାର ୧୯୯୮ ମସିହାରୁ କିଷାନ୍ କ୍ରେଡ଼ିଟ୍ କାର୍ଡ଼ ପ୍ରଚଳନ କରି ଚାଷୀମାନଙ୍କୁ ଋତୁକାଳୀନ ଫସଲ ନୀତି ପରିବର୍ତ୍ତେ

ତୁରନ୍ତ କୃଷି ଋଣ ପାଇବା ପାଇଁ ବ୍ୟବସ୍ଥା କରିଛନ୍ତି । ଏହାଦ୍ୱାରା କୃଷକମାନେ କୃଷିଋଣ ଶୁଝିଲେ ପୁନଶ୍ଚ ଲଗାଣ ପାଇ ପାରୁଛନ୍ତି । ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ପ୍ରଥମେ ନିୟମିତ କୃଷି ଋଣ ପୈଠକାରୀଙ୍କୁ ପୁରସ୍କୃତ କରିବା ପାଇଁ ପ୍ରଚଳିତ ସୁଧହାରଠାରୁ ୧ରୁ ୨ ଶତାଂଶ ରିହାତି ସୁଧ ପ୍ରଦାନ କରି ସାରା ଦେଶରେ ପଥପ୍ରଦର୍ଶକ ହୋଇଛି । ୨୦୦୧ ମସିହାରୁ 'କଳିଙ୍ଗ କିଷାନ୍ ସ୍ୱର୍ଣ୍ଣକାର୍ଡ଼' ପ୍ରଚଳନ କରାଯାଇଛି । ଚାଷୀମାନେ ଲଗାତାର ଦୁଇବର୍ଷ କିସ୍ତି ତାରିଖ ପୂର୍ବରୁ ଋଣ ପୈଠ କଲେ ପ୍ରଚଳିତ ସୁଧହାରଠାରୁ ଏକ ଶତାଂଶ ସୁଧ ରିହାତି ପାଇବେ । ରାଜ୍ୟ ସମବାୟ ବ୍ୟାଙ୍କ ଏହି ସୁଧ ବହନ କରୁଛି । ଦୈବ ଦୁର୍ଘଟଣାରେ ବୀମା କମ୍ପାନୀରୁ ୨୫ ହଜାର ଟଙ୍କା କ୍ଷତିପୂରଣ ପାଇବେ । ରାଜ୍ୟ ସମବାୟ ବ୍ୟାଙ୍କ୍ ଋଣୀ କୃଷକଙ୍କର ବୀମା ଦେୟ ଦେଉଛି । କଳିଙ୍ଗ କିଷାନ୍ ସ୍ୱର୍ଣ୍ଣକାର୍ଡ଼ଧାରୀମାନେ କୃଷିଋଣ ସହିତ ପ୍ରାଥମିକ ଭାବେ ୫ ହଜାର ଟଙ୍କା ନଗଦ ପତିଆରା ଋଣ ଓ ୩ ହଜାର ଟଙ୍କା ଦୀର୍ଘକାଳୀନ ଋଣ ପାଇପାରିବେ । ନିଜ ଇଚ୍ଛାନୁଯାୟୀ ଚାଷୀମାନେ ସାର ଯେକୌଣସି ସଂସ୍ଥାରୁ କିଣି ପାରିବେ । ବ୍ୟାଙ୍କ୍ ଖର୍ଚ୍ଚରେ କୃଷିର ତାଲିମ୍ ପାଇବା ପାଇଁ ବିଭିନ୍ନ କୃଷି ଫାର୍ମ ପରିଦର୍ଶନର ସୁବିଧା ପାଇବେ । ପ୍ରତିବର୍ଷ ଲଟେରୀ ଉଠାଣରେ ତିନୋଟି ସ୍ୱର୍ଣ୍ଣକାର୍ଡ଼ଧାରୀ ପ୍ରଥମ ପୁରସ୍କାର ୫୦ ହଜାର ଟଙ୍କା, ଦ୍ୱିତୀୟ ପୁରସ୍କାର ୩୦ ହଜାର ଟଙ୍କା ଏବଂ ତୃତୀୟ ପୁରସ୍କାର ୨୦ ହଜାର ଟଙ୍କା, ଏହିପରି ଛଅଗୋଟି ସୁବିଧା ପାଉଛନ୍ତି । ସେହିପରି ୨୦୦୨ ମସିହାରୁ 'କଳିଙ୍ଗ କିଷାନ୍ ସିଲ୍‌ଭର କାର୍ଡ଼' ପ୍ରଚଳନ କରାଯାଇଛି । ଏହି କୃଷିଋଣୀମାନେ ଗୋଟିଏ ବର୍ଷ ଋଣ ଶୁଝିଲେ ପ୍ରଚଳିତ ସୁଧହାରଠାରୁ ୧ ଶତାଂଶ ସୁଧ ରିହାତି ପାଇବେ କିନ୍ତୁ ସ୍ୱର୍ଣ୍ଣକାର୍ଡ଼ଧାରୀମାନଙ୍କ ପରି ଅନ୍ୟାନ୍ୟ ସୁବିଧା ପାଇପାରିବେ ନାହିଁ । ଏହିସବୁ ପଦକ୍ଷେପଗୁଡ଼ିକ ଯୋଗୁଁ ଋଣ ଅସୁଲହାର ଶତକଡ଼ା ୫୫ରୁ ୬୫କୁ ବୃଦ୍ଧି ପାଇଛି । ଖିଲାପୀ ଋଣୀଙ୍କ ସଂଖ୍ୟା କମିବାରେ ଲାଗିଛି । ଚଳିତ ବଜେଟ୍‌ରେ ଭାରତ ସରକାର ୧୫ ହଜାର କୋଟି ଟଙ୍କା ମୂଳଧନ ଯୋଗାଇ ବାଣିଜ୍ୟ ବ୍ୟାଙ୍କମାନଙ୍କ ପରି ସମବାୟ ଋଣ ସମିତି ଓ ବ୍ୟାଙ୍କମାନଙ୍କ ଦେଣାପାଉଣା ଫର୍ଦ୍ଦ ସମତୁଲ କରିବା ପାଇଁ ବ୍ୟବସ୍ଥା କରିଛନ୍ତି । କିନ୍ତୁ କେନ୍ଦ୍ର ଓ ରାଜ୍ୟ ସରକାର ଉଭୟ ଅର୍ଥ ବହନ କରିବା ପାଇଁ ନିଷ୍ପତ୍ତି ହୋଇଛି । ଭାରତର ସମସ୍ତ ଗ୍ରାମ ଓ ଶତକଡ଼ା ୬୭ ଭାଗ ପରିବାର ୩୧.୩ ୧୯୯୯ ସୁଦ୍ଧା ସମବାୟ ପରିସରଭୁକ୍ତ ହୋଇଥିଲେ । ୫ ଲକ୍ଷ ୩ ହଜାର ୯ ଶହ ୬୨ ସମବାୟ ସମିତିର ପ୍ରାୟ ୨୧ କୋଟି ସଭ୍ୟ ଥିଲେ । ସମିତିମାନଙ୍କର ୧୭ ହଜାର ୮ ଶହ ୬୮ କୋଟି ଟଙ୍କା ଅଂଶଧନ, ୧୭ ହଜାର ୯ ଶହ ୧୪ କୋଟି ଟଙ୍କା ରିଜର୍ଭ ପାଣ୍ଠି, ଜମା ୧ ଲକ୍ଷ ୧୫ ହଜାର ୯ ଶହ ୬୬ କୋଟି ଟଙ୍କା ଓ ୨ ଲକ୍ଷ ୨୭ ହଜାର ୧ ଶହ ୧୧ କୋଟି ଟଙ୍କା ମୂଳଧନ ଥିଲା । ୨୦୦୧-୦୨ ବର୍ଷରେ ଉତ୍ପାଦକ ସ୍ୱଳ୍ପକାଳୀନ କୃଷିଋଣ ୪୧ ହଜାର କୋଟି ଟଙ୍କା ଥିଲା । ଅଥଚ ୧୯୫୦-୫୧ରେ ମାତ୍ର ୨୮୧ କୋଟି ଟଙ୍କା କୃଷିଋଣ ଥିଲା । ୧୯୩୬ ମସିହା ଅପ୍ରେଲ ପହିଲା ଦିନ ଓଡ଼ିଶା ପ୍ରଦେଶ ସୃଷ୍ଟି ହେବା ପରେ ସମବାୟ ସମିତି ସଂଖ୍ୟା ବୃଦ୍ଧି ପାଇଁ ୨,୧୫୪ ସମବାୟ ସମିତିର ୭୪ ହଜାର ସଭ୍ୟ ଓ ୯୮ ଲକ୍ଷ ମୂଳଧନ ହୋଇଥିଲା । କିନ୍ତୁ ୧୯୦୩ ମସିହାରେ ଓଡ଼ିଶାରେ ମାତ୍ର ୩ଟି ଋଣ ସମବାୟ ସମିତିର ୫୦ ଜଣ ସଭ୍ୟ ଓ ୧୦୦୦ ଟଙ୍କା ମୂଳଧନ ଥିଲା । ୧୯୬୦-୬୧ରେ ୧୧,୨୦୬ ସମବାୟ ସମିତିରୁ ୧୨ ଲକ୍ଷ ୩୩ ହଜାର ସଭ୍ୟ ଓ ୨୫ କୋଟି ୫୬ ଲକ୍ଷ ଟଙ୍କା ମୂଳଧନ ହୋଇଥିଲା । କ୍ଷୁଦ୍ର ସମିତିମାନଙ୍କୁ କାର୍ଯ୍ୟକ୍ଷମ କରିବା ପାଇଁ ୧୯୬୪ ମସିହାରେ ରିଜର୍ଭ ବ୍ୟାଙ୍କ୍ କାର୍ଯ୍ୟସୂଚୀ ଅନୁଯାୟୀ ବହୁ ସମିତି ମିଶି ବୃହତ୍ ସମିତି ହେବା ଦ୍ୱାରା ସମିତି ସଂଖ୍ୟା କମିଯାଇଛି ।

ଓଡ଼ିଶାରେ ୨୦୦୦-୦୧ ମସିହାରେ ସମୁଦାୟ ୬୩ ଲକ୍ଷ ପରିବାର ମଧ୍ୟରୁ ୪,୯୮୬ ସମବାୟ ସମିତିମାନଙ୍କର ୫୭ ଲକ୍ଷ ଟଙ୍କା ମୂଳଧନ ହୋଇଥିଲା । ଏହି ପରିପ୍ରେକ୍ଷୀରେ ଓଡ଼ିଶାରେ 'ସମବାୟ' ପ୍ରଗତି ପଥରେ ଆଗେଇ ଚାଲିଛି । ୨୦୦୨-୦୩ରେ ସମବାୟ ବ୍ୟାଙ୍କମାନେ ଓଡ଼ିଶାର ସମୁଦାୟ କୃଷିଋଣର ଶତକଡ଼ା ୭୦ ଭାଗ ବହନସ୍ଥଳେ ବାଣିଜ୍ୟ ଓ ଗ୍ରାମ୍ୟ ବ୍ୟାଙ୍କମାନେ ମିଶି କେବଳ ୩୦ ଭାଗ ବହନ କରିଥିଲେ । ବହୁ ପ୍ରତିବନ୍ଧକ ସତ୍ତ୍ୱେ ସମବାୟ ଆନ୍ଦୋଳନ ଆଗେଇ ଚାଲିଛି ଓ ଗ୍ରାମ୍ୟ ଅର୍ଥନୀତିର ପ୍ରମୁଖ ଅଂଶୀଦାର ହୋଇଛି । ଭାରତରେ ୨୫.୩.୧୯୦୪ରେ ସମବାୟ ଆଇନ ପ୍ରଚଳନ ହୋଇଥିବା ଯୋଗୁଁ ୨୦୦୪ରେ ଭାରତସାରା ସମବାୟ ଶତବାର୍ଷିକ ପାଳନ କରାଯାଉଛି । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ସ୍ୱର୍ଗତଃ ଜବାହରଲାଲ ନେହରୁଙ୍କ ଜୟନ୍ତୀ ଶିଶୁ ଦିବସ ନଭେମ୍ବର ୧୪ରୁ ୨୧ ପର୍ଯ୍ୟନ୍ତ ସମବାୟ ସପ୍ତାହ ପାଳନ କରାଯାଇ ସମବାୟ ସଂପର୍କୀୟ ସମସ୍ତ କାର୍ଯ୍ୟର ପ୍ରଚାର ଓ ପ୍ରସାର କରାଯାଇଛି ।

ସହକାରୀ ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର- ୭୫୧୦୦୧

# କୃଷିଋଣ ସମବାୟର ଶତବର୍ଷ

ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିଦ୍‌ସ)

**ସ**ମବାୟ ଏକ ସ୍ୱେଚ୍ଛାକୃତ ସମକର୍ମ ଓ ସମଭାବାପନ୍ନ ବ୍ୟକ୍ତିବିଶେଷଙ୍କ ସମୂହ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ସମ୍ମିଳିତ ଅନୁଷ୍ଠାନ । ସମାଜର ଦୁର୍ବଳତମ ଓ ନିମ୍ନମଧ୍ୟବିତ୍ତ ଶ୍ରେଣୀଙ୍କ ଉପକାର ସାଧନ କରିବା ପାଇଁ ସମବାୟ ସମିତି ଗତିଶୀଳ । ଗରିବ ଜନସାଧାରଣଙ୍କୁ ପୁଂଜିପତିମାନଙ୍କ ଶୋଷଣରୁ ରକ୍ଷା କରି ସେମାନଙ୍କ ଆର୍ଥିକ ଓ ସାମାଜିକ ଅବସ୍ଥାର ଉନ୍ନତି ନିମନ୍ତେ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ କେତେକ ଚିନ୍ତାଶୀଳ ଜନନାୟକଙ୍କ ମନରେ ଏହି ସମବାୟ ଚିନ୍ତାଧାରାର ଉଦ୍ରେକ ହୋଇଥିଲା । ଏହି ମର୍ମରେ ଜର୍ମାନୀର ଫ୍ରେଡ଼ରିକ୍ ଉଇଲ୍‌ହେଲନା ସେହି ଦେଶର ଗରିବ ଚାଷୀମାନଙ୍କୁ ଇହୁଦୀୟ ମହାଜନମାନଙ୍କ କବଳରୁ ମୁକ୍ତ କରିବା ପାଇଁ ଏକ ଛୋଟ ସମବାୟ ସମିତି ଗଠନ କରି ଚାଷୀମାନଙ୍କୁ ଶସ୍ତାରେ ରୋଟି ଯୋଗାଉ ଥିଲେ । ପରେ ୧୮୪୯ରେ ସେ ଦେଶର ରଫଜନ୍ ଏକ ଋଣ ସମବାୟ ସମିତି ଆରମ୍ଭ କରି ସଭ୍ୟମାନଙ୍କୁ ସହଜ ଓ ଶସ୍ତାରେ ଋଣ ପ୍ରଦାନ କରିଥିଲେ । ୧୮୪୪ ଖ୍ରୀ:ଅ: ଅକ୍ଟୋବର ମାସ ୨୪ ତାରିଖରେ ରଚଡେଲ ପାଓନିଅରସ୍ କୋଅପରେଟିଭି ସୋସାଇଟି ଦ୍ୱାରା ଇଂଲଣ୍ଡରେ ପ୍ରଥମେ ଗୋଟିଏ ସଫଳ ସମବାୟ ଉଦ୍ୟୋଗ କନ୍‌ଜ୍ୟୁମ୍‌ର ଷ୍ଟୋର ପ୍ରତିଷ୍ଠା କରି ସାରା ବିଶ୍ୱରେ ସମବାୟର ବ୍ୟବସାୟକୁ ସଂପ୍ରସାରିତ କରାଯାଇଥିଲା । ସେଭଳି ୧୮୫୦ରେ ଫ୍ରାନ୍‌ସରେ ହେରମ୍ୟାନ ସୁହେଜ ଡେରିଜ୍‌ଙ୍କ ନେତୃତ୍ୱରେ ସମବାୟର ପ୍ରସାର ଘଟିଲା । ଏହା ପରେ ପରେ ଡେନ୍‌ମାର୍କ, ଆୟରଲ୍ୟାଣ୍ଡ, ଜାପାନ ପ୍ରଭୃତି ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ସମବାୟ ଚେତନାର ଜାଗରଣ ଓ ବିକାଶ ଏହି ଶତାବ୍ଦୀର ପ୍ରଥମାର୍ଦ୍ଧରୁ ସଂଘଟିତ ହୋଇଥିବା ଜଣାଯାଏ । ଭାରତୀୟ ସଂସ୍କୃତିରେ ନିଃସ୍ୱାର୍ଥପର ପାରସ୍ପରିକ ସେବା, ସାହାଯ୍ୟ ଓ ସହଯୋଗ ନୂତନ ନହେଲେବି ଇଂରେଜ ଶାସିତ ଭାରତ ମହାଦେଶରେ ସରକାରୀ ସ୍ତରରେ ୧୮୮୩ ଖ୍ରୀଷ୍ଟାବ୍ଦରେ ସମବାୟ ଆନ୍ଦୋଳନର ପରିକଳ୍ପନା କରାଯାଇଥିବା ଜାଣିବାକୁ ମିଳେ । ମହାଜନ ଓ ସାହୁକାରମାନଙ୍କ ଚଡ଼ା ସୁଧ ଓ କଡ଼ା ସର୍ତ୍ତର ଶୋଷଣରୁ ଶ୍ରମିକ ତଥା ଗରିବ ଚାଷୀ ମୂଲିଆଙ୍କୁ ରକ୍ଷା କରିବା ପାଇଁ ସର୍ବପ୍ରଥମେ ସମବାୟ ଆନ୍ଦୋଳନ କାମ କରୁଥିଲେ ହେଁ ଏ ପରିବର୍ତ୍ତିତ ଆଧୁନିକ ଜଗତରେ ସମବାୟର ସୀମିତ ସଂଜ୍ଞାକୁ ପରିବ୍ୟାପ୍ତ କରି ଋଣ ଦାନ ସଂଗେ ସଂଗେ ଦ୍ରବ୍ୟ ଉତ୍ପାଦନ, ଉତ୍ପାଦିତ ଦ୍ରବ୍ୟର ସୁସମବଣ୍ଟନ ଓ ବଜାରକରଣ ସହ ବହୁ ସାମାଜିକ ତଥା ଅର୍ଥନୈତିକ କାରବାରରେ ସମବାୟ ନିଜକୁ ସଂପୃକ୍ତ କରିବାରେ ଲାଗିଛି । କହିବାକୁ ଗଲେ, ଖାଲିତ ସଂପୃକ୍ତ କରିନି, ସମସ୍ତ କ୍ଷେତ୍ରରେ ପ୍ରବେଶ କରି ବ୍ୟବସାୟିକ ସଫଳତା ମଧ୍ୟ ହାସଲ କରିବାରେ ଲାଗିଛି । ଜର୍ମାନୀର ରଫାଜନ୍ ଆନ୍ଦୋଳନରୁ କୃଷିଋଣ ସମିତିମାନ ଗଠିତ ହୋଇ ସଫଳତା ପାଇଥିଲାବେଳେ ପଶୁପାଳନ କ୍ଷେତ୍ରରେ ଡେନ୍‌ମାର୍କ ଏକ ସମବାୟିକ ବ୍ୟାଙ୍କ୍ ଖୋଲି ଗୋପାଳନ ଓ କୁକୁଡ଼ା ଚାଷରେ ସାରା ବିଶ୍ୱରେ ପ୍ରାଧାନ୍ୟ ହାସଲ କରିଛି । ଶିଳ୍ପ ସମବାୟ କ୍ଷେତ୍ରରେ ମୁଦ୍ରଣ ସମବାୟ ସମିତି ପାଇଁ ଫ୍ରାନ୍‌ସ ସବୁଠାରୁ ଆଗରେ ରହି ସମବାୟର ପ୍ରଶସ୍ତିଗାନ କରୁଥିଲାବେଳେ ଦେଶାତ୍ମ କର୍ମ ସଂସ୍କୃତିର ଦେଶ ଭାବରେ ପର୍ଯ୍ୟାପ୍ତ ଜ୍ଞାନକୌଶଳର ପରିବଣ୍ଟନ କରିବା ସହ ଜାପାନ ଶହେ ପ୍ରତିଶତ ଋଣ ଅସୁଲରେ ସମବାୟିକ ପ୍ରଶଂସା ଭାଜନ ହୋଇପାରିଛି । ସମବାୟର ସହଯୋଗ ନିୟମକୁ ଆଧାର କରି ୧୮୯୮ ଜୁନ୍ ୧୧ ତାରିଖରେ ଛଅ ହଜାର ଟଙ୍କାର ଅଂଶଧନରୁ ଜାତୀୟ ଗୌରବ ମଧୁସୂଦନ ଦାସ ସର୍ବପ୍ରଥମେ ଆମ ଦେଶର କଟକଠାରେ 'କଟକ କୋଅପରିଟିଭ୍ ଷ୍ଟୋର୍' ଆରମ୍ଭ କରିଥିଲେ । ଏ ଦିଗରେ ଆମ ଓଡ଼ିଶା ସମବାୟର ଆଦିଭୂମି ଭାବରେ ଗୌରବାନ୍ୱିତ । ଏହାର ପରବର୍ତ୍ତୀ କାଳରେ ୧୯୦୩ ଖ୍ରୀ:ଅ:ରେ ସମଗ୍ର ଭାରତବର୍ଷରେ ସମବାୟକୁ ଏକ ସ୍ୱୀକୃତ ବ୍ୟବସାୟିକ ଅନୁଷ୍ଠାନ ଭାବରେ ପରିଗଣିତ ହେବା କାଳରେ ଆମ ରାଜ୍ୟର ବାଙ୍କୀଠାରେ ସୁବର୍ଣ୍ଣପୁର, ଚର୍ଚ୍ଚିକା ଓ ବରପୁଟି ଋଣ ସମବାୟ ସମିତି ଆରମ୍ଭ କରାଯାଇଥିଲା । ଆଜି ସାମାଜିକ ଓ ଅର୍ଥନୈତିକ ବିକାଶରେ ସମବାୟ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ଏଥିପାଇଁ 'ସମବାୟ ଆଇନ' ନାମକ ଏକ ସ୍ୱତନ୍ତ୍ର ଆଇନ ୧୯୦୪ ମସିହାରେ ପ୍ରଣୟନ କରାଯାଇଥିଲା ଏବଂ ପରେ ଆବଶ୍ୟକତାନୁଯାୟୀ ଏହି ଆଇନକୁ ପରିମାର୍ଜିତ, ପରିବର୍ଦ୍ଧିତ ଓ ପରିବର୍ତ୍ତିତ କରି ଏକ ପୂର୍ଣ୍ଣାଙ୍ଗ ଆଇନ ରୂପେ ବିଭିନ୍ନ ସମବାୟ ପ୍ରକଳ୍ପଗୁଡ଼ିକର ଭିତ୍ତି, ଗତି, ପ୍ରଗତି ଓ ଅଗ୍ରଗତିକୁ ସୁନିୟନ୍ତ୍ରିତ କରି ସଫଳତା ଆଡ଼କୁ ଆଗେଇ ନେଲା । ୨୦୦୩ ମସିହାକୁ ସମବାୟର

ଅନୌପାଚାରୀକ ଶତବର୍ଷ ଭାବେ ପାଳନ କରାଯାଉଥିଲେ ମଧ୍ୟ ୨୦୦୪ରୁ ସମବାୟ ଆଇନ ଓ ବ୍ୟବସାୟ ସମୂହର ଔପଚାରୀକ ଶତାୟୁ ବର୍ଷ ଉତ୍ସବ ପାଳିତ ହେବାକୁ ଯାଉଛି ।

ସମଗ୍ର ଦେଶରେ ବର୍ତ୍ତମାନକୁ ପାଂଚଲକ୍ଷରୁ ଊର୍ଦ୍ଧ୍ୱ ସମବାୟ ସମିତି ପ୍ରାୟ ତେଇଶି କୋଟି ସଭ୍ୟ ଓ ୧,୯୮ ହଜାର କୋଟି ଟଙ୍କାର କାର୍ଯ୍ୟକାରୀ ମୂଳଧନ ନେଇ କାର୍ଯ୍ୟ କରୁଛି । ଆମ ସମବାୟର ଋଣ ଅନୁଷ୍ଠାନମାନେ ମୋଟ ଋଣର ପ୍ରାୟ ୫୦ ପ୍ରତିଶତ ଋଣ ପ୍ରଦାନ କରିଛନ୍ତି ଏବଂ କୃଷିର ଉନ୍ନତିରେ ମୋଟ ରାସାୟନିକ ସାରର ୪୦ ପ୍ରତିଶତ ବଣ୍ଟନ କରିପାରିଛନ୍ତି । ସମବାୟ ସ୍ତରରେ ଚିନି ଉତ୍ପାଦନ ମୋଟ ଉତ୍ପାଦନର ପ୍ରାୟ ୬୦ ପ୍ରତିଶତ ଓ ହସ୍ତତନ୍ତ ରହିଛି ୫୫ ପ୍ରତିଶତ । ଆଜି ପାଇଁ ସମବାୟର କାର୍ଯ୍ୟକାରୀ ସୀମା ଶତପ୍ରତିଶତ ଗ୍ରାମର ପାଖାପାଖି ୭୫ ଶତାଂଶ ପରିବାରକୁ ସଂପ୍ରସାରିତ ହୋଇପାରିଛି । ଓଡ଼ିଶାର କୃଷିଭିତ୍ତିକ ଅର୍ଥନୀତିର ବିକାଶରେ ସମବାୟର ଭୂମିକା ଉଲ୍ଲେଖନୀୟ । ୧୯୬୯ରେ ବ୍ୟାଙ୍କ ଜାତୀୟକରଣ, ୧୯୭୮ରେ ଗ୍ରାମ୍ୟ ବ୍ୟାଙ୍କମାନଙ୍କର ଗଠନ ସମବାୟ କୃଷିଋଣ ଅନୁଷ୍ଠାନମାନଙ୍କୁ ପ୍ରବଳ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ କରାଇଛି । ଏହାସହ ବିମୁକ୍ତ ଅର୍ଥନୀତି ତଥା ଜଗତିକରଣ ପ୍ରକ୍ରିୟାଜନିତ ଅର୍ଥନୈତିକ ସଂସ୍କାର ଏହି ପ୍ରତିଦ୍ୱନ୍ଦିତାକୁ ଆହୁରି ତୀବ୍ର କରିଦେଇଛି । ଏ କ୍ଷେତ୍ରରେ ଗ୍ରାମାଞ୍ଚଳରେ କାର୍ଯ୍ୟ କରୁଥିବା ୯୨ ହଜାରରୁ ଊର୍ଦ୍ଧ୍ୱ ପ୍ରାଥମିକ କୃଷିଋଣ ସମବାୟ ସମିତି, ଜିଲ୍ଲାସ୍ତରରେ ୩୭୦ଟି କେନ୍ଦ୍ର ସମବାୟ ବ୍ୟାଙ୍କ ଏବଂ ରାଜ୍ୟସ୍ତରରେ କାର୍ଯ୍ୟରତ ୩୦ ଗୋଟି ରାଜ୍ୟ ସମବାୟ ବ୍ୟାଙ୍କ ଦେଶରେ ନିଜସ୍ୱ ପ୍ରାସଙ୍ଗିକତାକୁ ବଳବତ୍ତର ରଖିବା ପାଇଁ ଏବେ ଆହ୍ୱାନର ସମ୍ମୁଖୀନ । ଆମ ରାଜ୍ୟ ଓଡ଼ିଶାରେ ସମବାୟ ତିନିସ୍ତରୀୟ କୃଷିଋଣ ଯୋଜନାରେ ୨୭୬୦ଟି ପ୍ରାଥମିକ କୃଷିଋଣ ସମବାୟ ସମିତି ୧୭ଟି କେନ୍ଦ୍ର ସମବାୟ ବ୍ୟାଙ୍କ ଏବଂ ଶୀର୍ଷର ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ନାବାର୍ଡ଼ଠାରୁ ଅର୍ଥ ଆଣି ରାଜ୍ୟର କୃଷକମାନଙ୍କୁ ଋଣ ପ୍ରଦାନ କରୁଛନ୍ତି । ବର୍ତ୍ତମାନ ଗ୍ରାମାଞ୍ଚଳରେ ଆବଶ୍ୟକ ହେଉଥିବା ଫସଲ ଋଣର ୭୦ ପ୍ରତିଶତ ପ୍ରାୟ ସମବାୟ ପ୍ରତିଷ୍ଠାନମାନେ ହିଁ ଯୋଗାଉଛନ୍ତି । ଏବେ ଏହା ଗାଁଗହଳିରେ ଅର୍ଥ ଲଗାଣରେ କୃଷକମାନଙ୍କ ଆତ୍ମାଭଳି କାର୍ଯ୍ୟ କରିବାରେ ଲାଗିଛି । ସମବାୟ କ୍ଷେତ୍ରରେ ଅନ୍ତରାୟ ହେଉଥିବା ରାଜନେତାଙ୍କ ହସ୍ତକ୍ଷେପ, ପ୍ରିୟାପ୍ରୀତି ତୋଷଣ, ତିନିସ୍ତରୀୟ ପରିଚାଳନାରୁ ସ୍ପଷ୍ଟ ଚଡ଼ାସୁଧ, ଋଣ ଅସୁଲରେ ଶିଥିଳତା, ବକେୟା ବୃଦ୍ଧି ଓ ଅଗତିଶୀଳ ପରିସଂପତ୍ତିଗୁଡ଼ିକରୁ ଉଚ୍ଛେଦ କରାଯାଇ ପାରିଲେ, ସାମାଜିକ ଓ ଅର୍ଥନୈତିକ ଜୀବନଚର୍ଯ୍ୟାରେ ସମବାୟ ଏକ ସର୍ବୋତ୍କୃଷ୍ଟ ପନ୍ଥା ଭାବରେ ଆଗାମୀ ଶତାବ୍ଦୀ ପାଇଁ କାର୍ଯ୍ୟ କରିବ ଏଥିରେ ସନ୍ଦେହ ନାହିଁ । ଭାରତ ସ୍ୱାଧୀନ ହେବା ପରଠାରୁ ସମବାୟ ଅନୁଷ୍ଠାନ ଗରିବ, ଖଟିଖିଆ, କୃଷକମାନଙ୍କ କଲ୍ୟାଣ ପାଇଁ ଅବିରତ କାର୍ଯ୍ୟ କରି ଆସୁଛି । ଯେତେବେଳେ ଧନ ଲୋଭୀ, ପରଜୀବୀ ଶୋଷଣକାରୀ ମହାଜନ, ସାହୁକାରମାନେ ଚାଷୀଙ୍କୁ ଋଣ ପ୍ରଦାନ ନାଁରେ ଭୀତତ୍ରସ୍ତ କରି ଦେଉଥିଲେ, ସେତେବେଳେ ସମବାୟ ହିଁ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଅଣ୍ଟାଭିଡ଼ି ଆଗକୁ ଆସିଥିଲା । ଆଉ ସେଦିନରୁ ଆଜିଯାଏ ଭାରତର କୃଷି ଜୀବିକାଧୀନ ଗରିବ କୃଷକମାନଙ୍କୁ ସମବାୟ ବ୍ୟାଙ୍କ ସେମାନଙ୍କ ପ୍ରାଥମିକ ସମିତିମାନଙ୍କ ଜରିଆରେ ସହଜକିସ୍ତି ଓ କମ୍ ସୁଧହାରରେ ଋଣ ଯୋଗାଇବାପାଇଁ ବଦ୍ଧପରିକର । ୧୯୫୧-୫୨ ମସିହାରେ କୃଷିକୁ ଆନୁଷ୍ଠାନିକ ଋଣ ଯୋଗାଣ ଥିଲା ମାତ୍ର ସାତ ଶତାଂଶ । ୧୯୬୧-୬୨ରେ ଏହି ମାତ୍ରା ୧୯ ଶତାଂଶ ହୋଇଥିଲାବେଳେ ୧୯୮୧ରେ ଦି ଅଲ୍ ଇଣ୍ଡିଆ କ୍ରେଡ଼ିଟ୍

**ଆନୁଷ୍ଠାନିକ କୃଷି ଋଣ ଯୋଗାଣରେ ସମବାୟ**

(କୋଟି ଟଙ୍କାରେ)

| ଆର୍ଥିକ ବର୍ଷ | ସମବାୟ ବ୍ୟାଙ୍କ | ବାଣିଜ୍ୟିକ ଓ ଆଂଚଳିକ ଗ୍ରାମ୍ୟବ୍ୟାଙ୍କ | ସମୁଦାୟ ଆନୁଷ୍ଠାନିକ ଋଣ | ସମବାୟ ଋଣର ଭାଗ ଶତାଂଶରେ |
|---|---|---|---|---|
| ୧୯୮୪-୮୫ | ୩୪୪୦ | ୨୭୯୦ | ୬୨୩୦ | ୫୫% |
| ୧୯୯୦-୯୧ | ୩୯୭୦ | ୫୦୧୦ | ୮୯୮୦ | ୪୪.୨% |
| ୧୯୯୯-୨୦୦୦ | ୧୮୪୩୦ | ୨୬୧୮୦ | ୪୪୬୧୦ | ୪୧.୩% |
| ୨୦୦୦-୦୧ | ୨୨୭୧୦ | ୨୮୭୫୦ | ୫୧୪୬୦ | ୪୪.୩% |
| ୨୦୦୧-୦୨ | ୨୭୦୮୦ | ୩୯୬୯୦ | ୬୪୦୦୦ | ୪୨.୨% |
| ୨୦୦୨-୦୩* | ୩୫୧୧୦ | ୪୬୯୬୦ | ୮୨୦୭୦ | ୪୩% |

ଆଣ୍ଡ ଇନ୍‌ଭେଷ୍ଟମେଣ୍ଟ ସର୍ଭେର ଆକଳନରୁ ଏହା ଏକ ଆଖିଦୃଶିଆ ଭାଗ ପ୍ରାୟ ୬୩ ଶତାଂଶକୁ ବୃଦ୍ଧି ପାଇପାରିଥିଲା । ଏଥିରେ କେବଳ ସମବାୟର ଋଣ ଯୋଗାଣ ଅଂଶ ଥିଲା ୩୦ ଶତାଂଶରୁ ଅଧିକା । ରିଜର୍ଭ ବ୍ୟାଙ୍କର ନାବାର୍ଡ଼ ପ୍ରତିଷ୍ଠା ପରେ ସମବାୟର ତ୍ରିସ୍ତରୀୟ ଋଣ ପ୍ରଦାନ ସଂସ୍ଥା କାର୍ଯ୍ୟ କରୁଛି । ୧୯୫୦-୫୧ ବେଳେ ଗ୍ରାମାଞ୍ଚଳ କୃଷିଋଣ ଆବଶ୍ୟକତାକୁ ମାତ୍ର ୩.୩ ଶତାଂଶ ମାତ୍ର ପୂରଣ କରିଥିବା ସମବାୟ ୧୯୮୪-୮୫ ବେଳକୁ ୩୪୪୦ କୋଟି ଟଙ୍କାର କୃଷି ଋଣ ଲଗାଣ କରି ସମସ୍ତ ଆନୁଷ୍ଠାନିକ ଋଣ ଯୋଗାଣର ଏକ ବଡ଼ଭାଗ ୫୫ ଶତାଂଶରୁ ଅଧିକା ଋଣ ଲଗାଣ କରିଛି । ପରବର୍ତ୍ତୀ ସମୟରେ ଆଂଚଳିକ ଗ୍ରାମ୍ୟବ୍ୟାଙ୍କ୍ ଓ ବାଣିଜ୍ୟିକ ବ୍ୟାଙ୍କ୍‌ମାନଙ୍କୁ କୃଷିଋଣ ପ୍ରଦାନ କରିବା ପାଇଁ ଦିଆଯାଇଥିବା ରିଜର୍ଭ ବ୍ୟାଙ୍କର ନିର୍ଦ୍ଦେଶାନୁସାରେ କୃଷିଋଣ ପ୍ରଦାନରେ ସେମାନଙ୍କ ମାତ୍ରା କିଛିଟା ବୃଦ୍ଧି ପାଇଥିଲେ ମଧ୍ୟ ସମବାୟର ଋଣ ପ୍ରଦାନର ପତିଆରା ଏ'ଯାଏ କମ୍ ହୋଇନି ବରଂ ଗ୍ରାମାଞ୍ଚଳ ଋଣ ପ୍ରଦାନରେ ଆଗରେ ହିଁ ରହିଛି । ୧୯୯୦-୯୧ରେ ସମବାୟ ସଂସ୍ଥାମାନେ ସମସ୍ତ କୃଷିଋଣର ୪୪ ଶତାଂଶ ପ୍ରଦାନ କରିଥିଲାବେଳେ ଗଲା ୨୦୦୨-୦୩ରେ ଏହାର ପରିମାଣ ୪୩ ପ୍ରତିଶତ ରହିଥିଲା । କୃଷିଋଣରେ ସମବାୟର ତ୍ରିସ୍ତରୀୟ ପରିଚାଳନା ବାଣିଜ୍ୟିକ ଓ ଗ୍ରାମ୍ୟ ବ୍ୟାଙ୍କ୍‌ମାନଙ୍କଠାରୁ କିଛିଟା ଅଧିକା ସୁଧ, ରାଜନୈତିକ ହସ୍ତକ୍ଷେପ ଋଣ ଛାଡ଼ ଓ ଋଣ ଆଦାୟରେ କେତେକ କୋହଳ ମନୋଭାବ ସମବାୟ ଅନୁଷ୍ଠାନଗୁଡ଼ିକର ମେରୁଦଣ୍ଡକୁ ଦୁର୍ବଳ କରି ଦେଉଛି । ନଚେତ୍ ସମବାୟ ଏକ ଚୀର କଲ୍ୟାଣକାରୀ ଅନୁଷ୍ଠାନ ।

ବାଣିଜ୍ୟ ବିଭାଗ,
ଆସିକା ବିଜ୍ଞାନ ମହାବିଦ୍ୟାଳୟ
ଆସିକା- ୭୬୧୧୧୧, ଗଂଜାମ

# ରାଜ୍ୟର ଶିଳ୍ପ ସମୃଦ୍ଧିରେ ଟାଟା ସାମିଲ

ରାଜ୍ୟରେ ଇସ୍ପାତ, ପର୍ଯ୍ୟଟନ ଓ ଆଇ.ଟି. ଶିଳ୍ପ ପ୍ରତିଷ୍ଠା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓ ଟାଟା କମ୍ପାନୀର ଅଧ୍ୟକ୍ଷ ରତନ ଟାଟାଙ୍କ ଉପସ୍ଥିତିରେ ନଭେମ୍ବର ୧୭ ତାରିଖ ଦିନ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଅଛି । ଉକ୍ତ ଚୁକ୍ତିନାମା ଅନୁଯାୟୀ ଟାଟାର ଡୁବୁରୀଠାରେ ୬ ମିଲିୟନ ଟନ୍ ବିଶିଷ୍ଟ ସମନ୍ୱିତ ଇସ୍ପାତ କାରଖାନା ପ୍ରତିଷ୍ଠା କରିବ । ଉକ୍ତ କାରଖାନାରେ ୧୫ ହଜାର ୪୦୦ କୋଟି ଟଙ୍କା ବିନିଯୋଗ କରାଯିବ ଏବଂ ୨୦୦୮ ମସିହା ସୁଦ୍ଧା ଏହା କାର୍ଯ୍ୟକ୍ଷମ ହେବ । ଏଥିପାଇଁ ରାଜ୍ୟ ସରକାର ଡୁବୁରୀଠାରେ ୨୦୦୦ ଏକର ଜମି ଯୋଗାଇ ଦେଇଛନ୍ତି । ଏତଦ୍‌ବ୍ୟତୀତ ଟାଟା କନସଲ୍‌ଟାନ୍ସି ସର୍ଭିସ ଭୁବନେଶ୍ୱରଠାରେ ଏହାର ସଫ୍ଟୱେର୍ ଡେଭେଲପ୍‌ମେଣ୍ଟ ସେଣ୍ଟର ମଧ୍ୟ ପ୍ରତିଷ୍ଠା କରିବ ଏବଂ ଏଥିରେ ପ୍ରଥମ ପର୍ଯ୍ୟାୟରେ ୧୦୦୦ ଜଣ ଲୋକ କାମ କରିବାର ସୁଯୋଗ ପାଇବେ । ଏଥିସହିତ ଚିଲିକା, ପୁରୀ ଏବଂ କୋଣାର୍କ ମଧ୍ୟରେ ପର୍ଯ୍ୟଟନର ବିକାଶ ପାଇଁ ଟାଟା କମ୍ପାନୀ ଏକ କନ୍‌ସେପ୍ଟ ପ୍ଲାନ ପ୍ରସ୍ତୁତ କରିବ । ଭୁବନେଶ୍ୱର, ପୁରୀ, କୋଣାର୍କ ଓ ପାରାଦ୍ୱୀପରେ ହୋଟେଲ ପ୍ରତିଷ୍ଠା ପାଇଁ ମଧ୍ୟ ଏହି ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଅଛି ।

ସୌଜନ୍ୟ : ଗବେଷଣା ଓ ତଥ୍ୟ ସୂଚନା ଶାଖା

# ଅତୀତ ଓଡ଼ିଶାର ଭାଗବତଘର : ସମବାୟ ଆନ୍ଦୋଳନର ଅନ୍ତୁଡିଶାଳ

ପଙ୍କଜ ସାହୁ

ଓଡ଼ିଆର ଅତିପ୍ରିୟ ଧର୍ମଗ୍ରନ୍ଥ ତଥା ପବିତ୍ର ଭକ୍ତିଗ୍ରନ୍ଥ ଓଡ଼ିଆ ଭାଗବତର ସାମୂହିକ ପାଠ ବିଶେଷତଃ ଗାଁରେ ଭାଗବତ ପାରାୟଣ, ଭାଗବତ ସପ୍ତା, ହରିହାଟ ପ୍ରଭୃତି ଭାଗବତ କୈନ୍ଦ୍ରିକ ବିଭିନ୍ନ ସାଂସ୍କୃତିକ କର୍ମାନୁଷ୍ଠାନ ନିମିତ୍ତ ସାର୍ବଜନୀନ ଆଗ୍ରହାତିଶଯ୍ୟ ଏବଂ ଭାଗବତ ଆବେଗରୁ ଗ୍ରାମୀଣ ଓଡ଼ିଆ ନିଜ ନିଜ ଗାଁରେ ଭାଗବତ ଘର ନାମରେ ଏକ ସ୍ୱତନ୍ତ୍ର ଗୃହ ନିର୍ମାଣ ପୂର୍ବକ ସେଠାରେ ଜଗନ୍ନାଥ ଦାସକୃତ ଓଡ଼ିଆ ଭାଗବତ ପୋଥିକୁ ଦେବତା ସ୍ୱରୂପରେ ପୂଜାର୍ଚ୍ଚନା ମାଧ୍ୟମରେ ଏକ ନୂତନ ସଂସ୍କୃତିର ଭିତ୍ତି ସ୍ଥାପନ କରିଥିଲେ । ଓଡ଼ିଆ ସଂସ୍କୃତି, ପରମ୍ପରା, ଭାଷା ସାହିତ୍ୟ ତଥା ଧର୍ମଧାରଣା ରୂପକ ମହାଆଦର୍ଶର କୀର୍ତ୍ତିସ୍ତମ୍ଭ ରୂପେ ପ୍ରାଣ ପ୍ରତିଷ୍ଠା ହୋଇଥିବା ଏହି ଭାଗବତ ଘର ସବୁ ଏକ ଏକ ସାମାଜିକ ଅନୁଷ୍ଠାନ ଓ ସାଂସ୍କୃତିକ ପୀଠ ରୂପେ ତତ୍କାଳୀନ ଜନଜୀବନକୁ ବେଶ ପ୍ରଭାବିତ କରିଥିଲା । ଏହି ଭାଗବତଘରର ବହୁମୁଖୀ କାର୍ଯ୍ୟଧାରା ମଧ୍ୟରେ ଅନ୍ତଃସଲିଳା ଫଲ୍‌ଗୁ ସଦୃଶ ଉଜ୍ଜୀବିତ ରହିଥିବା ସମବାୟ ଚେତନା ସମ୍ବନ୍ଧରେ ଆଲୋକପାତ କରିବା ଉଦ୍ଦିଷ୍ଟ ପ୍ରବନ୍ଧର ମୁଖ୍ୟ ଉପଜୀବ୍ୟ ଅଟେ ।

ସାଧାରଣତଃ ପରିଣତ ବୟସର ବାନପ୍ରସ୍ଥାଶ୍ରୟୀ ପ୍ରୌଢ଼ମାନେ ଏହି ଭାଗବତଘର ପ୍ରତିଷ୍ଠା ପୂର୍ବକ ଏହାର ରକ୍ଷଣାବେକ୍ଷଣ ତଥା ପରିଚାଳନାଗତ ଦାୟିତ୍ୱ ନିର୍ବାହ କରୁଥିଲେ । ପୁନଶ୍ଚ ଏଥିସହିତ ସଂଲଗ୍ନ ଥିଲେ ଗାଁର ସରଳ, ନିରୀହ ସର୍ବୋପରି ସ୍ମୃତିଶାଣିତ ମଣିଷଗୁଡ଼ିଏ । ସେମାନେ ଗଢ଼ିଥିଲେ ଲୋକ ସଂସ୍କୃତିର ଏହି ମହାନ୍ ଲୋକ ଅନୁଷ୍ଠାନଗୁଡ଼ିକୁ । ସେହି ପରିପ୍ରେକ୍ଷୀରେ ଏ ଭାଗବତଘର ଥିଲା ସମସ୍ତ ଗ୍ରାମବାସୀଙ୍କର କୋଠଘର । ଏ ଘରେ ଯେପରି ସମସ୍ତଙ୍କର ସମାନ ଅଧିକାର ଥିଲା, ସେହିପରି ସମାନ କର୍ତ୍ତବ୍ୟ ମଧ୍ୟ ରହିଥିଲା । ଏହି କର୍ତ୍ତବ୍ୟକୁ ସମସ୍ତେ ସେବା ତ୍ୟାଗ ମନୋଭାବ ନେଇ ଆନନ୍ଦରେ ପାଳନ କରୁଥିଲେ । ଭାଗବତଘର ଛପରବନ୍ଦି ପାଇଁ ପ୍ରତିବର୍ଷ ଯଥାସମୟରେ ଚାଷଜମି ଥିବା ଲୋକ ଛଣ, ବାଉଁଶବୁଦା ଥିବା ଲୋକ ବତା, ବାଉଁଶ ପ୍ରଭୃତି ଯୋଗାଇ ଦେଉଥିଲେ । ଭୂମିହୀନ ଲୋକେ ଆବଶ୍ୟକ ଶ୍ରମ ଯୋଗାଇ ଦେବା ସହିତ ଛପର ଜାଣିଥିବା ଛପରିଆମାନେ ଭାଗବତଘର ଛପର କରି ଦେଉଥିଲେ । ଘର ଛପରଠୁ ଆରମ୍ଭକରି ଲିପାପୋଛା ପର୍ଯ୍ୟନ୍ତ ସକଳ କାମ ପାଇଁ କାହାରିକୁ କିଛି ବରାଦ କରିବାକୁ ପଡୁ ନଥିଲା । ଗାଁ ଲୋକେ ଯିଏ ଯାହା ବାଗରେ ଆନ୍ତରିକତାର ସହିତ ସବୁକାର୍ଯ୍ୟ କରି ଦେଇ ଯାଉଥିଲେ । ଭାଗବତଘରେ କେବେ ତାଲା ପଡୁନଥିଲା । ଏହାର ଦ୍ୱାର ସର୍ବଦା ସମସ୍ତଙ୍କ ପାଇଁ ଖୋଲା ରହୁଥିଲା । ଏ ଘରର ସମ୍ପତ୍ତି, ସମସ୍ତ ଗାଁବାଲାଙ୍କ କୋଠ ସମ୍ପତ୍ତି । ତେବେ ତାଲା ପଡ଼ିବ କାହିଁକି ? ଯଦି ନାଁକୁ ମାତ୍ର ତାଲାଟିଏ ଝୁଲୁଥିଲା, ତେବେ ତାହାର ଚାବି ସମସ୍ତେ ପାଇପାରିବା ଭଳି ସ୍ଥାନରେ ରହୁଥିଲା । ଯାହାର ଯେତେବେଳେ ଇଚ୍ଛା ହେଉଥିଲା, ସେ ଏହି ସମବାୟ ଅନୁଷ୍ଠାନ ଖୋଲି ପୋଥି ପଢୁଥିଲା/ପୋଥି ଉତାରୁଥିଲା/ବାଣିକାଟୁ ଥିଲା/ମସିଣା ବୁଣୁଥିଲା ଅଥବା କୀର୍ତ୍ତନ ଅଭ୍ୟାସ କରୁଥିଲା ।

ଏକଦା ଭାଗବତଘର ଥିଲା ଗାଉଁଲି ଓଡ଼ିଆଙ୍କର ସାନ୍ଧ୍ୟ ମିଳନସ୍ଥଳୀ । ସନ୍ଧ୍ୟାର ଅବ୍ୟବହିତ ପୂର୍ବରୁ ଭାଗବତଘରମାନଙ୍କରେ ଆଶା, ବିଶ୍ୱାସ, ଆନନ୍ଦର ଦୀପଟିମାନ ଜଳି ଉଠୁଥିଲା । ଗାଁରେ ସଂଜ ନଇଁଲେ ପଲ୍ଲୀଗୃହିଣୀ ଶୁଦ୍ଧଶୌଚ ହୋଇ ଘରେ ଓ ବୃନ୍ଦାବତୀ ସମୀପରେ ସଂଜବତୀ ଜାଳି ଦେଉଥିଲେ । ଠିକ୍ ଏତିକିବେଳେ ଭାଗବତଘରେ ଆରତି ଘଣ୍ଟ ବଜାଇ ସଂଧ୍ୟା ଆଗମନୀକୁ ସ୍ୱାଗତ କରାଯାଉଥିଲା । ଭାଗବତଘରୁ ଉଦ୍‌ଘୋଷିତ ଘଣ୍ଟଧ୍ୱନି ଶୁଣି ଦିନସାରା ମାଟି ସଂଗେ ମାଟି ହୋଇ ହାଡ଼ଭଙ୍ଗା ଖଟଣୀ ଖଟୁଥିବା ଶ୍ରମକ୍ଳାନ୍ତ ଅଥଚ ଧର୍ମପ୍ରାଣ ଓଡ଼ିଆମାନେ ହସ୍ତପଦ ଧୌତପୂର୍ବକ ଶୁଦ୍ଧବସ୍ତ୍ର ପରିଧାନ କରି, କାନ୍ଧରେ ପଖାଳ କରିଆ ଖଣ୍ଡେ ପକାଇ, ମୁଣ୍ଡବାଳରେ ଆଙ୍ଗୁଳି ଚଳାଇ ଚଳାଇ ଶାନ୍ତି ଟିକିଏ ପାଇବା ଆଶାରେ ଜାତିବର୍ଣ୍ଣ ନିର୍ବିଶେଷରେ ସମସ୍ତେ ସେଠାରେ ରୁଣ୍ଡ ହୋଇଯାଉଥିଲେ । ମହିଳାମାନେ ଧୂପ, ଦୀପ, ଫୁଲ, ତୁଳସୀ ଅଥବା ଭୋଗଡାଲା ଫୁଲମାଳ ନେଇ ସେଠାରେ ପହଞ୍ଚି ଯାଉଥିଲେ । ପୂଜାରୀ ଫୁଲ ତୁଳସୀରେ ଭାଗବତ ଠାକୁରଙ୍କୁ ସଜେଇବା ପରେ ଝୁଣାଦୀପ ବାସ୍ନାରେ ସମଗ୍ର ବାତାବରଣ ମହକି ଉଠୁଥିଲା । ଏକାବେଳକେ ଖୋଳ, କରତାଳ, ଘଣ୍ଟ, ଶଙ୍ଖ ବାଜି ଠାକୁରଙ୍କୁ ସନ୍ଧ୍ୟା ଆଳତି କରାଯାଉଥିଲା ।

ତତ୍‌ପରେ ପୁରାଣ ପଣ୍ଡା ଭାଗବତ ସହିତ ଅନ୍ୟାନ୍ୟ ପୁରାଣ ସବୁ ପାଠ କରୁଥିଲେ । ଭାଗବତ ପାଠ ପରେ ପାରମ୍ପରିକ ବଉଳି ଉଖୁଡ଼ା ଲାଗି କରାଯାଇ ସମସ୍ତେ ବାଣ୍ଟିକୁଣ୍ଟି ପ୍ରସାଦ ପାଉଥିଲେ । ଭାଗବତ ଶ୍ରବଣ ସହିତ ବେଳେ ବେଳେ ଏଠାରେ ସମ୍ବାଦ ପରିବେଷଣ/ବିନିମୟ ହେଉଥିଲା । ଇତ୍ୟବସରରେ ପଡ଼ିଶା ଗାଁ ତଥା ନିକଟବର୍ତ୍ତୀ ଅଞ୍ଚଳରେ ଘଟି ଯାଇଥିବା କୌଣସି ବିଶେଷ ଘଟଣା-ଅଘଟଣ ସମ୍ବନ୍ଧରେ ଆଲୋଚନା କରାଯାଇ ଏହାର ଖରାପ ଦିଗ ପ୍ରତି ସମସ୍ତଙ୍କୁ ସତର୍କ/ସଚେତନ କରାଇ ଦିଆଯାଉଥିଲା । ଏହି ସମୟରେ ଭାଗବତଘର ଏକ ସୂଚନା କେନ୍ଦ୍ରରେ ପରିଣତ ହୋଇଯାଉଥିଲା । ମଝିରେ ମଝିରେ ପଣ୍ଡିତମାନଙ୍କୁ ଆମନ୍ତ୍ରଣ କରି ଏଠାରେ ଭାଗବତ ସଭା ଆୟୋଜନ କରାଯାଉଥିବାରୁ ଲୋକମାନେ ନୀତିମୟ ଜୀବନଯାପନରେ ଅଭ୍ୟସ୍ତ ହେବା ସହିତ ସମାଜ ଶୃଙ୍ଖଳିତ ରହୁଥିଲା ।

ଅତୀତରେ ଓଡ଼ିଆ ଜନଜୀବନ ତଥା ଉତ୍କଳୀୟ ସଂସ୍କୃତିର ମୁଖଶାଳା ଏହି ଭାଗବତଘର ଥିଲା ଆମ ଆଧ୍ୟାତ୍ମିକ ସଂସ୍କୃତି ଓ ଧାର୍ମିକ ପରମ୍ପରାର ଏକ ଏକ ମହାନ ତୀର୍ଥ । ଧାର୍ମିକ ବାତାବରଣ ଓ ସାଂସ୍କୃତିକ ଜାଗରଣର ସାରସ୍ୱତ ପୀଠ ରୂପେ ପରିଚିତ ଏହି ଭାଗବତ ଘର ଥିଲା ଗାଁଟି ଯାକର ପ୍ରାର୍ଥନା ଗୃହ / ଉପାସନା ପୀଠ । ଅତୀତ ଓଡ଼ିଶାର ଗ୍ରାମ୍ୟ ସଂହତିର ମହାନପୀଠ ଏହି ଭାଗବତଘର ଗ୍ରାମୀଣ ଲୋକମାନଙ୍କୁ ସଂଗଠିତ ଓ ଏକଜୁଟ କରି ରଖୁଥିଲା । ଏହା ସରଳ ଗାଉଁଲି ଓଡ଼ିଆଙ୍କ ମନରୁ ଯାବତୀୟ ଭେଦ ବିଦ୍ୱେଷ ଭାବ ଦୂର କରି ସମସ୍ତଙ୍କ ମଧରେ ସାମାଜିକ ଐକ୍ୟ, ଭାଗବତ ସଂହତି ତଥା ସମନ୍ୱୟ ଭାବ ସୃଷ୍ଟି କରିପାରିଥିଲା । ଭାଗବତ ଗାଁ ଗହଳର ଧନୀ, ଗରିବ, ଉଚ୍ଚନୀଚ, ଶିକ୍ଷିତ ଅଶିକ୍ଷିତ, ଯୁବକ-ବୃଦ୍ଧ ନିର୍ବିଶେଷରେ ସମସ୍ତଙ୍କୁ ସମଭାବାପନ୍ନ କରି ଏକତାର ରଜ୍ଜୁରେ ଐକ୍ୟବଦ୍ଧ କରି ରଖିପାରିଥିଲା । ତତ୍କାଳରେ ଭାଗବତଘରକୁ କେନ୍ଦ୍ର କରି ଗାଁ ସଂଗଠିତ ରହୁଥିଲା । ଭାଗବତଘରେ ବର୍ଷର ବିଭିନ୍ନ ସମୟରେ ପାଳିତ ହେଉଥିବା ଭାଗବତ ଜନ୍ମ, ଭାଗବତ ବଢ଼ା, ଭାଗବତ ସପ୍ତା ପ୍ରଭୃତି ନୈମିତ୍ତିକ କାର୍ଯ୍ୟକ୍ରମ ସମସ୍ତ ଗାଁ ଲୋକଙ୍କ ମଧରେ ସହଯୋଗ ସ୍ଥାପନ କରିବା ସହିତ ସମାନତାର ବାର୍ତ୍ତା ସ୍ୱତଃସ୍ଫୁର୍ତ୍ତ ଭାବେ ସଞ୍ଚରିତ ହୋଇପାରୁଥିଲା । ଏତାଦୃଶ ସବୁ ଉତ୍ସବାନୁଷ୍ଠାନ ଅବସରରେ ସମସ୍ତେ ସ୍ୱସ୍ୱ ସାମର୍ଥ୍ୟ ଅନୁସାରେ ସହଯୋଗ କରୁଥିଲେ । ଏ କ୍ଷେତ୍ରରେ କାହା ସହିତ କାହାର ଅମେଳ ନଥିଲା । ସମସ୍ତେ ହର୍ଷୋଲ୍ଲାସରେ ମିଳିମିଶି ଜଂଘ ଉପରେ ଜଂଘ ପକାଇ ଏକତ୍ର ବସି ପଂକ୍ତିଭୋଜନ କରୁଥିଲେ । ଅତଏବ ଭାଗବତଘର ସମସ୍ତଙ୍କୁ ସମବାୟ ସୂତ୍ରରେ ସାମାଜିକ ସଂପ୍ରୀତିରେ ବାନ୍ଧି ରଖୁଥିଲା । ଗାଁର ସମସ୍ତେ ସେହ୍ନ ମମତାପୂର୍ଣ୍ଣ ଭ୍ରାତୃଭାବରେ ଆବଦ୍ଧ ହୋଇ ପରସ୍ପରର ସହାୟତା କରୁଥିଲେ । ଗାଁରେ କେହି ବାଧିକି ପଡ଼ିଲେ ତା'ର ସେବାଶୁଶ୍ରୂଷା/ଚିକିତ୍ସା ଦାୟିତ୍ୱ ସମସ୍ତଙ୍କର ଥିଲା । କେହି ମରିଗଲେ ସମସ୍ତେ ଅବିଳମ୍ବେ ତା'ର ଶବସତ୍କାର ତଥା ଶୁଦ୍ଧିକର୍ମରେ ଆନୁଷଙ୍ଗିକ ସହଯୋଗ କରୁଥିଲେ । ଜଣଙ୍କର ଦୁଃଖ ଥିଲା ସମସ୍ତଙ୍କର ଦୁଃଖ, ଜଣଙ୍କର ସୁଖରେ ଅନ୍ୟ ସମସ୍ତେ ସନ୍ତୋଷ ଅନୁଭବ କରୁଥିଲେ । ସମବାୟ ଚେତନାର ଏବଂ ବିଧ ଅନ୍ତରଙ୍ଗ ଆନ୍ତରିକତାର ଦୃଷ୍ଟାନ୍ତ ତତ୍କାଳରେ ଓଡ଼ିଶା ବ୍ୟତୀତ ଅନ୍ୟ କୁତ୍ରାପି ପରିଦୃଷ୍ଟ ହୁଏ ନାହିଁ ।

ଗ୍ରାମ୍ୟ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ରୂପେ ବିବେଚିତ ଉକ୍ତ ପୁରୁଣା କାଳିଆ ଭାଗବତଘରଗୁଡ଼ିକ ଥିଲା ଗାଉଁଲି ଓଡ଼ିଆଙ୍କର ପ୍ରଧାନ ବିଦ୍ୟାମନ୍ଦିର । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ ଜ୍ଞାନ ବିଜ୍ଞାନର ବିକାଶ ନିମନ୍ତେ ଏହା ଗ୍ରାମ୍ୟ ଶିକ୍ଷାଳୟ ରୂପେ କାର୍ଯ୍ୟ କରୁଥିଲା । ପୁରପଲ୍ଲୀର ବିଦ୍ୟାର୍ଥୀମାନଙ୍କ ପାଇଁ ଏହା ଥିଲା ପବିତ୍ର ଗୁରୁକୁଳାଶ୍ରମ । ପ୍ରତିଟି ଗାଉଁଲି ମଣିଷ ପିଲାବେଳେ ବିଦ୍ୟାରମ୍ଭ କରୁଥିଲା ଏହି ଭାଗବତଘରେ ଅନୁଷ୍ଠିତ ଗାଁ ଚାଟଶାଳୀରେ ମାଟିବଂଶ ଅବଧାନଙ୍କ ପାଖରେ । ପୁନଶ୍ଚ ଭାଗବତ ଘରେ କୀର୍ତ୍ତନ ଶିକ୍ଷା କରିବା ପାଇଁ ବ୍ୟବସ୍ଥା କରାଯାଉଥିଲା । ଗାଁର କୀର୍ତ୍ତନ ଓସ୍ତାଦ ଅଥବା ଅନ୍ୟକୌଣସି ଗ୍ରାମରୁ କୀର୍ତ୍ତନ ବିଶାରଦ ଆଣି ଆଗ୍ରହୀ ଯୁବକମାନଙ୍କୁ ଏଠାରେ କୀର୍ତ୍ତନ ପ୍ରଶିକ୍ଷଣ ଦିଆଯାଉଥିଲା । ଶରୀର ଚର୍ଯ୍ୟା ନିମିତ୍ତ କଳାଶିକ୍ଷାର ଆଖଡ଼ାଘର ଥିଲା ଅତୀତର ଏହି ଭାଗବତଘର । ଗାଁର ଚଉଡ଼ା ଚଉଡ଼ା ଛାତି, କୁନ୍ଦିଲା କୁନ୍ଦିଲା ବାହୁ ବିଶିଷ୍ଟ ମେହନତୀ ମଣିଷର କୁସ୍ତି କସରତ, ଖଣ୍ଡାବୁଲା, ମୁଦ୍‌ଗର ବୁଲା ପ୍ରଭୃତି ଶିକ୍ଷା କରିବା ପାଇଁ ଶକ୍ତିଚର୍ଚ୍ଚାର ତାଲିମ କେନ୍ଦ୍ର ଜାଗାଘର ରୂପେ ଏହି ଭାଗବତଘର ବ୍ୟବହୃତ ହେଉଥିଲା । ସର୍ବୋପରି ପ୍ରତ୍ୟହ ସନ୍ଧ୍ୟାରେ ଭାଗବତ ସମେତ ବିଭିନ୍ନ ଶାସ୍ତ୍ର ସାହିତ୍ୟ ଆଲୋଚନା ହେବା ଦ୍ୱାରା ଲୋକମାନେ ନୈତିକ ଜୀବନଯାପନ କରିବାକୁ ସକ୍ଷମ ହେଉଥିଲେ । ଫଳରେ ଭାଗବତଘର ଏକ ଲୋକଶିକ୍ଷା ଅନୁଷ୍ଠାନ ରୂପେ ମଫସଲି ଓଡ଼ିଆଙ୍କ ପାଇଁ ଏହା ଏକ ନୈଶବିଦ୍ୟାଳୟ/ପ୍ରୌଢ଼ ଶିକ୍ଷା କେନ୍ଦ୍ର ସ୍ୱରୂପ ନିରକ୍ଷର ଓଡ଼ିଆଙ୍କ ଉଭୟ ମାନସିକ ଓ ଦୈହିକ ଶକ୍ତି ଅର୍ଜନର ଅଭିନବ ଏକ ସମନ୍ୱୟ କ୍ଷେତ୍ର ତଥା ସମବାୟ ଅନୁଷ୍ଠାନ ରୂପେ ଏକ ବଳିଷ୍ଠ ଭୂମିକା ନିର୍ବାହ କରୁଥିଲା ।

ଗ୍ରାମାଞ୍ଚଳର ଭାଗବତଘର କେବଳ ଶିକ୍ଷାଳୟ ନଥିଲା ତତ୍‌ସହିତ ଏକ ଏକ ନ୍ୟାୟାଳୟ ରୂପେ ଏହାର ଅବଦାନ ଥିଲା ଅବିସ୍ମରଣୀୟ । ଆମର ପୂର୍ବସୁରୀମାନେ ଗାଁ କଥା ଗାଁରେ ତୁଟିବା ଉଚିତ ମନେକରି ଗାଁ ଭାଗବତ ଘରକୁ ନ୍ୟାୟ ମନ୍ଦିରରେ ପରିଣତ କରି ଦେଇଥିଲେ । ଗାଁ କଥା ବାହାରକୁ ଗଲେ ଗାଁର ମାନସମ୍ମାନରେ ଆଞ୍ଚ ଆସିବ ବୋଲି ହୃଦୟଙ୍ଗମ କରି ଭାଗବତ ଠାକୁରଙ୍କ ସମ୍ମୁଖରେ ଗ୍ରାମ୍ୟ ଜୀବନର ସର୍ବବିଧ କଳିତକରାଳ, ମାନମନାନ୍ତର, ମତାନ୍ତର ପ୍ରଭୃତି ସମସ୍ୟାର ସମାଧାନ କରି ଦେଉଥିଲେ । ଗାଁର ମୁଖିଆ ଧର୍ମାବତାର ରୂପେ ନିରପେକ୍ଷ ଭାବରେ ନିଷ୍ପତ୍ତି ଶୁଣାଇ ଦୋଷୀକୁ ସାମାନ୍ୟ ଅର୍ଥଦଣ୍ଡ କିମ୍ବା ଲଘୁ ଶାରୀରିକ ଦଣ୍ଡ ଅଥବା ଉଭୟ ଦଣ୍ଡରେ ଦଣ୍ଡିତ କରୁଥିଲେ । ତାଙ୍କର ରାୟକୁ ସମସ୍ତେ ନିର୍ବିବାଦରେ ସ୍ୱୀକାର

କରିବା ସହିତ ଅତୀତର ତିକ୍ତତା ଭୁଲି କୋଳାକୋଳି ହୋଇ ଭାଗବତ ଘରେ ଭୋଜିଭାତ କରି ପୁଣି ମିଳାମିଶା, ଦିଆନିଆ, କଥାବାର୍ତ୍ତା ସବୁକିଛି ସ୍ୱାଭାବିକ ଭାବେ ଚାଲୁଥିଲା । ଫଳତଃ ଭାଇ ଭାଇ ଭିତରେ ଭାଙ୍ଗି ଯାଇଥିବା ଘରକୁ ସଜାଡ଼ି ଦେଉଥିଲା, ତୁଟି ଯାଉଥିବା ସମ୍ପର୍କକୁ ଯୋଡ଼ି ଦେଉଥିଲା, ଫାଟି ଯାଉଥିଲା ମନସହ ମନକୁ ମିଶାଇ ଦେଉଥିଲା । ସର୍ବୋପରି ନିତିଦିନିଆ ଜୀବନଧାରାରେ ପାରସ୍ପରିକ ସମ୍ପର୍କକୁ ଛନ୍ଦି ଦେଉଥିଲା ଏହି ଭାଗବତଘର । ଏତଦ୍‌ବ୍ୟତୀତ ଗାଁ ଗାଁ ମଧ୍ୟରେ କୌଣସି ବାଦବିବାଦ ସଂଘଟିତ ହୋଇ ପରିସ୍ଥିତି ଜଟିଳ ହୋଇପଡ଼ିଲେ କୌଣସି ଏକ ଭାଗବତ ସମ୍ମୁଖରେ ମନୋନୀତ ଗ୍ରାମପଞ୍ଚ : ପଞ୍ଚପରମେଶ୍ୱର ରୂପେ ଏସବୁର ନିଷ୍ପତ୍ତି କରୁଥିଲେ । ଫଳରେ ସରଳ ଗ୍ରାମୀଣ ଜନତା କୋର୍ଟ କଚେରୀ ଦୌଡ଼ି ସର୍ବସ୍ୱାନ୍ତ ହେବାରୁ ରକ୍ଷା ପାଉଥିଲେ । ବିଳମ୍ବିତ ବିଚାରରେ ନ୍ୟାୟ ନିର୍ଦ୍ଧାରଣ ବିଡ଼ମ୍ବିତ ହେବା ସ୍ୱାଭାବିକ । ମାତ୍ର ଗ୍ରାମପଞ୍ଚ ଠିକ୍ ସମୟରେ ସବୁ ସମସ୍ୟା ସମାଧାନ କରି ଦେଉଥିଲେ । ଘଟଣା ଅନୁଧ୍ୟାନ ତଥା ମୁକ୍ତ ବିଚାର ଲାଗି ଏଠାରେ ପର୍ଯ୍ୟାପ୍ତ ସୁବିଧା ଥିବାରୁ ତତ୍କାଳରେ ଏହି ଭାଗବତ ଘରସବୁ ଗ୍ରାମ୍ୟ ନ୍ୟାୟାଳୟ ତଥା ଲୋକ ଅଦାଲତ ପାଲଟି ଯାଇଥିଲା । ଅତୀତ ଓଡ଼ିଶାର ଏହି ଭାଗବତ ଘର ହିଁ ଆଧୁନିକ ଗ୍ରାମପଞ୍ଚାୟତ/ପଞ୍ଚାୟତ ସମିତି ପ୍ରଭୃତି ସ୍ୱାୟତ୍ତଶାସନ ସଂସ୍ଥାର ଜନ୍ମଦାତା ଅଟେ । ସର୍ବୋପରି ଗାଁ ଗାଁ ମଧ୍ୟରେ ପାରସ୍ପରିକ ସଂହତି ତଥା ସାମାଜିକ ଐକ୍ୟ ପ୍ରତିଷ୍ଠା ନିମିତ୍ତ ବର୍ଷର ବିଭିନ୍ନ ସମୟରେ ଭାଗବତ ମେଳଣର ଆୟୋଜନ କରାଯାଉଥିଲା । ଦେବତା ଓ ମଣିଷର ମିଳନସ୍ଥଳ ଏହି ମେଳଣ । ମେଳାରେ ଲୋକମାନେ ଏକ ନିର୍ଦ୍ଦିଷ୍ଟ ଦିନରେ ଠାକୁରଙ୍କ ନିକଟକୁ ଯାଇ ମିଳିତ ହେଉଥିଲାବେଳେ, ମେଳଣରେ ମଣିଷଦ୍ୱାରା ସ୍ଥିରୀକୃତ ସ୍ଥାନରେ ଭାଗବତ ଠାକୁରମାନେ ବିଭିନ୍ନ ଗ୍ରାମରୁ ଆସି ସମବେତ ହେଉଥିବା ସ୍ଥାନରେ ଭକ୍ତ ଜନତା ରୁଣ୍ଡ ହୋଇଥାନ୍ତି । ଏହାଦ୍ୱାରା ଗାଁ ଗାଁ ମଧ୍ୟରେ ସହଯୋଗ, ସୌହାର୍ଦ୍ଦ୍ୟ ତଥା ସଦ୍‌ଭାବ ପ୍ରତିଷ୍ଠା ସହଜ ହୋଇଥିଲା ।

ଅତିଥି ପରାୟଣତା ଆମ ଧର୍ମ ସଂସ୍କୃତିର ଏକ ମହନୀୟ ଆଦର୍ଶ । ପରିବାରକୁ ଅତିଥିଟିଏ ଆସିଲେ ସମସ୍ତେ ଚଳଚଞ୍ଚଳ ହୋଇ ଉଠନ୍ତି । ଗୋଡ଼ ଧୋଇବାକୁ ପାଣି, ବସିବାକୁ ଆସନ ଦେଇ ତାଙ୍କ ଆଗମନକୁ ସ୍ୱାଗତ କରାଯାଇଥାଏ । ସେହିପରି ଅତୀତରେ ଗାଁର ଭାଗବତଘର ଅତିଥିଶାଳା ତଥା ଧର୍ମଶାଳା ରୂପେ ମଧ୍ୟ ବ୍ୟବହୃତ ହେଉଥିଲା । ଗ୍ରାମକୁ କେହି ସାଧୁସନ୍ଥ/ନାଗାସାଧୁ/ଜଗନ୍ନାଥଙ୍କ ପୂଜାପଣ୍ଡା/ଜାନୁ ଘଣ୍ଟିଆ/ମଙ୍ଗଳ ଘଣ୍ଟିଆ/ଚକୁଳିଆ ପଣ୍ଡା/ କେନ୍ଦରାଯୋଗୀ ସର୍ବୋପରି ଖଜଣା ଆଦାୟ ପାଇଁ କୌଣସି ସରକାରୀ ଅଧିକାରୀ ଆସିଲେ ସେ ସମଗ୍ର ଗ୍ରାମବାସୀଙ୍କ ଅତିଥି ହୋଇ ଏହିଠାରେ ହିଁ ସେମାନଙ୍କର ରହଣିର ପ୍ରବନ୍ଧ କରାଯାଉଥିଲା । ବିଶେଷତଃ ସନ୍ଧ୍ୟା ଆଗମନୀର ଅବ୍ୟବହିତ ପୂର୍ବରୁ କୌଣସି ପଥଚାରୀ/ବାଟୋଇ ଅଟକି ଗଲେ ସେ ନିଶ୍ଚିନ୍ତ ଭାବେ ଏଠାରେ ରହି ପାରୁଥିଲା । ଗ୍ରାମରେ କୌଣସି ଆଗନ୍ତୁକ ଉପବାସରେ ରାତିଯାପନ କଲେ କାଳେ ଗ୍ରାମର ଅମଙ୍ଗଳ ହେବ, ସେଥିଯୋଗୁଁ ଗ୍ରାମବାସୀମାନେ ଆତିଥେୟତା ପ୍ରଦର୍ଶନ ପୂର୍ବକ ଭାଗବତ ଘରେ ସେମାନଙ୍କର ରାତ୍ରିଭୋଜନର ଆୟୋଜନ କରୁଥିଲେ । ସମଗ୍ର ଭାରତରେ ଏତାଦୃଶ ଉଦାହରଣ ଅନ୍ୟତ୍ର ବିରଳ । ଏତଦ୍‌ବ୍ୟତୀତ ଏହି ଭାଗବତଘର ହେଉଛି ସମସ୍ତ ଗ୍ରାମବାସୀଙ୍କର । ତେଣୁ ଗାଁରେ ବିବାହ, ବ୍ରତ, ଶୁଦ୍ଧିକ୍ରିୟାରେ ଯୋଗଦେବାକୁ ଆସିଥିବା ବନ୍ଧୁବାନ୍ଧବ/କୁଣିଆଙ୍କ ପାଇଁ ସମ୍ପୃକ୍ତ ପରିବାରରେ ଯଦି ପର୍ଯ୍ୟାପ୍ତ ସୁବିଧା ନଥାଏ, ତେବେ ଏହି ଭାଗବତ ଘରେ ସେମାନଙ୍କ ରହିବା ଶୋଇବାର ବନ୍ଦୋବସ୍ତ କରାଯାଉଥିଲା । ଗାଁକୁ ପାଲା, ଦାସକାଠିଆ ପ୍ରଭୃତି ଲୋକ ନୃତ୍ୟକାରୀ ଦଳ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ ପାଇଁ ଆସିଲେ ସେମାନେ ମଧ୍ୟ ଏହି ଘରେ ଅବସ୍ଥାନ କରୁଥିଲେ ।

ଭାଗବତ ଘରର ବହୁମୁଖୀ କାର୍ଯ୍ୟର ସଫଳ ରୂପାୟନ ନିମିତ୍ତ ଗ୍ରାମବାସୀମାନେ କିଛି କିଛି ଚାନ୍ଦାଭେଦା ଦେଇ ସେହି ଅର୍ଥରେ ପ୍ରତ୍ୟେକ ଗାଁରେ ଭାଗବତ ଠାକୁରଙ୍କ ନାମରେ ଏକ ଏକ ସ୍ୱତନ୍ତ୍ର ସମବାୟ ପାଣ୍ଠି ଗଠନ କରାଯାଉଥିଲା । ଏଥିସହିତ ଗାଁର କୋଠ ଗଛମାଛକୁ କୁତଦେଇ/ନିଲାମକରି ସେଥିରୁ ସଂଗୃହିତ ଅର୍ଥ, ନ୍ୟାୟନିଷାପରେ ଦୋଷୀ ସାବ୍ୟସ୍ତ ଅପରାଧୀଠାରୁ ସାମର୍ଥ୍ୟ ଅନୁଯାୟୀ ଆଦାୟ ଜୋରିମାନା ସର୍ବୋପରି ଗ୍ରାମ ଶାସନ ମର୍ଯ୍ୟାଦା ଆଦାୟ ଅର୍ଥରେ ଏହି ପାଣ୍ଠିପୁଷ୍ଟ ହେଉଥିଲା । ବିଶେଷତଃ ଗାଁର ଅନାବାଦୀ ଭୂମିକୁ ସମସ୍ତେ ମିଳିମିଶି ଆବାଦୀ କରି ତାହାର ଉତ୍ପାଦନ ଗ୍ରାମର ଭାଗବତ କୋଠି/ ସମବାୟ କୋଠିରେ ମହଜୁଦ୍ ରହୁଥିଲା । ଗାଁରେ ଅନୁଷ୍ଠିତ ମେଳା ମଉଚ୍ଛବ, ପାରାୟଣ ଓ ହରିହାଟରେ ସଞ୍ଚିତ ଅର୍ଥ/ଶସ୍ୟ ବ୍ୟୟ ହେବା ସହିତ ଅବଶିଷ୍ଟ ସମସ୍ତଙ୍କ ହିତ ଉଦ୍ଦେଶ୍ୟରେ ବିନିଯୁକ୍ତ ହେଉଥିଲା । ଗ୍ରାମରେ କେହି ଅର୍ଥାଭାବର ସମ୍ମୁଖୀନ ହେଲେ ସେ ଭାଗବତଘର ସମବାୟ ପାଣ୍ଠିରୁ ଧନ/ଧାନ ଧାରକରଜ ନେଇ ସୁବିଧା ହେଲେ ଶୁଝି ଦେଉଥିଲା । ଠାକୁରଙ୍କ ଅମୋଣିହା ରୂପେ ବିବେଚିତ ଏହି ସମବାୟ ରଣ ନେଇ ଫାଙ୍କି ଦେବାର ଯୁ' କାହାର ନଥିଲା । କରଜ ଶୁଝି ନପାରିଲେ ନରକରେ ପଡ଼ିବାକୁ ହୁଏ ବୋଲି ସବୁରି ମନରେ ପ୍ରଚ୍ଛନ୍ନ ଭୟ ରହିଥିଲା । କେହି ରଣ ନଶୁଝି ମରିଗଲେ ତା'ର ଉତ୍ତରାଧିକାରୀ ମୃତକ ଆତ୍ମାର ଶାନ୍ତି ନିମିତ୍ତ ଏହି ରଣ ପରିଶୋଧ କରିବାକୁ ଅଗ୍ରାଧିକାର ଦେଉଥିଲା । ତେଣୁ ଏ ସମବାୟ ପାଣ୍ଠି ହଡ଼ପ ହେବାର ଆଶଙ୍କା ଆଦୌ ନଥିଲା । ସର୍ବୋପରି ଗାଁ ଭାଗବତ ଘରେ ଗ୍ରାମ୍ୟ ଅର୍ଥନୀତି ପରିଚାଳନାର ଏତାଦୃଶ ସର୍ବଜନାଦୃତ ବଳିଷ୍ଠ ବ୍ୟବସ୍ଥାର ପ୍ରଚଳନ ଫଳରେ ସରଳ ନିରୀହ ଗ୍ରାମବାସୀମାନେ ଅର୍ଥଲୋଲୁପୀ ସାହୁକାର/ମହାଜନଙ୍କ କବଳରେ ପଡ଼ି ରଣ ଭାରରେ ସର୍ବସ୍ୱାନ୍ତ ହେଉନଥିଲେ ।

ଓଡ଼ିଶା ଇଂରେଜ ଅଧିକୃତ ହେବା ପର୍ଯ୍ୟନ୍ତ ଭାଗବତ ଘର ଓଡ଼ିଆ ସଂସ୍କୃତି ପରମ୍ପରାର ରକ୍ଷାକବଚ ସ୍ୱରୂପ କାର୍ଯ୍ୟ କରି ଆସିଥିଲା । ପ୍ରାକ୍‌ସ୍ୱାଧୀନତା କାଳ ପର୍ଯ୍ୟନ୍ତ ଏହା ମଧ୍ୟ ଓଡ଼ିଶାର ଐତିହ୍ୟ, ଓଡ଼ିଆର ସ୍ୱାଭିମାନକୁ ଉଜ୍ଜୀବିତ କରି ରଖିଥିଲା । ମାତ୍ର ସ୍ୱାଧୀନୋତ୍ତର ସମୟରେ ଜନସାଧାରଣ ଆଧୁନିକ ଶିକ୍ଷାପ୍ରାପ୍ତ ହେବାପରେ ଓଡ଼ିଶାରେ ଭାଗବତ ଆନ୍ଦୋଳନ କ୍ରମଶଃ ଶିଥିଳ ହୋଇ ଏହାର ଅବକ୍ଷୟ ଘଟିଲା । ଆଧୁନିକ ବିଜ୍ଞାନର ଭୂୟୋବିକାଶ ଓ ପ୍ରଯୁକ୍ତିବିଦ୍ୟାର ଦ୍ରୁତ ପ୍ରସାର ସର୍ବୋପରି ସହରାଭିମୁଖୀ ମାନସିକତା ଯୋଗୁଁ ଗାଁର ଭାଗବତଘରଗୁଡ଼ିକ ଉପେକ୍ଷିତ ହୋଇପଡ଼ିଲା । ଏତଦ୍‌ବ୍ୟତୀତ ଭୋଟ ରାଜନୀତି ତଥା ନିର୍ବାଚନୀ ପେଞ୍ଚ ଯୋଗୁଁ ଭାଗବତଘରଗୁଡ଼ିକ ପାର୍ଟି ଅଫିସ୍, ଯୁବକସଂଘ ଓ କ୍ରିକେଟ କ୍ଲବରେ ରୂପାନ୍ତରିତ ହୋଇଗଲା । ଯେଉଁଠାରେ ଦିନେ ଗଣସମାବେଶ ହେଉଥିଲା କ୍ରମେ ତାହା କେତେଜଣଙ୍କ କବ୍‌ଜାରେ ରହି ନାନା ଅପକର୍ମର କେନ୍ଦ୍ର ପାଲଟିଗଲା । ଓଡ଼ିଶାରେ ସମବାୟ ଆନ୍ଦୋଳନର ସମସ୍ତ ସର୍ତ୍ତ ପୂରଣ କରୁଥିବା ଅତୀତର ସେହି ଭାଗବତଘର ଆଜି ହୃତ୍‌ସର୍ବସ୍ୱ ହୋଇପଡ଼ିଛି । ଏସବୁ ସତ୍ତ୍ୱେ ଚେନାଏ ପୁଣ୍ୟର ଫଳ ସଦୃଶ ଯେଉଁ କେତୋଟି ଭାଗବତଘର କର୍ପୂର ଉଡ଼ିଯାଇଥିବା ପେଡ଼ିସାଇତା ପାଟ ସଦୃଶ ତିଷ୍ଠି ରହିଥିଲା, ଗତ ୧୯୯୯ ମସିହାର ପ୍ରଳୟଙ୍କରୀ ବାତ୍ୟା ସେଗୁଡ଼ିକୁ ଚାଟି ସଫା କରିଦେଲା । ମହାତ୍ମା ଗାନ୍ଧୀଙ୍କ 'ଗ୍ରାମସ୍ୱରାଜ'ର ମୂଳାଧାର ରୂପେ ବିବେଚିତ ଓଡ଼ିଆର ଏହି ଭାଗବତଘରର ବିଲୋପ ସାଧନ ଯୋଗୁଁ ଓଡ଼ିଆର ନୈତିକ ମାନଦଣ୍ଡ ଦୁର୍ବଳ ହେବା ସହିତ ଅର୍ଥନୈତିକ ଅଧଃପତନ ଘଟିଲା । କ୍ରମେ ଓଡ଼ିଆ ତା'ର ପରିଚୟ ହରାଇ ବସିଲା । ଉତ୍କଳୀୟ ଧର୍ମସଂସ୍କୃତି, ଦର୍ଶନ, ଜୀବନଧାରାର ଯିଏ ଦିନେ ଥିଲା ଉଦ୍‌ଘୋଷକ, ଏକ ଅମୃତମୟ ପ୍ରତ୍ୟାଶା, ସଂହତି ପ୍ରତିଷ୍ଠାର ଦୃପ୍ତ ସଞ୍ଚାରକ, ସମବାୟ ଚିନ୍ତନର ପ୍ରମୂର୍ତ୍ତ ଅନୁଷ୍ଠାନ, ସେହି ଭାଗବତଘର ପରମ୍ପରା ଆଜି ଲୁପ୍ତ, ବିସ୍ମୃତ ପ୍ରାୟ । ଏହି ପରିପ୍ରେକ୍ଷୀରେ ଭାଗବତଘର ସଦୃଶ ଏକ ଐତିହ୍ୟ ମଣ୍ଡିତ ମହାନ ପରମ୍ପରାର ବିଲୁପ୍ତି ଯେ କେତେ କ୍ଷତିକାରକ, ତାହା ହିଁ ବିଚାର୍ଯ୍ୟ । ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଏହି ଭାଗବତଘର ପରମ୍ପରାର ପୁନରୁଦ୍ଧାର/ପୁନରୁତ୍ଥାନ ହୋଇପାରିଲେ, ଏ ଜାତିଟା ମୁଣ୍ଡଟେକି ଢେର କିଛି ଦିନ ବଞ୍ଚିଯିବ ନିଶ୍ଚୟ ।

ନୂଆଗାଁ, ଇଟିପୁର
ଭୁବନେଶ୍ୱର-୨

---



ଭୁବନେଶ୍ୱଠାରେ ମହିଳା ଓ ଶିଶୁ ବିକାଶ ବିଭାଗ ଦ୍ୱାରା ଆୟୋଜିତ ଏକ କାର୍ଯ୍ୟକ୍ରମରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଶାରୀରିକ ଅକ୍ଷମ ଛାତ୍ରମାନଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି । ୩.୧୨.୦୪

# ଶୋଷିତଙ୍କ ଆର୍ଥିକ ସଶକ୍ତିକରଣରେ ସମବାୟ

ଧ୍ରୁବାନନ୍ଦ ନାୟକ

**ଯୁ**ଗ ପରେ ଯୁଗ, ଦିନ ପରେ ଦିନ ଗଡ଼ି ଚାଲିବା ସହିତ ସାମାଜିକ ବ୍ୟବସ୍ଥା ମଧ୍ୟ ପରିବର୍ତ୍ତିତ ହେଉଛି । ଯେତେବେଳେ ଏକ ସାମାଜିକ ବ୍ୟବସ୍ଥା ଜନସାଧାରଣଙ୍କ ପାଇଁ ଅସହ୍ୟ ହୋଇଉଠେ, ସେତେବେଳେ ବିପ୍ଳବର ସୂତ୍ରପାତ ହୁଏ । ଆଉ ଏହି ବିପ୍ଳବ କେଉଁଠି ଶାନ୍ତି ଓ ଅହିଂସା ଉପାୟରେ ପ୍ରତିଭାତ ହୁଏତ, ଆଉ କେଉଁଠି ହିଂସା ରୂପରେ । ଲକ୍ଷ୍ୟ କିନ୍ତୁ ଗୋଟିଏ । ଏହାକୁ ଆନ୍ଦୋଳନ ରୂପରେ ଆଖ୍ୟା ମଧ୍ୟ ଦିଆଯାଇଥାଏ । ଭାରତବର୍ଷରେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଦୁଇଟି ଆନ୍ଦୋଳନ ବିଶେଷ ଭାବରେ ଦୃଷ୍ଟିଗୋଚର ହୁଏ । ଗୋଟିଏ ଆନ୍ଦୋଳନ ଥିଲା ଭାରତର ସ୍ୱାଧୀନତା ଆନ୍ଦୋଳନ ଓ ଅନ୍ୟ ଗୋଟିକ ଥିଲା ସମବାୟ ଆନ୍ଦୋଳନ । ଅହିଂସା ଉପାୟରେ ଆମେ ଆମର ସ୍ୱାଧୀନତା ପାଇ ସାରିଥିଲେ ମଧ୍ୟ ଏହି ସ୍ୱାଧୀନତା ଆନ୍ଦୋଳନ ବା ରାଜନୈତିକ ସ୍ୱାଧୀନତା ଭାରତୀୟ ଜନସାଧାରଣଙ୍କ ପାଇଁ ଯଦିଓ ଏକ ମୁଖ୍ୟ ପ୍ରସଙ୍ଗ ଥିଲା ମାତ୍ର ସ୍ୱାଧୀନତା ପ୍ରାପ୍ତି ପରେ ଏହା ଅର୍ଥନୈତିକ ସ୍ୱାଧୀନତାଠାରୁ ବହୁତ ଦୂରରେ ଥିଲା ।

ସେଦିନର ସେ ରକ୍‌ଡେଲ୍‌ର ବିପ୍ଳବ ପୃଥିବୀରେ ପ୍ରଥମଥର ପାଇଁ ସମବାୟ ଆନ୍ଦୋଳନର ଡିଣ୍ଡିମ ପିଟିଥିଲା - ଯାହାକି କୋଟି କୋଟି ଭାରତୀୟ ଯେଉଁମାନେ ଦୁର୍ବଳ, ଶୋଷିତ ସେମାନଙ୍କୁ ଶୋଷଣକାରୀମାନଙ୍କ କବଳରୁ ରକ୍ଷା କରି ସାମୂହିକ ଭାବରେ ସେମାନଙ୍କର ଆର୍ଥିକ ବିକାଶ ପାଇଁ ୧୯୦୪ ମସିହାରେ ଭାରତରେ ସମବାୟ ଆନ୍ଦୋଳନର ବୀଜବପନ କରିବାକୁ ଖୋରାକ ଯୋଗାଇଥିଲା । ସମବାୟ ହେଉଛି, ସ୍ୱୟଂ ସହାୟକ, ସ୍ୱୟଂ ଶାସିତ ଓ ଆତ୍ମ ନିର୍ଭରଶୀଳତା ଭଳି ଗୁଣଗୁଡ଼ିକର ଉତ୍‌ଥାନ କରିବା ଦିଗରେ ଏକ ବଳିଷ୍ଠ ମାଧ୍ୟମ । ସମବାୟର ପ୍ରାଥମିକ ଗୁଣ ହେଉଛି ଲାଭ କ୍ଷତିରେ ସୁଷମ ବଣ୍ଟନ ଏବଂ ଶୋଷଣରୁ ରକ୍ଷାକରି ଆର୍ଥିକ କ୍ଷେତ୍ରରେ ଦୁର୍ବଳ ଶ୍ରେଣୀର ଆର୍ଥିକ ସଶକ୍ତିକରଣ ନିମନ୍ତେ ସାମୂହିକ ଭାବରେ ସଂପଦର ସୁବିନିଯୋଗ କରିବା ଓ ବାହ୍ୟ ହସ୍ତକ୍ଷେପରୁ ସଭ୍ୟମାନଙ୍କୁ ଦୂରେଇ ରଖିବା ହେଉଛି ସମବାୟର ପ୍ରଥମ କାର୍ଯ୍ୟ । ଆତ୍ମ ନିର୍ଭରଶୀଳତା ଓ ସଭ୍ୟ ଅଂଶଗ୍ରହଣ ସମବାୟ ଅନୁଷ୍ଠାନଗୁଡ଼ିକର ମୌଳିକ ନୀତି । ଶୋଷିତମାନଙ୍କୁ ସମବାୟ ମାଧ୍ୟମରେ ଏକତ୍ରିତ କରି ଭୂମି, ଶ୍ରମ, ଆର୍ଥିକ କ୍ଷେତ୍ରରେ ଫଳପ୍ରସୂ ଭାବରେ ଉତ୍ପାଦନ ସୃଷ୍ଟି କରାଯାଇପାରେ ।

ଶୋଷିତ ବ୍ୟକ୍ତିବିଶେଷଙ୍କୁ ଅର୍ଥନୈତିକ ସଶକ୍ତିକରଣ ଏବଂ ସାମାଜିକ ସ୍ଥାୟିତ୍ୱ ମାଧ୍ୟମରେ ଉତ୍‌ଥାନ କରାଯାଇପାରେ । ଏଥିପାଇଁ ସମବାୟର ଅବଦାନ ଏକାନ୍ତ ପ୍ରୟୋଜନ ।

ଦୁର୍ବଳ ଜନ ସଂପ୍ରଦାୟକୁ ଶୋଷକର ଶୋଷଣରୁ ଦୂରେଇ ରଖିବା ପାଇଁ ଯୁଗ ଯୁଗ ଧରି ବିଭିନ୍ନ ମହାପୁରୁଷମାନେ ଚେଷ୍ଟା କରିଆସିଛନ୍ତି । ବେଦର ସେ ବାଣୀ ହେଉ, ଗୀତାର ସେ କଥା ହେଉ, ବିବେକାନନ୍ଦଙ୍କର ବାର୍ତ୍ତା ହେଉ ବା ବାବା ସାହେବ ଆମ୍ବେଦକରଙ୍କ ଆହ୍ୱାନ ହେଉ, ସବୁଠି ସମବାୟ ବାର୍ତ୍ତା ବିଦ୍ୟମାନ । ଭାରତବର୍ଷର ସମ୍ବିଧାନ ପ୍ରଣେତା ବାବା ସାହେବ ଆମ୍ବେଦକରଙ୍କର ଦଳିତ, ନିଷ୍ପେସିତମାନଙ୍କ ପାଇଁ ଆହ୍ୱାନ ଥିଲା - 'ଶିକ୍ଷିତ ହୁଅ, ସଂଗଠିତ ହୁଅ ଓ ସଂଗ୍ରାମ କର' । ବାସ୍ତବିକ ଏହି ସଂଗଠିତ ଶକ୍ତି ହେଉଛି ସମବାୟ ଶକ୍ତି, ଯେଉଁଠି ସୁସଂଗଠିତ ଶକ୍ତି ଯେତେ ସୁଦୃଢ଼ ସେଠି ଜୀବନ ଧାରଣର ମାନ ସେତେ ଉନ୍ନତ । ଶୋଷିତ ବ୍ୟକ୍ତିବିଶେଷ କିଭଳି ଭାବରେ ଅଧିକ ଉତ୍ପାଦନକ୍ଷମ ଓ ଆତ୍ମନିର୍ଭରଶୀଳ ହୋଇପାରିବେ, ସେଥିପାଇଁ ସେମାନଙ୍କୁ ଶିକ୍ଷାଦାନ କରାଯିବା ଦରକାର । ଗୋଷ୍ଠୀଗତ ଭାବରେ ସେମାନେ ଏ ସବୁରେ ସଫଳତା ଲାଭ କରନ୍ତି, ସମବାୟ ମାଧ୍ୟମରେ । ଏହି ବିକାଶ ପ୍ରକ୍ରିୟାକୁ ତୀବ୍ର କରିବାର ଆବଶ୍ୟକତା ରହିଛି । ସମବାୟ ନୀତି ଏବଂ ଆମ ସମ୍ବିଧାନରେ ଥିବା ସାମାଜିକ ନ୍ୟାୟ ପରସ୍ପର ପରସ୍ପର ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । ସମବାୟ ଆନ୍ଦୋଳନ ସାମାଜିକ ଉନ୍ନତିରେ ସଂପୂର୍ଣ୍ଣ ନିୟୋଜିତ ହୋଇପାରିବ । ଯେତେବେଳେ ଗୋଟିଏ ସମବାୟ ଅନୁଷ୍ଠାନ ତା'ର ସଭ୍ୟମାନଙ୍କର ଉନ୍ନତି ପାଇଁ କାର୍ଯ୍ୟ କରିଥାଏ, ସେତେବେଳେ ଏହା ପ୍ରକାରନ୍ତରେ ସମୁଦାୟ ସମାଜର ଉନ୍ନତି କରିବାରେ ସହାୟକ ହୋଇଥାଏ । ସମବାୟ ମାଧ୍ୟମରେ ସାମାଜିକ ନ୍ୟାୟ ପାଇବାକୁ ହେଲେ ସମବାୟ ଆନ୍ଦୋଳନ କ୍ଷେତ୍ରରେ ଏହି

ଶୋଷିତବର୍ଗଙ୍କର ଉପସ୍ଥିତିକୁ ଜାହିର କରିବାକୁ ପଡ଼ିବ, ଯାହା ସମବାୟର ଭିତ୍ତିଭୂମି । ସେମାନଙ୍କର ସଶକ୍ତିକରଣ ହୋଇପାରିଲେ ସମବାୟ ସଭ୍ୟମାନଙ୍କର ଆବଶ୍ୟକତା ପୂରଣ କରିପାରିବ । ବାସ୍ତବରେ ସମବାୟ ଆନ୍ଦୋଳନର ମୌଳିକ ଭିତ୍ତିଭୂମି ହେଉଛି, ଶୋଷିତମାନଙ୍କୁ ଏହି ଆନ୍ଦୋଳନ ମାଧ୍ୟମରେ ସଶକ୍ତିକରଣ କରିବା । ବିଶେଷ କରି ଦୁର୍ବଳବର୍ଗଙ୍କ ପାଇଁ ସମବାୟ ଅନୁଷ୍ଠାନ ଗଠନ କରି ସେମାନଙ୍କ କଲ୍ୟାଣ ନିମନ୍ତେ କାର୍ଯ୍ୟ କରାଇ ପାରିଲେ ତାହା ଓଡ଼ିଶାର ଆର୍ଥିକ ବିକାଶ ପ୍ରକ୍ରିୟାକୁ ତୀବ୍ର କରିବ । ସମବାୟ ଆନ୍ଦୋଳନ ସେତିକିବେଳେ ସଫଳ ହେବ, ଯେତେବେଳେ ଏହି ଅନୁଷ୍ଠାନଗୁଡ଼ିକ ଗଣତାନ୍ତ୍ରିକ ନୀତି, ସଭ୍ୟମାନଙ୍କ ମତାମତ ସେମାନଙ୍କର ଅଭିଳାଷ ଓ ସମବାୟ ପ୍ରତିଷ୍ଠାନକୁ ଗୁରୁତ୍ୱ ଦିଆଯାଇପାରିବ । ଆର୍ଥିକ ଦୃଷ୍ଟିରୁ ଦୁର୍ବଳ ଶ୍ରେଣୀ ବ୍ୟକ୍ତିବିଶେଷଙ୍କୁ ଆବଶ୍ୟକତା ମୁତାବକ ଏବଂ ଆବଶ୍ୟକ ସମୟରେ ଋଣ ପ୍ରଦାନ ପାଇଁ ସେମାନଙ୍କୁ ପ୍ରଯୁଜ୍ୟ ହେଲାଭଳି ନିୟମ ପ୍ରୟୋଗ କରିପାରିଲେ ସମବାୟ ଆନ୍ଦୋଳନ ସେମାନଙ୍କ ଆର୍ଥିକ ସଶକ୍ତିକରଣ କ୍ଷେତ୍ରରେ ଏକମାତ୍ର ଆୟୁଧ ହୋଇପାରିବ । ସରକାରଙ୍କର ମହିଳା ସଶକ୍ତିକରଣ ଯୋଜନା ଭଳି ସମାଜର ଶୋଷିତବର୍ଗଙ୍କର ସଶକ୍ତିକରଣର ଆବଶ୍ୟକତା ରହିଛି । ବିଶେଷକରି ଏହାର ଆବଶ୍ୟକତା ରହିଛି ମହିଳା ଶୋଷିତ ଗୋଷ୍ଠୀମାନଙ୍କୁ ସମବାୟ ଆନ୍ଦୋଳନ ସହିତ ସାମିଲ କରିବାର ଅନ୍ତରାଳରେ ।

---



ରାଜ୍ୟ ସଚିବାଳୟ ପ୍ରାଙ୍ଗଣରେ ଡଃ ହରେକୃଷ୍ଣ ମହତାବଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ ଉତ୍ସବରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ମାନ୍ୟବର ବାଚସ୍ପତି ଶ୍ରୀ ମହେଶ୍ୱର ମହାନ୍ତି ଏବଂ ଆଇନ, ଗ୍ରାମ୍ୟ ଉନ୍ନୟନ ଓ ଶିଳ୍ପ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଉପସ୍ଥିତ ଅଛନ୍ତି । ୩.୧୨.୦୪

# ମହିଳା ସଶକ୍ତିକରଣରେ ସ୍ୱୟଂ ସହାୟିକା ଗୋଷ୍ଠୀ

ବିଜୟ କୁମାର ଦାଶ

୧୯୮୦ ମସିହାରେ କୋପେନ୍‌ହେଗେନ୍‌ଠାରେ ହୋଇଥିବା ମିଳିତ ଜାତିସଂଘର ସମ୍ମିଳନୀରେ କୁହାଯାଇଥିଲା ଯେ ଯଦିଓ ବିଶ୍ୱ ଜନସଂଖ୍ୟାରେ ଅର୍ଦ୍ଧେକ ମହିଳା ଏବଂ ମୋଟ ଆୟକୁ ମହିଳାମାନଙ୍କର ଅବଦାନ ଏକ ତୃତୀୟାଂଶ ତଥାପି ସେମାନେ ମାତ୍ର ଏକ ପ୍ରତିଶତ ସଂପତ୍ତିର ଅଧିକାର ପାଇଛନ୍ତି । ସେହିପରି ୧୯୯୫ରେ ବେଜିଂଠାରେ ହୋଇଥିବା ଜାତିସଂଘର ବିଶ୍ୱମହିଳା ସମ୍ମିଳନୀରେ ମହିଳାମାନଙ୍କୁ ପୁରୁଷମାନଙ୍କ ସହ ସବୁ କ୍ଷେତ୍ରରେ ସମାନ କ୍ଷମତା ଦେବାକୁ ଆହ୍ୱାନ ଦିଆଯାଇଥିଲା । ଆନ୍ତର୍ଜାତିକ ଶ୍ରମ ସଂଗଠନର ହିସାବ ଅନୁଯାୟୀ, ମୋଟ ଜନସଂଖ୍ୟାର ଶତକଡ଼ା ପଚାଶ ଭାଗ ହେଉଛନ୍ତି ମହିଳା । ମୋଟ ଶ୍ରମଶକ୍ତିର ସେମାନେ ତିରିଶ ଭାଗ । ସମସ୍ତ କାର୍ଯ୍ୟ କରିବାର ସମୟର ଷାଠିଏ ଭାଗ ସେମାନେ କାର୍ଯ୍ୟ କରନ୍ତି କିନ୍ତୁ ସେମାନେ ବିଶ୍ୱର ମୋଟ ଆୟର ଦଶ ପ୍ରତିଶତ ଗ୍ରହଣ କରିଥାନ୍ତି ଏବଂ ବିଶ୍ୱ ସଂପତ୍ତିର ଏକ ପ୍ରତିଶତରୁ କମ୍ ଅଧିକାର ପାଇଥାନ୍ତି । ଭାରତର ନବମ ପଂଚବାର୍ଷିକ ଯୋଜନା ଅନୁଯାୟୀ ଦାରିଦ୍ର୍ୟ ସୀମାରେଖା ତଳେ ୩୨୦ ନିୟୁତ ଲୋକ ରହୁଥିବା ବେଳେ ସେମାନଙ୍କ ମଧ୍ୟରୁ ଶତକଡ଼ା ୭୦ ଭାଗ ମହିଳା ଅଟନ୍ତି । ତେଣୁ ମହିଳାମାନଙ୍କୁ ସାକ୍ଷର କରି ସେମାନଙ୍କୁ ଅର୍ଥନୈତିକ ଦୃଷ୍ଟିକୋଣରୁ ସଶକ୍ତ କରିବାକୁ ହେବ ।

ସଂପ୍ରତି ମହିଳା ସଶକ୍ତିକରଣ ଏକ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ଅଟେ । ଏହାକୁ ଦୃଷ୍ଟିରେ ରଖି ୨୦୦୧ ମସିହାକୁ ମହିଳା ସଶକ୍ତିକରଣର ବର୍ଷ ରୂପେ ପାଳନ କରାଯାଇଥିଲା । ଏହି ଅବସରରେ ମହିଳାମାନଙ୍କର ଅର୍ଥନୈତିକ ବିକାଶ ପାଇଁ ଅନେକ ଯୋଜନାର ଶୁଭାରମ୍ଭ କରାଯାଇଥିଲା । ସମାଜର ଦରିଦ୍ର ମହିଳାମାନଙ୍କୁ ବିଭିନ୍ନ ଆୟ ସୃଜନକାରୀ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବା ପାଇଁ ସୁଯୋଗ ସୃଷ୍ଟି କରିବା ସହ ଅଣୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିବା ପାଇଁ ସରକାରଙ୍କ ଦ୍ୱାରା ଅନେକ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲେ ମଧ୍ୟ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ (Women Self Help Group) କାର୍ଯ୍ୟକ୍ରମ ମହିଳାମାନଙ୍କର ସାମାଜିକ ଓ ଅର୍ଥନୈତିକ ଉତ୍ଥାନରେ ସର୍ବାଧିକ ସଫଳତା ହାସଲ କରିଛି । ବିଶେଷ କରି ଗ୍ରାମାଞ୍ଚଳରେ ମହିଳାମାନଙ୍କର ଦାରିଦ୍ର୍ୟର ବିଲୋପ ପାଇଁ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ଏକ ବଳିଷ୍ଠ ମାଧ୍ୟମ ଭାବରେ ପ୍ରମାଣିତ ହୋଇଛି । ବାଂଲାଦେଶ, ଇଣ୍ଡୋନେସିଆ, ମାଲେସିଆ, ଫିଲିପାଇନ୍‌ସ ଆଦି ବିଶ୍ୱର ଅନେକ ରାଷ୍ଟ୍ରରେ ସ୍ୱୟଂ ସହାୟକ ଗୋଷ୍ଠୀ ଅର୍ଥନୈତିକ ଅଭିବୃଦ୍ଧି କ୍ଷେତ୍ରରେ ଆଶାତୀତ ସଫଳତା ହାସଲ କରିଛି । ଭାରତୀୟ ସମାଜରେ ଅଧିକାଂଶ ଗ୍ରାମାଞ୍ଚଳର ମହିଳା ଦରିଦ୍ର, ସ୍ୱଳ୍ପ ଶିକ୍ଷିତା ହୋଇଥିବାରୁ ଏବଂ ଅନେକ ପାରିବାରିକ ଦାୟିତ୍ୱ, ପ୍ରତିବନ୍ଧକ ଥିବାରୁ ସେମାନେ ସହଜରେ ପୁରୁଷମାନଙ୍କ ପରି ସହରାଞ୍ଚଳକୁ କର୍ମ ନିଯୁକ୍ତି ପାଇଁ ଯିବା ସମ୍ଭବ ନୁହେଁ । ସହରରେ ଅସଂଗଠିତ ନିର୍ମାଣ କ୍ଷେତ୍ରରେ ଯେଉଁ ମହିଳାମାନେ ଗ୍ରାମାଞ୍ଚଳରୁ ଯାଇ ସାମୟିକ ଭାବେ କାର୍ଯ୍ୟ କରିଥାନ୍ତି, ସେମାନେ ପୁରୁଷମାନଙ୍କ ତୁଳନାରେ ଅଧିକ ଆୟ ଉପାର୍ଜ୍ଜନ କରିପାରିନଥାନ୍ତି । ଅର୍ଥନୈତିକ ଅନଗ୍ରସରତାରେ ଥିବା ଅନେକ ପରିବାରର ମହିଳା ଘରର ଚାରିକାନ୍ଥ ଡେଇଁ କର୍ମନିଯୁକ୍ତି ପାଇଁ ଯାଇପାରନ୍ତି ନାହିଁ । ଭାରତ ପରି ବିକାଶୋନ୍ମୁଖୀ, ଅନୁନ୍ନତ ରାଷ୍ଟ୍ରରେ ମହିଳାମାନେ ହିଁ ସବୁଠାରୁ ଅଧିକ ଦାରିଦ୍ର୍ୟ, ନିରକ୍ଷରତା, ପୁଷ୍ଟିସାର ଖାଦ୍ୟର ଅଭାବ, ଉଚ୍ଚ ମୃତ୍ୟୁ ହାର, ଦୁର୍ବଳ ସ୍ୱାସ୍ଥ୍ୟ ଆଦି ଅନେକ ସମସ୍ୟାର ଶିକାର ହୋଇଥାନ୍ତି । ଏସବୁର ପ୍ରମୁଖ କାରଣ ହେଲା ପରିବାରଗୁଡ଼ିକର ଦୁର୍ବଳ ଆର୍ଥିକ ସ୍ଥିତି ଏବଂ ପରିବାର ଆୟକୁ ମହିଳାମାନଙ୍କର ପ୍ରାୟତଃ କୌଣସି ସନ୍ତୋଷଜନକ ଅବଦାନ ନଥାଏ । ତେଣୁ ମହିଳାମାନଙ୍କର ଏସବୁ ସମସ୍ୟାରୁ ମୁକ୍ତି ଏବଂ ଆତ୍ମନିଯୁକ୍ତି ପାଇଁ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ନିଶ୍ଚିତ ଭାବରେ ଏକ ସୁଦୃଢ଼ କ୍ଷେତ୍ର । ସ୍ୱୟଂ ସହାୟିକା ଗୋଷ୍ଠୀ ମାଧ୍ୟମରେ ହିଁ ମହିଳାମାନଙ୍କର ସାମାଜିକ ଓ ଅର୍ଥନୈତିକ ସଶକ୍ତିକରଣ ସମ୍ଭବ ହୋଇପାରିବ । ସ୍ୱୟଂ ସହାୟିକା ଗୋଷ୍ଠୀ ସେମାନଙ୍କ ପାଇଁ ଏପରି ଏକ ଅନନ୍ୟ ସୁଯୋଗ ସୃଷ୍ଟି କରିଛି, ଯାହାଦ୍ୱାରା ମହିଳାମାନେ ନିଜ ଗାଁରେ ନିଜ ପରିବାରର ଆର୍ଥିକ ସ୍ଥିତି ସୁଦୃଢ଼ କରିବା ସହ ଗ୍ରାମର ଉନ୍ନତିରେ ସହାୟିକା ହୋଇପାରିବେ ଏବଂ ଏହାସହ ଗ୍ରାମାଞ୍ଚଳରୁ ଦାରିଦ୍ର୍ୟ ମଧ୍ୟ ହ୍ରାସ ପାଇବ ।

ସମୟକ୍ରମେ ମହିଳା ସଶକ୍ତିକରଣ ପାଇଁ ସ୍ୱୟଂ ସହାୟିକା ଗୋଷ୍ଠୀ ଏକ ନିର୍ଭରଯୋଗ୍ୟ ଓ ଗ୍ରହଣୀୟ ସୂତ୍ରରେ ପରିଣତ ହୋଇଛି ।

ଏହା ମହିଳାମାନଙ୍କର ସାମାଜିକ ଓ ଆର୍ଥିକ ଉନ୍ନତି ସାଧନ କରିବା ସହ ସେମାନଙ୍କର ପରିବାର ଚଳାଇବାର ଯେଉଁ ମୌଳିକ ଦକ୍ଷତା ରହିଛି, ତାହା ଆୟ ଉପାର୍ଜ୍ଜନ କ୍ଷେତ୍ରରେ ବ୍ୟବହୃତ ହେବା ଦ୍ୱାରା ସେମାନଙ୍କର ଦକ୍ଷତା ବୃଦ୍ଧି ହେବା ସହ ଆତ୍ମନିର୍ଭରଶୀଳ ହୋଇପାରୁଛନ୍ତି । ସ୍ୱୟଂ ସହାୟିକା ଦଳର ଗଠନ ଫଳରେ ସେମାନଙ୍କର ନେତୃତ୍ୱ ଓ ନିଷ୍ପତ୍ତି ନେବାର ଯୋଗ୍ୟତା ବୃଦ୍ଧି ପାଉଛି । ଏହାଛଡ଼ା ବିଭିନ୍ନ ହିସାବପତ୍ର ରଖିବା, ଆୟବ୍ୟୟ ଖର୍ଚ୍ଚ, ସଂଗଠନ ପରିଚାଳନା ଆଦି କ୍ଷେତ୍ରରେ ସେମାନଙ୍କର ଅଭିଜ୍ଞତା ବୃଦ୍ଧି ପାଉଥିବାର ଲକ୍ଷ୍ୟ କରାଯାଉଛି । ବିଶେଷକରି ଗ୍ରାମାଞ୍ଚଳରେ ବିଭିନ୍ନ ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ ହେବା ଦ୍ୱାରା ମହିଳାମାନେ ନିଜର ଅନ୍ତର୍ନିହିତ ସାମର୍ଥ୍ୟ ଚିହ୍ନି ପାରିବା ସହ ଗ୍ରାମାଞ୍ଚଳ ବିକାଶରେ ସହାୟତା କରିପାରୁଛନ୍ତି । ତେଣୁ ଏହି ସ୍ୱୟଂ ସହାୟିକା ଗୋଷ୍ଠୀ ମହିଳାମାନଙ୍କ ମଧ୍ୟରେ ଅଧିକ ଆଦୃତ ହୋଇପାରିଛି । ଭାରତରେ ସଫଳତାର ସହ କାର୍ଯ୍ୟ କରୁଥିବା ସ୍ୱୟଂ ସହାୟକ ଗୋଷ୍ଠୀର ଶତକଡ଼ା ନବେ ଭାଗ ହେଉଛି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ । ଏହାର ମୁଖ୍ୟ କାରଣ ହେଲା ମହିଳା ସଶକ୍ତିକରଣ ଉପରେ ଗୁରୁତ୍ୱ ଏବଂ ପୁରୁଷ-ମହିଳା ମଧ୍ୟରେ ଥିବା ଲିଙ୍ଗଗତ ବୈଷମ୍ୟକୁ ଯଥାସମ୍ଭବ ହ୍ରାସ କରିବା ପାଇଁ ସରକାର ଏବଂ ବିଭିନ୍ନ ବେସରକାରୀ ସଂଗଠନ ପକ୍ଷରୁ ବ୍ୟାପକ ପ୍ରୋତ୍ସାହନ ଯୋଗାଇ ଦିଆଯାଉଛି । ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ ସଂପର୍କରେ ଏକ ସଂକ୍ଷିପ୍ତ ଆଲୋଚନା କରିବା । ସ୍ୱୟଂ ସହାୟକ ଗୋଷ୍ଠୀର ମୌଳିକ ଆଧାର ହେଲା ପାରସ୍ପରିକ ସହଯୋଗ । ଉଭୟ ପୁରୁଷ ଓ ମହିଳା ଏହି ଗୋଷ୍ଠୀ ଗଠନ କରିଥାନ୍ତି । ଏହାର ପ୍ରମୁଖ ଲକ୍ଷ୍ୟ ହେଉଛି ଗୋଷ୍ଠୀ ସଂଚୟ ଏବଂ ନିବେଶ ଦ୍ୱାରା ଏହାର ସଭ୍ୟମାନଙ୍କର ଚଳିବା ଅବସ୍ଥାରେ ଉନ୍ନତି ଆଣିବା । ପ୍ରତିଟି ଗୋଷ୍ଠୀର ସଦସ୍ୟ ସଂଖ୍ୟା ୧୦ରୁ ୨୫ ମଧ୍ୟରେ ସୀମିତ ଥାଏ । ଏହି ସ୍ୱୟଂ ସହାୟିକା ଦଳ ଗ୍ରାମାଞ୍ଚଳର ବି.ପି.ଏଲ୍. ତାଲିକାଭୁକ୍ତ ସଦସ୍ୟମାନଙ୍କର ଏକ ସ୍ୱୟଂସେବୀ ସଂଗଠନ । ପ୍ରତିଟି ପରିବାରରୁ ଜଣେ ମାତ୍ର ସ୍ୱୟଂ ସହାୟକ ଗୋଷ୍ଠୀର ସଭ୍ୟ ହୋଇଥାନ୍ତି । ଏହି ଗୋଷ୍ଠୀର ସଦସ୍ୟ, ସଦସ୍ୟାମାନେ ନିଜ ଉପଭୋଗ ଖର୍ଚ୍ଚରୁ କିଛି ଅଂଶ ନିୟମିତ ଭାବରେ ସଂଚୟ କରିଚାଲନ୍ତି ଏବଂ ସଂଚିତ ପାଣ୍ଠିର ପରିମାଣ ବୃଦ୍ଧି ହେଲେ ସେହି ପାଣ୍ଠିରେ ସେମାନେ ବିଭିନ୍ନ ଆୟ ସୃଷ୍ଟିକାରୀ କାର୍ଯ୍ୟ ହାତକୁ ନେଇଥାନ୍ତି । ଏହି ଗୋଷ୍ଠୀକୁ ସରକାର, ବ୍ୟାଙ୍କ ଏବଂ ବେସରକାରୀ ସଂଗଠନମାନେ ଆର୍ଥିକ ସାହାଯ୍ୟ, ତାଲିମ ଆଦି ଅନେକ ସୁବିଧା ପ୍ରଦାନ କରିଥାନ୍ତି । ସଫଳ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀଗୁଡ଼ିକ ଉଚିତ ସମୟରେ ବ୍ୟାଙ୍କ ଋଣ ପରିଶୋଧ କରୁଛନ୍ତି ଏବଂ ସେମାନଙ୍କର ଆୟ ବୃଦ୍ଧି ପାଇବାରେ ଲାଗିଛି ।

ରାଷ୍ଟ୍ରୀୟ ସ୍ତରରେ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀର ପ୍ରତ୍ୟକ୍ଷ ଓ ପରୋକ୍ଷ ସହାୟତା ନିମିତ୍ତ ଅନେକ ଯୋଜନା କାର୍ଯ୍ୟକାରୀ କରାଯାଇଛି । ଦରିଦ୍ର ମହିଳାମାନେ ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ କରି ଆୟ ସୃଷ୍ଟିକାରୀ କାର୍ଯ୍ୟ ଆରମ୍ଭ କଲେ, ସେମାନଙ୍କୁ ଅଣୁ ଅର୍ଥ ବା ଋଣ ସହାୟତା ଯୋଗାଇ ଦେବା ୧୯୯୩ରେ ଗଠନ କରାଯାଇଥିବା ରାଷ୍ଟ୍ରୀୟ ମହିଳାକୋଷର ମୂଳ ଲକ୍ଷ୍ୟ ଥିଲା । ରାଷ୍ଟ୍ରୀୟ ମହିଳା କୋଷ ସ୍ୱୟଂ ସହାୟିକା ଗୋଷ୍ଠୀଗୁଡ଼ିକର ଉନ୍ନତି ଏବଂ ସ୍ଥିରତା ପାଇଁ ସମର୍ଥନ ଦେଇଥାଏ । ଦରିଦ୍ର ମହିଳାମାନଙ୍କର ତ୍ୱରାନ୍ୱିତ ସାମାଜିକ ଓ ଅର୍ଥନୈତିକ ବିକାଶ ପାଇଁ ସ୍ୱୟଂ ସହାୟିକା ଗୋଷ୍ଠୀ ଏବଂ ଆର୍ଥିକ ସହାୟତା ଆବଶ୍ୟକ ଅଟେ । ସେହିପରି ୨୦୦୦-୦୧ରେ ଭାରତର ତାମିଲନାଡୁ, ହରିଆନା, ଗୁଜରାଟ, ମଧ୍ୟପ୍ରଦେଶ, ଉତ୍ତରପ୍ରଦେଶ, ବିହାର ଆଦି ରାଜ୍ୟରେ ଆରମ୍ଭ କରାଯାଇଥିବା ସ୍ୱ-ଶକ୍ତି ପ୍ରକଳ୍ପରେ ସ୍ୱୟଂ ସହାୟିକା ଗୋଷ୍ଠୀମାନଙ୍କୁ ଋଣ ଯୋଗାଣର ବ୍ୟବସ୍ଥା କରାଯାଇଥିଲା । ଏହା ମୁଖ୍ୟତଃ ସ୍ୱୟଂ ସହାୟିକା ଗୋଷ୍ଠୀ ମାଧ୍ୟମରେ ମହିଳାମାନଙ୍କର ଉନ୍ନତ ଜୀବନଧାରଣମାନ ବୃଦ୍ଧି ପାଇଁ ସେମାନଙ୍କୁ ସମ୍ବଳ ଦେବାର ସୁଯୋଗ ସୃଷ୍ଟି କରିଥିଲା । ୨୦୦୧ରେ ଆରମ୍ଭ ହୋଇଥିବା ସ୍ୱୟଂସିଦ୍ଧ ପ୍ରକଳ୍ପରେ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀକୁ ଅଣୁ ଆର୍ଥିକ ସହାୟତା ବ୍ୟବସ୍ଥା, ଅଣୁ-ଉଦ୍ୟୋଗ ପ୍ରତିଷ୍ଠା ଏବଂ ଅନ୍ୟାନ୍ୟ ସେବା ପ୍ରଦାନ ଦ୍ୱାରା ମହିଳାମାନଙ୍କୁ ସଶକ୍ତ କରିବା ଉପରେ ଗୁରୁତ୍ୱ ଦିଆଯାଇଥିଲା ।

ଆମ ରାଜ୍ୟ ଓଡ଼ିଶାରେ ମଧ୍ୟ ସ୍ୱୟଂ ସହାୟିକା ଗୋଷ୍ଠୀ ମାଧ୍ୟମରେ ମହିଳା ସଶକ୍ତିକରଣ ପାଇଁ ବିଭିନ୍ନ ଯୋଜନା ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ କରାଯାଉଛି । ୧୯୯୧ ମସିହାରେ ପ୍ରତିଷ୍ଠା ହୋଇଥିବା ମହିଳା ବିକାଶ ସମବାୟ ନିଗମ ୨୦୦୨-୦୩ ଆର୍ଥିକ ବର୍ଷରେ ମୋଟ ୭,୪୧୦ ଜଣ ହିତାଧିକାରୀଙ୍କୁ ୨୯୮.୮୫ ଲକ୍ଷ ଟଙ୍କା ମଂଜୁର କରିଥିଲା । ମାର୍ଚ୍ଚ ୨୦୦୧ ଆନ୍ତର୍ଜାତିକ ମହିଳା ଦିବସ ଅବସରରେ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ମାଧ୍ୟମରେ ମହିଳା ସଶକ୍ତିକରଣ ପାଇଁ ମିଶନ୍ ଶକ୍ତିର ଶୁଭାରମ୍ଭ ହୋଇଥିଲା । ଏହି ମିଶନ୍ ମାଧ୍ୟମରେ ୨୦୦୧ ମସିହାରୁ ୨୦୦୫ ମଧ୍ୟରେ ଏକ ଲକ୍ଷ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ ଏବଂ କାର୍ଯ୍ୟକ୍ଷମ କରିବାର ଲକ୍ଷ୍ୟ ରଖାଯାଇଥିଲା । ଯାହାଦ୍ୱାରା ମହିଳାମାନେ ଆତ୍ମନିଯୁକ୍ତି ପାଇପାରିବେ । ଏପ୍ରିଲ୍ ୨୦୦୧ରୁ ଡିସେମ୍ବର ୨୦୦୨ ମଧ୍ୟରେ ମିଶନ ଶକ୍ତି ଯୋଜନାରେ ୭୨,୮୭୫ଟି ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ କରାଯାଇଥିଲା ଏବଂ ଏହାର ସଦସ୍ୟାଙ୍କ ସଂଖ୍ୟା ଥିଲା ୯ ଲକ୍ଷ ୬୮ ହଜାର ୧୬୮ । ଏହି ଗୋଷ୍ଠୀ ସମୂହ ମୋଟ ୩୦ କୋଟି ଟଙ୍କାର ସଂଚୟ ସୃଷ୍ଟି କରିପାରିଥିଲେ ଏବଂ ୧୮,୩୦୦ ସ୍ୱୟଂ ସହାୟିକା ଗୋଷ୍ଠୀକୁ ଆନୁଷ୍ଠାନିକ ସୂତ୍ରରୁ ପ୍ରାୟ ୩୨ କୋଟି ଟଙ୍କାର ଋଣ ଯୋଗାଇ ଦିଆଯାଇଥିଲା । ୨୦୦୩ ପରିସଂଖ୍ୟାନ ଅନୁଯାୟୀ ୮୭,୨୦୩ଟି ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ଗଠନ କରାଯାଇଛି ଯେଉଁଥିରେ ମୋଟ ୧୧ ଲକ୍ଷ ୬୫ ହଜାର ୪୦୮ ଜଣ ମହିଳା ସଦସ୍ୟ ଅଛନ୍ତି । ଏହି ଗୋଷ୍ଠୀ ମାଧ୍ୟମରେ ଗ୍ରାମାଞ୍ଚଳରେ ୩୬ କୋଟି ୮୪ ଲକ୍ଷ ୪୬

ହଜାର ଟଙ୍କାର ସଂଚୟ ସୃଷ୍ଟି କରାଯାଇପାରିଛି । ଉପରୋକ୍ତ ପରିସଂଖ୍ୟାନରୁ ଏହା ସ୍ପଷ୍ଟ ଯେ, ରାଜ୍ୟରେ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀଗୁଡ଼ିକ ବେଶ୍ ସଫଳତାର ସହ କାର୍ଯ୍ୟ କରୁଛି ଏବଂ ୨୦୦୫ ସୁଦ୍ଧା ଏହା ଧାର୍ଯ୍ୟ ଲକ୍ଷ୍ୟରେ ପହଞ୍ଚି ଯିବ ।

ଆମ ରାଜ୍ୟ ଓଡ଼ିଶାରେ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀର ଗତି ଓ କାର୍ଯ୍ୟଧାରା ବେଶ୍ ସନ୍ତୋଷଜନକ ଓ ଉତ୍ସାହପ୍ରଦ ହୋଇଥିଲେ ମଧ୍ୟ ଏହି ଗୋଷ୍ଠୀଗୁଡ଼ିକୁ ଅଧିକରୁ ଅଧିକ ଅର୍ଥନୈତିକ କାର୍ଯ୍ୟକ୍ରମରେ ସଂପୃକ୍ତ କରିବାକୁ ହେଲେ ସମୟୋପଯୋଗୀ ତାଲିମ୍ ଶିକ୍ଷାର ପ୍ରସାର ହେଲେ ଦକ୍ଷତା ବୃଦ୍ଧି ପାଇବ ଏବଂ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଦ୍ରବ୍ୟଗୁଡ଼ିକର ସଠିକ୍ ବିପଣନ ବ୍ୟବସ୍ଥା କରାଗଲେ ସେ ସବୁର ସ୍ଥିତି ଅଧିକ ସୁଦୃଢ଼ ହୋଇପାରିବ । କେତେକ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ସେମାନେ ଉତ୍ପାଦନ କରୁଥିବା ସାମଗ୍ରୀକୁ ବଜାରରେ ବିକ୍ରି କରିବା ପାଇଁ ସମସ୍ୟାର ସମ୍ମୁଖୀନ ହେଉଥିବାରୁ, ସେଥିପାଇଁ କେରଳ, ଗୋଆ ପରି ଆମ ରାଜ୍ୟରେ ମଧ୍ୟ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀଗୁଡ଼ିକୁ ବିପଣନର ସୁବିଧା ଯୋଗାଇ ଦେବା ପାଇଁ ଏକ ସ୍ୱତନ୍ତ୍ର ସରକାରୀ ଅନୁଷ୍ଠାନର ଆବଶ୍ୟକତା ରହିଛି । ଏହାସହ ଅଣୁ ଆର୍ଥିକ ସହାୟତାକୁ ଅଧିକ ବ୍ୟାପକ କରାଯିବା ଉଚିତ । ଏସବୁ ପଦକ୍ଷେପ ଦ୍ୱାରା ମହିଳାମାନଙ୍କର ସାମାଜିକ ଓ ଅର୍ଥନୈତିକ ସଶକ୍ତିକରଣ ସହ ସେମାନେ ଏକ ସୁସ୍ଥ, ସ୍ୱଚ୍ଛ, ସ୍ୱାଭିମାନ ସହ ଉଚ୍ଚମାନର ଜୀବନ ଧାରଣ କରିପାରିବେ ଏବଂ ଦାରିଦ୍ର୍ୟ, ଆଂଚଳିକ ବୈଷମ୍ୟର ବିଲୋପ ସହ ରାଜ୍ୟ ଏବଂ ରାଷ୍ଟ୍ରର ପୂର୍ଣ୍ଣାଙ୍ଗ ଅର୍ଥନୈତିକ ଅଭିବୃଦ୍ଧି ସାଧିତ ହୋଇପାରିବ । ଅର୍ଥନୈତିକ ଦୃଷ୍ଟିକୋଣରୁ ସଶକ୍ତ ମହିଳା ଅର୍ଥ ସଶକ୍ତ ପରିବାର ଏବଂ ସଶକ୍ତ, ସମୃଦ୍ଧ ଅର୍ଥନୀତି ଆମ ଜନସଂଖ୍ୟାର ଅର୍ଦ୍ଧାଂଶ ମହିଳା ହୋଇଥିବାରୁ, ଲିଙ୍ଗଗତ ସମତା, ମହିଳା ସଶକ୍ତିକରଣ ପାଇଁ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ଯେ ନିଶ୍ଚିତ ଭାବରେ ଏକ ଅଗ୍ରଣୀ ପଦକ୍ଷେପ, ଏହା ନିଃସନ୍ଦେହରେ କୁହାଯାଇପାରେ ।

**ସହାୟକ ଗ୍ରନ୍ଥସୂଚୀ**

୧. ଗ୍ରାମାଞ୍ଚଳ ବିକାଶରେ ମହିଳା - ବିଜୟ କୁମାର ଦାଶ - ପ୍ରଗତିବାଦୀ - ୧୩ ଡିସେମ୍ବର, ୧୯୯୯ ।

୨. Female Work Force Participation : Need for Empowerment - Dr. Gladis Abraham - Yojana, May 2003, pp. 31-34.

୩. ଦାରିଦ୍ର୍ୟ ଦୂରୀକରଣରେ ସ୍ୱୟଂ ସହାୟକ ଗୋଷ୍ଠୀ - ସଚ୍ଚିଦାନନ୍ଦ କର - ଯୋଜନା (ଓଡ଼ିଆ), ଏପ୍ରିଲ ୨୦୦୪, ପୃ. ୧୪-୧୫ ।

୪. ଉତ୍କଳ ପ୍ରସଙ୍ଗ - ଅଗଷ୍ଟ ୨୦୦୪ ।

୫. Economic Survey - Govt. of Orissa, 2003-04.

୬. Orissa Reference Annual : 2003, I. & P.R. Deptt., Govt. of Orissa, Bhubaneswar.

ଅଧ୍ୟାପକ, ଅର୍ଥନୀତି ବିଭାଗ
ଆଂଚଳିକ ପଞ୍ଚାୟତ ମହାବିଦ୍ୟାଳୟ
ସୁଜନପୁର, ଯାଜପୁର - ୭୫୫୦୧୭




ଭୁବନେଶ୍ୱର ଆଦିବାସୀ ପଡ଼ିଆଠାରେ ଆୟୋଜିତ 'ଅଞ୍ଜଳି ଜାତୀୟ ଶିଶୁ ଉତ୍ସବ - ୨୦୦୪'ରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଗୀତା ସିଂହଙ୍କୁ ସାହସିକ ପୁରସ୍କାର ପ୍ରଦାନ କରୁଛନ୍ତି । ୧୪.୧୧.୦୪

# ତାଳଗୁଡ଼ ଶିଳ୍ପ - ଗ୍ରାମ୍ୟ ଅର୍ଥନୀତି ବିକାଶ ପାଇଁ ଏକ ସଫଳ ଉଦ୍ୟୋଗ

ସୌରଜିତ ଦାସ

ତାଳଗୁଡ଼ ଶିଳ୍ପ ହେଉଛି ଦେଶର ସର୍ବ ପୁରାତନ ପାରମ୍ପରିକ ଗ୍ରାମ୍ୟ ଶିଳ୍ପ । ଏପରିକି ସ୍ୱାଧୀନତା ପୂର୍ବରୁ ମଧ୍ୟ ଜାତିର ଜନକ ମହାତ୍ମା ଗାନ୍ଧୀ ଏହି ଶିଳ୍ପର ବିକାଶ ପାଇଁ ସର୍ବଦା ଗୁରୁତ୍ୱାରୋପ କରିବା ସହିତ ସଂଗଠିତ ଭାବେ ଏହା କାର୍ଯ୍ୟକାରୀ କରିବା ପାଇଁ ଗ୍ରାମାଞ୍ଚଳର ଲୋକମାନଙ୍କୁ ପରାମର୍ଶ ଦେଉଥିଲେ । ଗ୍ରାମାଞ୍ଚଳର ଲୋକମାନଙ୍କର ଆର୍ଥିକ ଉନ୍ନତି ପାଇଁ ଏହି ଶିଳ୍ପଟି ଏକ ଅମୋଘ ଅସ୍ତ୍ର ବୋଲି ଗାନ୍ଧିଜୀ ତାଙ୍କର ଗ୍ରାମାଞ୍ଚଳ ଗସ୍ତ ସମୟରେ ଲୋକମାନଙ୍କୁ ବୁଝାଇଥିଲେ ।

ଆମ ରାଜ୍ୟରେ ପ୍ରଚୁର ପରିମାଣରେ ତାଳ ଜାତୀୟ ବୃକ୍ଷ ଅଛି, ଯାହାକୁ କି ଆମେ ଗ୍ରାମୀଣ ଅର୍ଥନୀତିର ବିକାଶ କ୍ଷେତ୍ରରେ ବହୁଳ ଭାବେ ଉପଯୋଗ କରିପାରିବା । ଏହି ତାଳ ଜାତୀୟ ବୃକ୍ଷଗୁଡ଼ିକ ହେଲା, ତାଳ, ଖଜୁରୀ, ନଡ଼ିଆ ଓ ସଳପ । ଏହି ଗଛମାନଙ୍କୁ ଉପଯୋଗ କରି ହଜାର ହଜାର ଗ୍ରାମୀଣ ବେକାର ଯୁବକ, ଯୁବତୀ ତଥା ଆଦିବାସୀ, ହରିଜନ ସଂପ୍ରଦାୟର କାରିଗରମାନଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦେଇ ହେବ । ଏହି ଶିଳ୍ପର ବୈଷୟିକ ଶିକ୍ଷା ପାଇଁ ସ୍ୱତନ୍ତ୍ର ତାଲିମ ଦେବାର ବ୍ୟବସ୍ଥା ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଅଛି । ଏହି ଶିଳ୍ପ ପାଇଁ ଅଳ୍ପ ମୂଳଧନର ଆବଶ୍ୟକ ଅଟେ । ଏଥିପାଇଁ ସାମଗ୍ରୀକ ବ୍ୟବସ୍ଥା କରାଗଲେ କୋଟି କୋଟି ଟଙ୍କାର ନୀରା, ଗୁଡ଼, ମିଶ୍ରି ଓ ଅନ୍ୟାନ୍ୟ ତାଳଜାତ ସାମଗ୍ରୀ ଉତ୍ପାଦିତ ହୋଇ ପାରିବ । ତତ୍ ସଂଗେସଂଗେ ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ସୀମାରେଖା ତଳେ ରହୁଥିବା ଲୋକମାନଙ୍କର ଅର୍ଥନୈତିକ ଅବସ୍ଥାର ଉନ୍ନତି ହୋଇପାରିବ ଓ ଗ୍ରାମ୍ୟ ଅର୍ଥନୀତି ସୁଦୃଢ଼ ହେବ, ଏଥିରେ ସନ୍ଦେହ ନାହିଁ ।

ରାଜ୍ୟରେ ତାଳଗୁଡ଼ ଶିଳ୍ପକୁ ଏକ କ୍ଷୁଦ୍ର ଶିଳ୍ପ ଭାବେ ଗ୍ରହଣ କରାଯିବା ସଂଗେସଂଗେ ଏହାର ବିକାଶ ପାଇଁ ରାଜ୍ୟ ସରକାର ୧୯୫୯ ମସିହାରୁ ଓଡ଼ିଶା ରାଜ୍ୟ ତାଳଗୁଡ଼ ସମବାୟ ସଂଘ ନାମରେ ଏକ ଶୀର୍ଷ ସମବାୟ ଅନୁଷ୍ଠାନ ଗଠନ କରାଯାଇ ଥିଲା । ବର୍ତ୍ତମାନ ଏହି ଶୀର୍ଷ ସମବାୟ ଅନୁଷ୍ଠାନ ଅଧୀନରେ ୫୧ ଗୋଟି ପ୍ରାଥମିକ ତାଳଗୁଡ଼ ସମବାୟ ସମିତି ବିଭିନ୍ନ ଜିଲ୍ଲାରେ କାର୍ଯ୍ୟ କରୁଛନ୍ତି । ରାଜ୍ୟ ସଂଘ ପ୍ରାଥମିକ ସମିତିର ସଭ୍ୟମାନଙ୍କୁ ତାଲିମ ଦେବା ସହିତ ଉପକରଣ ଓ ଋଣ ଯୋଗାଇ ଦେବାର ବ୍ୟବସ୍ଥା ସଂପୃକ୍ତ ସଂସ୍ଥା ଦ୍ୱାରା କରାଯାଇଥାଏ । ଏହି ସମିତି ସଭ୍ୟମାନଙ୍କ ଦ୍ୱାରା ଉତ୍ପାଦିତ ବିଭିନ୍ନ



ତାଳଜାତ ସାମଗ୍ରୀକୁ ସଂପୃକ୍ତ ସଂଘ ଦ୍ୱାରା ବିକ୍ରୟ କରିବାରେ ବିଶେଷ ସାହାଯ୍ୟ କରିଥାଏ । କଟକ ଜିଲ୍ଲାର ବହୁଗ୍ରାମ, ପୁରୀ ଜିଲ୍ଲାର ପାରିକୁଦ, ଗଜପତି ଜିଲ୍ଲାରେ ଛେଳିଗଡ଼ ଓ ଢେଙ୍କାନାଳ ଜିଲ୍ଲାର ପୋଡ଼ାପଡ଼ାଠାରେ ୪ ଗୋଟି ତାଳଶିଳ୍ପ ପୁଞ୍ଜି ରାଜ୍ୟ ସଂଘ ଅଧୀନରେ କାର୍ଯ୍ୟ କରୁଅଛି । ତାଳ ଶିଳ୍ପ ଦ୍ୱାରା ଉତ୍ପାଦିତ ସାମଗ୍ରୀଗୁଡ଼ିକ କଟକ, ଭୁବନେଶ୍ୱର, ପାରାଦ୍ୱୀପ ସମେତ ରାଜ୍ୟର ଅନ୍ୟାନ୍ୟ ସ୍ଥାନମାନଙ୍କରେ ବିକ୍ରି କରିବାର ବ୍ୟବସ୍ଥା କରାଯାଇଛି ।

ବର୍ତ୍ତମାନ ଭାରତବର୍ଷରେ ତାମିଲନାଡୁ ପଛକୁ ଆମ ରାଜ୍ୟ ତାଳଗୁଡ଼ ଶିଳ୍ପରେ ଦ୍ୱିତୀୟ ଅଗ୍ରଣୀ ରାଜ୍ୟ ହେବାର ଗୌରବ ଲାଭ କରିଅଛି । ଓଡ଼ିଶାରେ ଥିବା ତାଳ ଜାତୀୟ ଗଛମାନଙ୍କ ମଧ୍ୟରୁ କେବଳ ତାଳ, ଖଜୁରୀ ଓ ସଳପ ଗଛରୁ ଗୁଡ଼, ମିଶ୍ରି ଓ ତାଳ ଜାତୀୟ ଦ୍ରବ୍ୟ ଉତ୍ପାଦିତ ହୁଏ । ଅନ୍ୟ ରାଜ୍ୟ ଭଳି ଆମ ରାଜ୍ୟରେ ନଡ଼ିଆ ଗଛରୁ ଗୁଡ଼ ଉତ୍ପାଦନ କରାଯାଏ ନାହିଁ । ତାଳ ଜାତୀୟ ବୃକ୍ଷ ଅନ୍ୟ ବୃକ୍ଷ ଅପେକ୍ଷା ଅଧିକ ଉତ୍ପାଦନକ୍ଷମ ଓ ଲାଭଜନକ ଅଟେ । ଏକ ସର୍ବେକ୍ଷଣରୁ ଜଣାଯାଇଛି ଯେ ଗୋଟିଏ ତାଳଗଛରୁ ବାର୍ଷିକ ପ୍ରାୟ ୬୦୦ ଟଙ୍କାର ତାଳଜାତ ସାମଗ୍ରୀ ଉତ୍ପାଦିତ ହୋଇଥାଏ । ସେହିପରି ଗୋଟିଏ ଖଜୁରୀ ବା ସଳପ ଗଛରୁ ବାର୍ଷିକ ପ୍ରାୟ ୪୦୦ ଟଙ୍କାର ବିଭିନ୍ନ ସାମଗ୍ରୀ ଉତ୍ପାଦିତ ହୋଇଥାଏ । ଏକ ପରିସଂଖ୍ୟାନରୁ ଜଣାଯାଏ ଯେ, ଆମ ରାଜ୍ୟରେ ପ୍ରାୟ ୨୨ ଲକ୍ଷ ତାଳଗଛ, ୧୦ ଲକ୍ଷ ଖଜୁରୀଗଛ ଓ ୧ ଲକ୍ଷ ସଳପ ଗଛ ଅଛି । ସେଥିମଧ୍ୟରୁ ବର୍ତ୍ତମାନ କେବଳ ୨୦ ପ୍ରତିଶତ

ଗଛ ଏହି ଶିଳ୍ପ ପାଇଁ ବ୍ୟବହାର କରାଯିବା ସଂଗେସଂଗେ ଶିଳ୍ପ ମାଧ୍ୟମରେ ପ୍ରାୟ ୨୫୦୦୦ ଲୋକଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦିଆଯାଇପାରିଛି । ଯଦି ଆମ ରାଜ୍ୟରେ ଥିବା ସମସ୍ତ ତାଳ ଜାତୀୟ ବୃକ୍ଷକୁ ଉପଯୋଗ କରାଯାଏ, ତେବେ ଏହି ଶିଳ୍ପ ମାଧ୍ୟମରେ ପ୍ରାୟ ୧ ଲକ୍ଷରୁ ଊର୍ଦ୍ଧ୍ୱ ଲୋକଙ୍କ ପାଇଁ କର୍ମ ସଂସ୍ଥାନ ସୃଷ୍ଟି କରାଯିବା ସହିତ ରାଜ୍ୟର ଆର୍ଥିକ ମାନଦଣ୍ଡ କିଂଚିତ୍ ପରିମାଣରେ ସୁଦୃଢ଼ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।

ତାଳଗୁଡ଼ ଶିଳ୍ପରେ ଉତ୍ପାଦିତ ହେଉଥିବା ବିଭିନ୍ନ ଖାଦ୍ୟ ସାମଗ୍ରୀ, ତାଳପତ୍ର ସାମଗ୍ରୀ ଓ ଅନ୍ୟାନ୍ୟ ଆନୁଷଂଗିକ ପଦାର୍ଥର



ଚାହିଦା, ଗୁଣବତ୍ତା, ଉପାଦେୟତାର ସମ୍ୟକ୍ ଧାରଣା ଜନସାଧାରଣ ଜାଣିବା ନିତାନ୍ତ ଆବଶ୍ୟକ ଅଟେ ।

ବିଭିନ୍ନ ତାଳ ଜାତୀୟ ଗଛରୁ ବୈଜ୍ଞାନିକ ପ୍ରଣାଳୀରେ ରସ ସଂଗ୍ରହ କରାଯାଏ । ଏହି ରସରେ ସୁମିଷ୍ଟ, ସୁସ୍ୱାଦୁ ଓ ଉପାଦେୟ ପାନୀୟ ଭାବେ ବ୍ୟବହାର କରାଯାଇଥାଏ । ଏହି ରସକୁ ସାଧାରଣ ଭାବେ ସହର, ଗାଁଗହଳିର ଲୋକମାନେ ନୀରା ଭାବେ ଜାଣିଥାନ୍ତି । ଏହା ଦୁଗ୍ଧର ଏକମାତ୍ର ପରିପୂରକ ଖାଦ୍ୟ ସାରଯୁକ୍ତ ପାନୀୟ ଅଟେ । ଏହି ନୀରା ରସକୁ ରାନ୍ଧିଲେ ସେଥିରୁ ଗୁଡ଼, ମିଶ୍ରି, ଚିନି ଆଦି ତିଆରି ହୁଏ । ଏହା ଆଖୁ, ଗୁଡ଼ ଓ ଆଖୁ ଚିନିଠାରୁ ବହୁ ଗୁଣରେ ଅଧିକ ଖାଦ୍ୟ ସାରଯୁକ୍ତ ଖାଦ୍ୟ ରୂପେ ବ୍ୟବହାର କରାଯାଇଥାଏ । ତାଳ ମିଶ୍ରିରେ ଥିବା ଔଷଧୀୟ ଗୁଣ ଯୋଗୁଁ ଏହାର ଚାହିଦା ବେଶି ପରିମାଣରେ ପରିଲକ୍ଷିତ ହୋଇଥାଏ । ଆୟୁର୍ବେଦିକ ଚିକିତ୍ସକମାନେ ଏହି ମିଶ୍ରିକୁ ବ୍ୟବହାର କରି ଅନେକ ଔଷଧ ତିଆରି କରିଥାନ୍ତି । ଏହାବ୍ୟତୀତ ତାଳ ଚିନିରୁ ଚକୋଲେଟ, ଲଜେନ୍ସ ତଥା ମୃଦୁପାନୀୟ ତିଆରି କରାଯାଏ । ନିକଟ ଅତୀତରେ ଓଡ଼ିଶା ଦୁଗ୍ଧ ସମବାୟ ସଂଘ ଦ୍ୱାରା ତାଳଗୁଡ଼ଯୁକ୍ତ ଘିଅ ଉତ୍ପାଦନ କରି ଏହାର ଉପାଦେୟତା ସାଧାରଣରେ ପ୍ରତିଷ୍ଠିତ କରିପାରିଛନ୍ତି ।

ତାଳ ଗଛର ପତ୍ରରୁ ଜାତକଠାରୁ ଆରମ୍ଭ କରି ଆସନ, ବିଞ୍ଚଣା, ପେଡ଼ି, କୁଲେଇ କାମ, ଭୋଗ ଡାଲା, ଘର ସଜାଇବା ସାମଗ୍ରୀ ତଥା ଘରକରଣା ଜିନିଷ ସବୁ ତିଆରି କରାଯାଇଥାଏ । ଏହାଛଡ଼ା କଞ୍ଚା ତାଳପତ୍ରରୁ ଉନ୍ନତମାନର ସୁନ୍ଦର ସୁନ୍ଦର ସୌଖୀନ ସାମଗ୍ରୀ ତଥା ବାସ୍କେଟ, ଟ୍ରେ, ଖେଳନା, ଟୋପି, ଟେବୁଲ ମ୍ୟାଟ, ଫୁଲ, ନିମନ୍ତ୍ରଣ ପତ୍ର, ଭିଜିଟିଂ କାର୍ଡ଼, ଗ୍ରିଟିଂସ୍ କାର୍ଡ଼ ଇତ୍ୟାଦି ତିଆରି କରାଯାଇଥାଏ । ବର୍ତ୍ତମାନ ବିଶେଷ ଭାବେ ସହରାଞ୍ଚଳରେ ଏହି ସବୁ ତାଳପତ୍ର ସାମଗ୍ରୀର ଯଥେଷ୍ଟ ଚାହିଦା ରହିଛି । ତାଳଗଛ ବ୍ୟତୀତ ଖଜୁରୀ ଗଛରୁ ମଧ୍ୟ ବିଭିନ୍ନ ସାମଗ୍ରୀ ତିଆରି ହୋଇ ବଜାରରେ ବିକ୍ରି ହେଉଅଛି । ବିଶେଷତଃ ଖଜୁରୀପତ୍ରର ଝାଡୁର ଚାହିଦା ଓ ଆଦର ସମସ୍ତଙ୍କ ପାଖରେ ଦେଖାଯାଏ । ଏତଦ୍‌ଭିନ୍ନ ତାଳଗଛର ତନ୍ତୁରୁ ଚଟାଣ ସଫେଇ ବ୍ରସ୍,



ପାଇଖାନା ସଫେଇବ୍ରସ୍, ରାସ୍ତା ସଫେଇ ବ୍ରସ୍ ତିଆରି କରାଯାଇ ବ୍ୟବହାର କରାଯାଇଥାଏ । ବିଶେଷଭାବେ ଗାଁ ଗହଳିରେ ତାଳଗଛର କାଠ ଘର ତିଆରି ଉପକରଣ ରୂପେ ବ୍ୟବହୃତ ହୋଇଥାଏ । ଏହାଛଡ଼ା ହାତବାଡ଼ି, ବଙ୍କୁଲୀବାଡ଼ି ପ୍ରଭୃତି ତିଆରି କରାଯାଇଥାଏ ।

ତାଳଶିଳ୍ପର ଗୁରୁତ୍ୱ ଦୃଷ୍ଟିରୁ ଅଦରକାରୀ ଭାବେ ଥିବା ତାଳ ଜାତୀୟ ବୃକ୍ଷ ସମ୍ପଦକୁ ବିନିଯୋଗ କରି ଗ୍ରାମାଞ୍ଚଳରେ ବସବାସ କରୁଥିବା ବେକାର ଯୁବକ ଯୁବତୀମାନଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦେଇପାରିଲେ, ଗ୍ରାମ୍ୟ ଅର୍ଥନୀତିର ବିକାଶ ହେବା ସଂଗେସଂଗେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଅଗଣିତ କାରିଗରମାନଙ୍କର ସାମାଜିକ ତଥା ଅର୍ଥନୈତିକ ଅବସ୍ଥାର ବହୁଳ ଉନ୍ନତି ସାଧିତ ହୋଇପାରିବ ।

ଏହି ଗ୍ରାମ୍ୟ ଶିଳ୍ପର ପ୍ରସାର ଅଭିବୃଦ୍ଧି ପାଇଁ ସରକାରଙ୍କ ପକ୍ଷରୁ ସମସ୍ତ ପ୍ରକାର ପ୍ରୋତ୍ସାହନର ଆବଶ୍ୟକତା ରହିଛି । ପ୍ରତ୍ୟେକ ଜିଲ୍ଲାର ଶିଳ୍ପ କେନ୍ଦ୍ର ମାଧ୍ୟମରେ ଏହାର ତାଲିମ ଓ ଆର୍ଥିକ ଅନୁଦାନ ଦେବାର ବ୍ୟବସ୍ଥା କରାଯାଇଛି । ଏ ଦିଗରେ ଗ୍ରାମାଞ୍ଚଳ ଓ ସହରାଞ୍ଚଳର ବେକାର ଯୁବକ ଯୁବତୀମାନେ ଏହାର ସୁଯୋଗ ନେବା ପାଇଁ ସରକାରଙ୍କ ପକ୍ଷରୁ ପରାମର୍ଶ ଦିଆଯାଇଛି ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
ଭୁବନେଶ୍ୱର

# ଓଡ଼ିଶାରେ ନାରୀ ସଶକ୍ତିକରଣ : ଏକ ଅନୁଧ୍ୟାନ

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ

ରାଜ୍ୟ ସରକାରଙ୍କ ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମରେ ସଂପ୍ରତି ନାରୀ ବିକାଶକୁ ଅଧିକ ଗୁରୁତ୍ୱ ଦିଆଯାଇଛି । ସାକ୍ଷରତା, ନାରୀ ସଂଖ୍ୟାରେ ହ୍ରାସ ଓ ରାଜ୍ୟ ଅର୍ଥନୀତିରେ ମହିଳାମାନଙ୍କର ସଂଖ୍ୟା ହ୍ରାସ ଏହାର ପ୍ରଧାନ କାରଣ । ରାଜ୍ୟ ସରକାରଙ୍କର ଆଭିମୁଖ୍ୟରେ ଏବେ ସଂପୂର୍ଣ୍ଣ ପରିବର୍ତ୍ତନର ଦୃଶ୍ୟ ଦେଖାଯାଉଛି । ୧୯୫୦ ମସିହାରୁ ରାଜ୍ୟ ସରକାରଙ୍କ ଆଭିମୁଖ୍ୟ ଥିଲା, ମହିଳାମାନଙ୍କ ନିମନ୍ତେ ବିକାଶମୂଳକ କାର୍ଯ୍ୟକ୍ରମ ସଫଳ ରୂପାୟନ, ମାତ୍ର ୧୯୯୦ ମସିହାଠାରୁ ଏହି ଆଭିମୁଖ୍ୟ ସଶକ୍ତିକରଣ ଆଡ଼କୁ ଗତି କରିଛି । ସମାଜରେ ନାରୀକୁ ସଶକ୍ତିକରଣ କରିବା ପାଇଁ ସରକାରଙ୍କ ପ୍ରଚେଷ୍ଟା ଜାରି ରହିଛି ତଥାପି ପୁରୁଷ ପ୍ରଧାନ ସମାଜରେ ସଦାସର୍ବଦା ନାରୀର ସ୍ଥିତିରେ ସେତେଟା ଉନ୍ନତି ପରିଲକ୍ଷିତ ହୋଇ ପାରିନାହିଁ ।

ନାରୀ ସାକ୍ଷରତା ହାର ୧୯୯୧ ମସିହାରେ ଶତକଡ଼ା ୪.୫ ଥିବାବେଳେ ୨୦୦୧ ମସିହାରେ ତାହା ଶତକଡ଼ା ୫୦ ଦଶମିକ ୯୭ରେ ପହଞ୍ଚିଛି । ଏହା ତଥାପି ଜାତୀୟ ହାରାହାରି ସ୍ତର ଶତକଡ଼ା ୫୪ ଦଶମିକ ୧୬ରୁ କମ୍ ଅଟେ । ୨୦୦୧ ଜନଗଣନା ଅନୁଯାୟୀ ଓଡ଼ିଶାରେ ଶତକଡ଼ା ୩୧ ଦଶମିକ ୨୧ ଶିକ୍ଷିତ ମହିଳା କାର୍ଯ୍ୟ କରୁଛନ୍ତି । ପ୍ରଥମ ପଞ୍ଚବାର୍ଷିକ ଯୋଜନା ସମୟରେ ଓଡ଼ିଶାରେ ମହିଳାମାନଙ୍କ ବିକାଶ ପାଇଁ ଯେଉଁସବୁ କାର୍ଯ୍ୟକ୍ରମ କରାଯାଉଥିଲା ତାହା ଜନହିତକର ଓ ଜନମଙ୍ଗଳକାରୀ ଥିଲା ।

୧୯୫୩ ମସିହାରେ ଗଠିତ କେନ୍ଦ୍ର ସମାଜ ମଙ୍ଗଳ ବୋର୍ଡ଼ର ଶାଖା ଭାବେ ବିଭିନ୍ନ ରାଜ୍ୟରେ ଏହା ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନ ମାଧ୍ୟମରେ ମହିଳା ଓ ଶିଶୁମାନଙ୍କ ନିମନ୍ତେ ଜନମଙ୍ଗଳ କାର୍ଯ୍ୟ କାର୍ଯ୍ୟକାରୀ କରି ଆସୁଛି । ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ସମୟରେ ମହିଳାମାନେ 'ମହିଳା ମଣ୍ଡଳ' ଗଠନ କରି ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟ, ପୁଷ୍ଟିକରଣ ଓ ଜନହିତକର ପଦକ୍ଷେପମାନ ଗ୍ରହଣ କରିଥିଲା । ତୃତୀୟ ଓ ଚତୁର୍ଥ ପଞ୍ଚବାର୍ଷିକ ଯୋଜନା କାଳରେ ମହିଳାମାନଙ୍କ ଶିକ୍ଷା, ପ୍ରାକ୍-ବିଦ୍ୟାଳୟର ଶିଶୁମାନଙ୍କ ପାଇଁ ପ୍ରତିଷେଧକ ବ୍ୟବସ୍ଥା, ଗର୍ଭବତୀ ମହିଳା ଓ ଶିଶୁମାନଙ୍କୁ ଅଧିକ ଖାଦ୍ୟ ଯୋଗାଇ ଦିଆଯାଇଥିଲା । ପଞ୍ଚମ ପଞ୍ଚବାର୍ଷିକ ଯୋଜନା ସମୟରେ ଦାରିଦ୍ର୍ୟ ଦୂରୀକରଣ ଓ ସ୍ୱରୋଜଗାରକ୍ଷମ ହେବା ନିମନ୍ତେ ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା । ମହିଳାମାନଙ୍କ ପ୍ରତି ହେଉଥିବା ଅବିଚାର ଓ ଅସମାନତା ବିରୋଧରେ ଷଷ୍ଠ ପଞ୍ଚବାର୍ଷିକ ଯୋଜନାରେ ଅନେକ ପଦକ୍ଷେପ ଗ୍ରହଣ କରାଯାଇଥିଲା । ଏହି ଯୋଜନା କାଳରେ ସରକାରଙ୍କ ପକ୍ଷରୁ ବହୁମୁଖୀ ଆଭିମୁଖ୍ୟ ଗ୍ରହଣ କରାଯାଇଥିଲା । ଏହି ଆଭିମୁଖ୍ୟ ବିଶେଷତଃ ସ୍ୱାସ୍ଥ୍ୟ, ଶିକ୍ଷା ଓ ସାମାଜିକ - ଅର୍ଥନୈତିକ ଦିଗ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥିଲା । ଏହି ଯୋଜନା କାଳରେ ମହିଳାମାନଙ୍କ ନିମନ୍ତେ ନନ୍‌ଫର୍ମାଲ ଶିକ୍ଷା ଓ ଭୋକେସନାଲ୍ ତାଲିମ୍ କେନ୍ଦ୍ର ଖୋଲା ଯାଇଥିଲା । ଆଇ.ଆର୍.ଡି., ଟ୍ରାଇଜେମ୍, ଡୋକ୍ରା, ଆଇ.ସି.ଡି.ଏସ୍. ପ୍ରଭୃତି ବିକାଶମୂଳକ କାର୍ଯ୍ୟକ୍ରମ ଜରିଆରେ ମହିଳାମାନଙ୍କୁ ସହାୟତା ଯୋଗାଇ ଦିଆଯାଇଥିଲା । ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ସମାଜରେ ମହିଳାମାନଙ୍କର ସାମାଜିକ ଓ ଅର୍ଥନୈତିକ ଉନ୍ନତି ନିମନ୍ତେ ମଧ୍ୟ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ଅଷ୍ଟମ ପଞ୍ଚବାର୍ଷିକ ଯୋଜନା ସମୟରେ ସରକାରଙ୍କର ଆଭିମୁଖ୍ୟରେ ପରିବର୍ତ୍ତନ ଘଟିଥିଲା । ତାହା ବିକାଶରୁ ସଶକ୍ତିକରଣରେ ପରିଣତ ହୋଇଥିଲା ।

ମହିଳାମାନଙ୍କୁ ସଶକ୍ତିକରଣ ଲକ୍ଷ୍ୟରେ ସାମ୍ବିଧାନିକ ପରିବର୍ତ୍ତନ କରାଯାଇ ସ୍ଥାନୀୟ ଓ ସ୍ୱାୟତ୍ତ ଶାସନ ନିର୍ବାଚନ କ୍ଷେତ୍ରରେ ଶତକଡ଼ା ୩୦ ଭାଗ ସ୍ଥାନ ସଂରକ୍ଷଣ କରାଯାଇଛି । ଏହା ଫଳରେ ମହିଳାମାନେ ପଞ୍ଚାୟତ ଓ ମ୍ୟୁନିସିପାଲିଟି ନିର୍ବାଚନରେ ଅଂଶ ଗ୍ରହଣ କରିବା ସଂଗେସଂଗେ ବିଭିନ୍ନ ପଦପଦବୀ ଅଳଙ୍କୃତ କରିପାରିଛନ୍ତି । ଗ୍ରାମାଞ୍ଚଳରେ ମହିଳାମାନଙ୍କୁ ସଶକ୍ତିକରଣ କରିବା ନିମନ୍ତେ କେନ୍ଦ୍ରରେ ଜାତୀୟ ମହିଳା କମିଶନ ଓ ରାଜ୍ୟସ୍ତରରେ ମହିଳା କମିଶନ କରାଯାଇ ମହିଳାବର୍ଗଙ୍କ ଉପରେ ହେଉଥିବା ବିଭିନ୍ନ ଅତ୍ୟାଚାରର ଦୂରୀକରଣ ପାଇଁ ସକାରାତ୍ମକ ପଦକ୍ଷେପ ନିଆଯିବାର ଚେଷ୍ଟା କରାଯାଇଛି । ଗ୍ରାମାଞ୍ଚଳରେ ପଞ୍ଚାୟତ ସ୍ତରରେ ମହିଳାମାନଙ୍କୁ ସଚେତନ କରିବା ନିମନ୍ତେ ମହିଳା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ କରାଯାଇଛି । ନବମ

ପଞ୍ଚବାର୍ଷିକ ଯୋଜନା କାଳରେ ମହିଳାମାନଙ୍କ ବିକାଶ ପାଇଁ ମହିଳାମାନେ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି ।

କର୍ମକ୍ଷେତ୍ରରେ ପରିବେଶର ଉନ୍ନତି ତଥା କର୍ମନିଯୋଜନ ସମୟରେ ମହିଳାମାନଙ୍କୁ ସମାନ ସୁଯୋଗ ଦିଆଯିବା ଲକ୍ଷ୍ୟରେ ବିଭିନ୍ନ ରାଜନୈତିକ ଓ ପ୍ରଶାସନିକ ପଦକ୍ଷେପ ଗ୍ରହଣ କରାଯାଇଛି । ମହିଳା ସାକ୍ଷରତା ହାର ବୃଦ୍ଧି ସହିତ ସେମାନଙ୍କୁ ଗୁଣାତ୍ମକ ଶିକ୍ଷା ପ୍ରଦାନ ନିମନ୍ତେ ଗୁରୁତ୍ୱ ଆରୋପ କରାଯାଇଛି ।

ମହିଳାମାନଙ୍କର ସ୍ୱାସ୍ଥ୍ୟର ବିକାଶ ପାଇଁ କେତେକ ପ୍ରକଳ୍ପ ଗ୍ରହଣ କରାଯାଇଛି । (୧) ମହିଳାମାନଙ୍କୁ ବୈଷୟିକ ପ୍ରଶିକ୍ଷଣ ଦ୍ୱାରା ରୋଜଗାରକ୍ଷମ କରାଯିବ । (୨) ମହିଳା ସେଲଫ୍ ହେଲ୍‌ପ ଗ୍ରୁପ୍ ଓ ସ୍ୱେଚ୍ଛାସେବୀ ସଂଗଠନର ଗଠନ । (୩) ମହିଳା ଓ ଶିଶୁମାନଙ୍କ ନିମନ୍ତେ ବିଭିନ୍ନ ସକାରାତ୍ମକ ପଦକ୍ଷେପ ଗ୍ରହଣ । (୪) ଦଶମ ପଞ୍ଚବାର୍ଷିକ ଯୋଜନାରେ ୬ ବର୍ଷରୁ କମ୍ ବୟସ୍କ ଶିଶୁମାନଙ୍କର ପୁଷ୍ଟି ସାଧନ ଓ ସ୍ୱାସ୍ଥ୍ୟର ଉନ୍ନତି (୫) ଶିଶୁ ମୃତ୍ୟୁହାର ଓ ମାତୃ ମୃତ୍ୟୁହାର ହ୍ରାସ ଓ ସମସ୍ତ ମହିଳା ବିକାଶ ସଂପର୍କୀୟ ଅନେକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ।

ମହିଳାମାନଙ୍କ ବିକାଶ ନିମନ୍ତେ (୧) ମହିଳା କମିଶନ, (୨) ରାଜ୍ୟ ସମାଜ କଲ୍ୟାଣ ପରାମର୍ଶ ବୋର୍ଡ଼, (୩) ମହିଳା ସମିତି, (୪) ଦୁଃସ୍ଥ ମହିଳାମାନଙ୍କ ସହାବସ୍ଥାନ, (୫) ସର୍ଟଷ୍ଟେ ହୋମ୍, (୬) କର୍ମଜୀବୀ ମହିଳାମାନଙ୍କ ପାଇଁ ହଷ୍ଟେଲ, (୭) ପ୍ରୌଢ଼ ଶିକ୍ଷା, (୮) ଭୋକେସନାଲ୍ ଟ୍ରେନିଂ କାର୍ଯ୍ୟକ୍ରମ, (୯) ସ୍ୱେଚ୍ଛାସେବୀ ଆକ୍ସନ ବ୍ୟୁରୋ ଓ ପାରିବାରିକ କାଉନ୍‌ସେଲିଂ କେନ୍ଦ୍ର, (୧୦) ଗ୍ରାମ୍ୟ ଓ ଗରିବ ମହିଳାମାନଙ୍କୁ ସଚେତନ କରିବା ନିମନ୍ତେ ବିଭିନ୍ନ ପ୍ରୋଜେକ୍ଟ, (୧୧) ରାଜ୍ୟ ବାର୍ଦ୍ଧକ୍ୟ ଭତ୍ତା କାର୍ଯ୍ୟକ୍ରମ ଓ ଜାତୀୟ ବାର୍ଦ୍ଧକ୍ୟ ପେନ୍‌ସନ୍ ଯୋଜନା, (୧୨) ମିଶନ ଶକ୍ତି, ସ୍ୱୟଂ ସିଦ୍ଧ, (୧୩) ମହିଳା ବିକାଶ ସମବାୟ ନିଗମ, (୧୪) ସମନ୍ୱିତ ଶିଶୁ ବିକାଶ କାର୍ଯ୍ୟକ୍ରମ ଓ (୧୫) କିଶୋରୀ ଶକ୍ତି ଯୋଜନା ଆଦି କାର୍ଯ୍ୟକାରୀ କରାଯାଉଛି ।

ଓଡ଼ିଶା ସରକାର ୧୯,୦୦୦ କୋଟି ଟଙ୍କା ବ୍ୟୟ ଅଟକଳରେ ଦଶମ ପଞ୍ଚବାର୍ଷିକ ଯୋଜନା ପ୍ରସ୍ତୁତ କରିସାରିଛନ୍ତି, ଯାହାକି ନବମ ପଞ୍ଚବାର୍ଷିକ ଯୋଜନାଠାରୁ ଶତକଡ଼ା ୨୬.୭ ଭାଗ ଅଧିକ । ରାଜ୍ୟ ସରକାର ଆତ୍ମନିଯୁକ୍ତି ସୃଷ୍ଟି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରାଯିବାର ଲକ୍ଷ୍ୟ ରଖିଛନ୍ତି । ସଂପ୍ରତି ଶିକ୍ଷିତ ବେକାର ଯୁବକ ଯୁବତୀମାନଙ୍କ ପାଇଁ ଆତ୍ମନିଯୁକ୍ତି ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏକ ସ୍ୱତନ୍ତ୍ର ପ୍ୟାକେଜର ବ୍ୟବସ୍ଥା କରିଛନ୍ତି, ଯାହାଫଳରେ ଆସନ୍ତା ପାଞ୍ଚ ବର୍ଷ ମଧ୍ୟରେ ୧୮ ଲକ୍ଷ ଶିକ୍ଷିତ ବେକାର ଯୁବକ ଯୁବତୀଙ୍କ ପାଇଁ ଆତ୍ମନିଯୁକ୍ତିର ବ୍ୟବସ୍ଥା କରାଯାଇପାରିବ ।

କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ମହିଳାମାନଙ୍କୁ ପ୍ରଶିକ୍ଷଣ ଓ ନିଯୁକ୍ତି ପ୍ରଦାନ କାର୍ଯ୍ୟକ୍ରମ ଅନୁଯାୟୀ ସରକାର ଓମ୍‌ଫେଡ୍ ଜରିଆରେ ରାଜ୍ୟର ୧୭ ଗୋଟି ଜିଲ୍ଲାରେ ମହିଳା ଗୋପାଳନ ପ୍ରକଳ୍ପ ଚାଲୁ କରିବା ନିମନ୍ତେ ସକ୍ରିୟ ପଦକ୍ଷେପ ନେଇଛନ୍ତି । ରାଜ୍ୟର ୫୫,୨୦୫ ଜଣ ମହିଳା ସଦସ୍ୟାଙ୍କୁ ନେଇ ୬୫୦ଟି ମହିଳା 'ଗୋପାଳନ ସମବାୟ ସମିତି' ଗଠନ କରାଯାଇଛି । ମହିଳାମାନଙ୍କୁ ପ୍ରଶିକ୍ଷଣ ଓ ସେମାନଙ୍କ ନିଯୁକ୍ତି ଯୋଜନା କାର୍ଯ୍ୟକ୍ରମରେ କେ.ବି.କେ. ଜିଲ୍ଲା ମଧ୍ୟରୁ ୪ ଗୋଟି ଜିଲ୍ଲାକୁ ଅନ୍ତର୍ଭୁକ୍ତ କରିବାକୁ ଓଡ଼ିଶା ସରକାର କେନ୍ଦ୍ରକୁ ପ୍ରସ୍ତାବ ଦେଇଛନ୍ତି ।

୨୦୦୫ ମସିହା ସୁଦ୍ଧା ଶିଶୁ ମୃତ୍ୟୁହାର ପ୍ରତି ହଜାର ପିଛା ୬୦କୁ ହ୍ରାସ କରିବା ପାଇଁ ଓଡ଼ିଶା ସରକାର 'ଶିଶୁ ମୃତ୍ୟୁହାର ମିଶନ' ଅଗଷ୍ଟ ୨୦୦୧ ମସିହାରେ ଗଠନ କରିଛନ୍ତି । ଏହି ମିଶନରେ ଯାତାୟାତ ଖର୍ଚ୍ଚ ଏବଂ ଔଷଧ ମୂଲ୍ୟ ରାଜ୍ୟ ସରକାର ବହନ କରିବେ ।

ଓଡ଼ିଶା ସରକାର ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ କ୍ଷମତା ଓ ଦାୟିତ୍ୱ ପ୍ରତ୍ୟାର୍ପଣ କରିବାକୁ ଅତ୍ୟନ୍ତ ଆଗ୍ରହୀ । ଏହାଫଳରେ ସେମାନେ ସ୍ୱାୟତ୍ତ ଶାସିତ ଅନୁଷ୍ଠାନ ରୂପେ କାର୍ଯ୍ୟ କରିପାରିବେ । ୧୧ଟି ବିଭାଗର ୨୧ଟି ବିଷୟକୁ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ହସ୍ତାନ୍ତର କରାଯାଇଛି ।

ସ୍ୱର୍ଣ୍ଣଜୟନ୍ତୀ ଗ୍ରାମ ସ୍ୱରୋଜଗାର ଯୋଜନା ମାଧ୍ୟମରେ ୩୫୧୪ଟି ସ୍ୱୟଂ ସହାୟକ ଗୋଷ୍ଠୀ ସମେତ ୫୯,୨୮୯ ଜଣ ସ୍ୱରୋଜଗାରୀଙ୍କୁ ସହାୟତା ପ୍ରଦାନ କରାଯାଇଛି । ଦାରିଦ୍ର୍ୟ ସୀମାରେଖା ତଳେ (ବି.ପି.ଏଲ୍.) ଥିବା ପରିବାରଗୁଡ଼ିକର ଗଣନା ୨୦୦୩ ମସିହା ଜାନୁଆରୀ ୬ ତାରିଖରୁ ଆରମ୍ଭ ହୋଇଛି । ଆଦିବାସୀ ପରିବାରର ଆୟ ଓ ଜମିର ଅମଳ ବୃଦ୍ଧି ଏବଂ ସେମାନଙ୍କ ଜୀବନ ଧାରଣର ମାନ ଉନ୍ନତି ପାଇଁ ତା.୧୫.୭.୨୦୦୩ରିଖଠାରୁ ରାଜ୍ୟ ସରକାର ଓଡ଼ିଶା ଆଦିବାସୀ ସଶକ୍ତିକରଣ ଏବଂ ଜୀବିକା ନିର୍ବାହ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ସମନ୍ୱିତ ଶିଶୁ ବିକାଶ ଯୋଜନା ମାଧ୍ୟମରେ ଓଡ଼ିଶା ସରକାର ମହିଳା ଓ ଶିଶୁମାନଙ୍କ ବିକାଶ ପାଇଁ ଦୃଢ଼ ପଦକ୍ଷେପ ନେଇଛନ୍ତି । 'ବାଳିକା ସମୃଦ୍ଧି' ଯୋଜନାରେ ୧୯୯୯ ମସିହା ଅଗଷ୍ଟ ୧୫ ତାରିଖଠାରୁ ବି.ପି.ଏଲ୍. ଅନ୍ତର୍ଭୁକ୍ତ ପରିବାରରେ ଜନ୍ମିତ ପ୍ରଥମ ଦୁଇଗୋଟି ଶିଶୁ କନ୍ୟାଙ୍କ ପାଇଁ ପ୍ରସବ ପରବର୍ତ୍ତୀ ସାହାଯ୍ୟ ଆକାରରେ ୫୦୦ ଟଙ୍କା ଯୋଗାଇ ଦିଆଯାଉଛି ।

ମହିଳା ସଶକ୍ତିକରଣ ନିମନ୍ତେ ରାଜ୍ୟରେ ଆରମ୍ଭ ହୋଇଥିବା ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକର ସୁଦୃଢ଼ୀକରଣ ଏବଂ ଗୋଷ୍ଠୀ ଗଠନକୁ ଉତ୍ସାହିତ କରିବା ପାଇଁ ୨୦୦୧ ଆନ୍ତର୍ଜାତୀୟ ମହିଳା ଦିବସ ଅବସରରେ 'ମିଶନ ଶକ୍ତି' ନାମକ ଏକ ସ୍ୱୟଂ ସହାୟକ ଯୋଜନା ଆରମ୍ଭ କରାଯାଉଛି । ଏତଦ୍‌ବ୍ୟତୀତ ରାଜ୍ୟର ସମସ୍ତ ଜିଲ୍ଲାରେ

୮୩,୯୩୯ ଗୋଟି ନୂତନ ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇଛି । ଏହି ଗୋଷ୍ଠୀଗୁଡ଼ିକ ଦ୍ୱାରା ଖୁଚୁରା କିରୋସିନି ବିକ୍ରି, ସାଧାରଣ ବଣ୍ଟନ ବ୍ୟବସ୍ଥା, ଶ୍ରମଭିତ୍ତିକ କାର୍ଯ୍ୟ, ମତ୍ସ୍ୟଚାଷ, କୁକୁଡ଼ା ପାଳନ ଇତ୍ୟାଦି ବିଭିନ୍ନ ଅର୍ଥନୈତିକ କାର୍ଯ୍ୟକ୍ରମ ଚାଲୁ ରହିଛି । ଏହି ଗୋଷ୍ଠୀଗୁଡ଼ିକୁ ବିଭିନ୍ନ ଜାତୀୟକରଣ ବ୍ୟାଙ୍କରୁ ଋଣ ସହାୟତା ଯୋଗାଇ ଦିଆଯାଇଛି ।

ମିଶନ ଶକ୍ତି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ସଦସ୍ୟାମାନଙ୍କ ଆର୍ଥିକ ଅଭିବୃଦ୍ଧି ପାଇଁ ସେମାନଙ୍କୁ ମତ୍ସ୍ୟ ଚାଷ, କୁକୁଡ଼ା ପାଳନ, ଫଳଚାଷ, ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ସହିତ ଖୁଚୁରା କିରୋସିନି ବିକ୍ରି, ସାଧାରଣ ବଣ୍ଟନ ବ୍ୟବସ୍ଥା ଇତ୍ୟାଦି କାର୍ଯ୍ୟ ପ୍ରତି ଉତ୍ସାହିତ କରାଯିବା ସଂଗେସଂଗେ ସେମାନଙ୍କର ଆର୍ଥିକ ମାନଦଣ୍ଡକୁ ସୁଦୃଢ଼ କରାଯିବା ପାଇଁ କାର୍ଯ୍ୟପନ୍ଥାମାନ ସରକାରଙ୍କ ପକ୍ଷରୁ ଗ୍ରହଣ କରାଯାଉଛି । ମିଶନ ଶକ୍ତି କାର୍ଯ୍ୟକ୍ରମରେ ରାଜ୍ୟରେ ବର୍ତ୍ତମାନ ସୁଦ୍ଧା ୧୨ ଲକ୍ଷ ୪୨ ହଜାର ୩୧୩ ଜଣ ସଦସ୍ୟାଙ୍କୁ ନେଇ ୧ ଲକ୍ଷ ୧୯ ହଜାର ୧୯୪ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇଛି । ସେଥି ମଧ୍ୟରୁ ୫୮,୫୬୯ଟି ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ବିଭିନ୍ନ ଜାତୀୟକରଣ ବ୍ୟାଙ୍କରୁ ୭୩.୯୭ କୋଟି ଟଙ୍କାର ଋଣ ସହାୟତା ଯୋଗାଇ ଦିଆଯାଇଛି । ଏ ସମସ୍ତ ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ୪୫.୮୫ କୋଟି ଟଙ୍କା ସଞ୍ଚୟ କରାଯାଇପାରିଛି । ଏହାଛଡ଼ା 'ଜନଶ୍ରୀ ବୀମା ଯୋଜନା'ରେ ୯୦,୭୩୯ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଅନ୍ତର୍ଭୁକ୍ତ କରାଯାଇପାରିଛି । ଏହାଛଡ଼ା ବୌଦ୍ଧ ସମେତ କେ.ବି.କେ. ଜିଲ୍ଲାର ୩୬ଟି ବ୍ଲକ୍‌ରେ ମହିଳାମାନଙ୍କୁ ଅଧିକ କ୍ଷମତା ଦେବା ପାଇଁ ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମ ମାଧ୍ୟମରେ ୮୪୧ଟି କେନ୍ଦ୍ରୀୟ ସହାୟତାରେ 'ସ୍ୱୟଂସିଦ୍ଧ ଯୋଜନା' ମହିଳା ସ୍ୱୟଂ ସହାୟତା ଗୋଷ୍ଠୀ ମଧ୍ୟ କାର୍ଯ୍ୟକାରୀ ହେଉଛି । ଓଡ଼ିଶା ଯୌତୁକ ନିରୋଧ ଆଇନ ପ୍ରଣୟନ କରାଯାଇଛି ଏବଂ ରାଜ୍ୟର ସମସ୍ତ ସବ୍‌ଡିଭିଜନରେ ଯୌତୁକ ନିରୋଧ ବୋର୍ଡ଼ କାର୍ଯ୍ୟ କରୁଛି । ବୌଦ୍ଧ ସମେତ କେ.ବି.କେ. ଜିଲ୍ଲାର ୩୬ଟି ବ୍ଲକ୍‌ରେ ମହିଳାମାନଙ୍କୁ ଅଧିକ କ୍ଷମତା ଦେବା ପାଇଁ କେନ୍ଦ୍ରୀୟ ସହାୟତାରେ 'ସ୍ୱୟଂସିଦ୍ଧ ଯୋଜନା' ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଜରିଆରେ କାର୍ଯ୍ୟକାରୀ ହୋଇଛି । ରାଜ୍ୟର ୨୮ଟି ଜିଲ୍ଲାରେ ଅନାଥ ଓ ନିରାଶ୍ରୟ ଶିଶୁମାନଙ୍କର କଲ୍ୟାଣ ନିମନ୍ତେ ଯୋଜନା କାର୍ଯ୍ୟକାରୀ ହେଉଅଛି ଏବଂ ୫୬୦୩ ଶିଶୁ ୮୫ଟି ଅନାଥାଶ୍ରମରେ ପାଳିତ ହେଉଛନ୍ତି । ସାରା ରାଜ୍ୟରେ ଶାରୀରିକ ଅକ୍ଷମ ବ୍ୟକ୍ତିମାନଙ୍କୁ ସାହାଯ୍ୟ ଓ ଆନୁଷଙ୍ଗିକ ଉପକରଣ ଯୋଗାଇ ଦିଆଯାଉଛି ।

ରାଜ୍ୟର ମହିଳାମାନେ ସେମାନଙ୍କର ଆବଶ୍ୟକତା ଅନୁସାରେ ହେଲ୍‌ପ ଲାଇନକୁ ଫୋନ୍ କରିପାରିବେ । ରାଜ୍ୟରେ ୫ଟି ସ୍ଥାନରେ ଏହି ହେଲ୍‌ପ ଲାଇନର ସୁବିଧା କରାଯାଇଛି । ସେଗୁଡ଼ିକ ହେଲା ରାଉରକେଲା, ସମ୍ବଲପୁର, ବ୍ରହ୍ମପୁର, ନୟାଗଡ଼ ଓ ପୁରୀ । ରାଜ୍ୟରେ ମହିଳା ଅତ୍ୟାଚାର ମାମଲା ବିଚାର ପାଇଁ ସ୍ୱତନ୍ତ୍ର କୋର୍ଟ ପ୍ରତିଷ୍ଠା ହେବ ବୋଲି ମୁଖ୍ୟମନ୍ତ୍ରୀ କହିଛନ୍ତି ।

ଜାତିସଂଘ ଜନସଂଖ୍ୟା ପାଣ୍ଠିର ଓଡ଼ିଶା ଶାଖାର 'ବିଶ୍ୱ ଜନସଂଖ୍ୟା ସ୍ଥିତି - ୨୦୦୪' ରିପୋର୍ଟ ପ୍ରକାଶ ଅବସରରେ ଉଦ୍‌ବୋଧନ ଦେଇ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଦାରିଦ୍ର୍ୟ ଦୂରୀକରଣ, ମହିଳା ସଶକ୍ତିକରଣ ଓ ମାତୃ ଏବଂ ଶିଶୁ ମୃତ୍ୟୁହାର ହ୍ରାସ ଉପରେ ଗୁରୁତ୍ୱ ଦେଇଛନ୍ତି । (ସମାଜ ୧୬.୯.୦୪)

ଏହା ଅତ୍ୟନ୍ତ ଖୁସିର ବିଷୟ ଯେ, କେନ୍ଦ୍ର ସରକାର ଓ ଏକମାତ୍ର ରାଜ୍ୟ କର୍ଣ୍ଣାଟକରେ ନାରୀକଲ୍ୟାଣ ପ୍ରତି ଅଧିକ ସଚେତନ ହୋଇଛନ୍ତି ବଜେଟ୍‌ରେ । ମହିଳା ସଂଗଠନଗୁଡ଼ିକର ମୁଖ୍ୟ ଦାବୀ ଥିଲା ଜେଣ୍ଡର ବଜେଟରେ ।

**ଗ୍ରନ୍ଥସୂଚୀ**


୧. Economic Survey of Orissa 2002-03.

୨. ଓଡ଼ିଶା ବିଧାନସଭାରେ ରାଜ୍ୟପାଳ ଶ୍ରୀ ଏମ୍.ଏମ୍. ରାଜେନ୍ଦ୍ରନ୍‌ଙ୍କ ଅଭିଭାଷଣ, ଜୁନ୍ ୩୦, ୨୦୦୪ ।

୩. ଉତ୍କଳ ପ୍ରସଙ୍ଗ, ପୃ.୨୯, ଅକ୍ଟୋବର ୨୦୦୪ ।



ସହକାରୀ ସୂଚନା ଅଧିକାରୀ
ଜୟଦେବ ଭବନ, ଭୁବନେଶ୍ୱର




# ଲୋକ ଓ ଶାସ୍ତ୍ରୀୟ ପରମ୍ପରାର ସହାବସ୍ଥାନ : ଧନୁଯାତ୍ରା

## ଏକ ଆଲୋଚନା

ଡକ୍ଟର ଚିତ୍ରସେନ ପଶାୟତ

ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ କ୍ଷେତ୍ରର ସ୍ୱକୀୟ ସଂସ୍କୃତି ଓ ପରମ୍ପରା ରହିଛି ଯାହାକି ଉକ୍ତ କ୍ଷେତ୍ରର ଐତିହ୍ୟ ଓ ଜାତୀୟତାର ସ୍ମାରକୀ । ପର୍ବପର୍ବାଣି, ଯାନିଯାତ୍ରା ପରମ୍ପରା ଦେଖିବାକୁ ଯେମିତି ଆନନ୍ଦଦାୟକ ଏବଂ ରୁଚିପୂର୍ଣ୍ଣ ସେହିପରି ସେଗୁଡ଼ିକ ଉକ୍ତ ସାଂସ୍କୃତିକ କ୍ଷେତ୍ର ନିମନ୍ତେ ଦୁର୍ଲଭ ଉପଲବ୍ଧି ମଧ୍ୟ । ସଂସ୍କୃତିର ଅଙ୍ଗୀକୃତ ଗୋଟିଏ ଗୋଟିଏ ଅବିଚ୍ଛେଦ୍ୟ ଅଂଶବିଶେଷ ରୂପେ ଏସବୁ ଅସାଧାରଣ ତଥା ମହତ୍ୱପୂର୍ଣ୍ଣ ମନେହୁଏ । ଉକ୍ତ କ୍ଷେତ୍ରର ମୌଳିକ ଶକ୍ତି ଓ ସାଂସ୍କୃତିକ ପରିଚୟକୁ ଉଜ୍ଜୀବିତ କରିବାରେ ଏଗୁଡ଼ିକ ବିରଳ ଭୂମିକା ନିଭେଇଥାନ୍ତି । ଏହି କ୍ରମରେ ଶ୍ରୀକ୍ଷେତ୍ର ପୁରୀର ରଥଯାତ୍ରା, ସମ୍ବଲପୁରର ଶୀତଳଷଷ୍ଠୀ, ବରଗଡ଼ର ଧନୁଯାତ୍ରା ଇତ୍ୟାଦି ସଂପୃକ୍ତ ଅଞ୍ଚଳର ସ୍ୱତନ୍ତ୍ର ପରିଚିତିକୁ ଉଦ୍‌ଭାସିତ କରିବା ପୂର୍ବକ ସ୍ୱୀକୃତି ପ୍ରଦାନ ମଧ୍ୟ କରିଥାଏ । ଧର୍ମର ମାର୍ଗକୁ ସରଳ ଓ ପ୍ରଶସ୍ତ କରିବା ନିମନ୍ତେ ଲୋକ ପରମ୍ପରାର ଆବିର୍ଭାବ । ତେଣୁ ଲୋକ ପରମ୍ପରା ସଂକୀର୍ଣ୍ଣ ଅଥବା ଅସ୍ପୃଶ୍ୟ ନୁହେଁ । ଜାତି, ବର୍ଣ୍ଣ, ଧର୍ମ, ଗୋଷ୍ଠୀ, ସଂପ୍ରଦାୟ ନିର୍ବିଶେଷରେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକ ପରମ୍ପରା ଉକ୍ତ ଅଞ୍ଚଳକୁ ଅନ୍ୟାନ୍ୟ ଅଞ୍ଚଳ ସହିତ ସଂଯୋଗ କରିବାରେ ସମନ୍ୱୟର ସେତୁ ରୂପେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ ଏବଂ ସମସ୍ତ ପ୍ରକାର ଭେଦଭାବକୁ ଭୁଲି ସମସ୍ତଙ୍କୁ ଆବୋରି ନେଇ ପରସ୍ପରକୁ ପରସ୍ପର ସହିତ ସମ୍ମିଳିତ କରିଥାଏ । ଏହି ପରିପ୍ରେକ୍ଷୀରେ ବରଗଡ଼ରେ ଅନୁଷ୍ଠିତ ହେଉଥିବା ସର୍ବଜନବିଦିତ ଧନୁଯାତ୍ରା ଲୋକନାଟକ ପରମ୍ପରାର ଏକ ସାର୍ଥକ ରୂପାୟନ । ଆଉଣ୍ଡି ହେଲେ ମଧ୍ୟ କେବଳ ଓଡ଼ିଶା ନୁହେଁ, ସମଗ୍ର ମାନବ ଜାତିରେ ଅନ୍ୟତ୍ର ଏହିପରି ଲୋକ ପରମ୍ପରା ଦୁର୍ଲକ୍ଷ୍ୟ । ବରଗଡ଼ର ଏହା ଜାତୀୟ ସ୍ୱାତନ୍ତ୍ର୍ୟ ଏବଂ ଓଡ଼ିଆ ଲୋକ ସଂସ୍କୃତିକୁ ଏହା ଋଦ୍ଧିମନ୍ତ କରିଛି ବୋଲି ନିଃସନ୍ଦେହରେ କୁହାଯାଇପାରେ । ସାଂପ୍ରତିକ ସମାଜରେ ଅର୍ଥ ଓ ବାହୁବଳ ଯେଭଳି ଭାବେ କ୍ଷମତା ରାଜନୀତିକୁ ନିଜ ଅକ୍ତିଆରରେ ରଖି ନିୟନ୍ତ୍ରଣ କରୁଛନ୍ତି ତଦ୍ୱାରା ସାମାଜିକ ବ୍ୟବସ୍ଥାରେ ଶ୍ରେଣୀ ବିଭାଗ ସୃଷ୍ଟି ହୋଇଛି । ଏହି ଧାରାରେ ପରିବର୍ତ୍ତନ ଆଣିବାର ଗୁରୁମନ୍ତ୍ରକୁ ଧନୁଯାତ୍ରା ପ୍ରଚାର କରେ । ପରୋକ୍ଷରେ ଜାତୀୟ ଏକତା ଓ ସଂହତିର ବାର୍ତ୍ତାକୁ ବହନକରି ସାରା ବିଶ୍ୱରେ ଖ୍ୟାତି ଅର୍ଜନ କରିଥିବା ଏହି ଲୋକନାଟକ ପରମ୍ପରା ସାଂସ୍କୃତିକ ସଂହତିର ଅଭିନବ ଝଲକ ।



ଓଡ଼ିଶାର ନବଗଠିତ ବରଗଡ଼ ଜିଲ୍ଲାର ସାଂସ୍କୃତିକ ଇତିହାସ ଅତ୍ୟନ୍ତ ଗୌରବମୟ ବୋଲି କହିବା ଅସଙ୍ଗତ ହେବ ନାହିଁ । ପଶ୍ଚିମାଞ୍ଚଳରେ ବରଗଡ଼କୁ କଳାବିକାଶର ପ୍ରାଣକେନ୍ଦ୍ର ବୋଲି ଅସଂଶୟ ହୃଦୟରେ ସ୍ୱୀକାର କରାଯାଇପାରେ । ବରଗଡ଼ ସହର ଉପକଣ୍ଠରେ ଆବହମାନ କାଳରୁ ପ୍ରବାହିତ ଜିରାନଈର ଗୋଟିଏ ପାର୍ଶ୍ୱରେ ବରଗଡ଼ ଏବଂ ଅନ୍ୟ ପାର୍ଶ୍ୱରେ ଅମ୍ବାପାଲି ଗ୍ରାମ ଅବସ୍ଥିତ । ଉଭୟ ଅଞ୍ଚଳକୁ ନେଇ ଏକ ବିରାଟ ମୁକ୍ତ ଲୋକମଞ୍ଚର ପରିକଳ୍ପନା କରିବା ଅନନୁଭବୀ ପକ୍ଷେ ଅଚିନ୍ତନୀୟ । ପୌଷ ଶୁକ୍ଳ ଷଷ୍ଠୀ ତିଥିରୁ ପୌଷ ପୂର୍ଣ୍ଣିମା ଯାଏ ଅଳ୍ପକାଳସ୍ଥାୟୀ ଏକ ମୁକ୍ତ ଲୋକମଞ୍ଚରେ ଅନୁଷ୍ଠିତ ହେଉଥିବା ଧନୁଯାତ୍ରା ବିଶ୍ୱଲୋକ ସଂସ୍କୃତିକୁ ଏକ ଅମୂଲ୍ୟ ଦାନ । ଏହାକୁ ବିଶ୍ୱର ପ୍ରସିଦ୍ଧ ତଥା ସର୍ବବୃହତ ମୁକ୍ତ ରଙ୍ଗମଞ୍ଚରେ ଅଭିନୀତ ଲୋକ ନାଟକ ବୋଲି ଅଭିହିତ କରାଯାଇପାରେ । ଧନୁଯାତ୍ରା ସମୟରେ ବରଗଡ଼, ଅମ୍ବାପାଲି ଓ ଜୀରାନଈର ପ୍ରକୃତ ପରିଚୟ ବଦଳି ଯାଇଥାଏ । ବରଗଡ଼ ସହରକୁ ପୁରାଣ ବର୍ଣ୍ଣିତ ମଥୁରା ନଗରୀ, ଅମ୍ବାପାଲି ଗ୍ରାମକୁ ଗୋପପୁର ଏବଂ ଜୀରାନଈକୁ ଯମୁନା ନଈ ଭାବେ ପରିକଳ୍ପନା କରାଯାଏ । ଏତେବଡ଼ ପରିମିତ ଅଞ୍ଚଳ ବିଶିଷ୍ଟ ଲୋକମଞ୍ଚରେ ଏକକାଳୀନ ଅଭିନୀତ ହେଉଥିବା ଧନୁଯାତ୍ରା ଦର୍ଶକଙ୍କୁ ଅଭିଭୂତ କରିଥାଏ । ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ ଯେ, ଆଞ୍ଚଳିକତାର ସ୍ୱକୀୟ ସୌନ୍ଦର୍ଯ୍ୟ ରହିଛି । ଧନୁଯାତ୍ରା ପରିବେଷଣ ନିମିତ୍ତ କୌଣସି ପାରମ୍ପରିକ ମଞ୍ଚର ବ୍ୟବସ୍ଥା କିମ୍ବା ପରିକଳ୍ପନା ନକରିବା ଧନୁଯାତ୍ରା ଲୋକନାଟକ ପରମ୍ପରାର ବିଶେଷତ୍ୱ ଏବଂ ଏହା ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ । ଧନୁଯାତ୍ରାର ମୁଖ୍ୟ ନାୟକ ହେଉଛନ୍ତି ଦ୍ୱାପରଯୁଗର ପୁରାଣ ବର୍ଣ୍ଣିତ ମଥୁରା ନଗରୀର ଅତ୍ୟାଚାରୀ ଶାସକ କଂସ ମହାରାଜା । ପ୍ରସଙ୍ଗକ୍ରମେ

ଏଠାରେ ସୂଚନାଯୋଗ୍ୟ ଯେ ପ୍ରବଳ ପ୍ରତାପୀ କଂସ ମହାରାଜାଙ୍କ ଦରବାର ବରଗଡ଼ର ହାଟପଦାଠାରେ ଥିବା ଏକ ସ୍ଥାୟୀ ମଞ୍ଚରେ ଅଭିନୀତ ହେଉଥିଲେ ହେଁ ଅନ୍ୟ ସମସ୍ତ ଦୃଶ୍ୟ ଓ ପରିଚ୍ଛେଦ ବିନା ମଞ୍ଚରେ ପରିବେଷଣ ହେବା ବାସ୍ତବିକ ଆଚମ୍ବିତ କଥା । ଲୋକଯାତ୍ରାର ସମୃଦ୍ଧିରେ ଏହା ଏକ ସକାରାତ୍ମକ ପ୍ରକ୍ରିୟା ।

ପୌଷ ମାସରେ ଧନୁଯାତ୍ରା ପାଳନର ସାମାଜିକ ଯଥାର୍ଥତା ରହିଥିବାର ମନେହୁଏ । ବରଗଡ଼ ଏକ କୃଷି ପ୍ରଧାନ ଅଞ୍ଚଳ । ଏକଦା ଅବିଭକ୍ତ ସମ୍ବଲପୁର ଜିଲ୍ଲାର ଭାତହାଣ୍ଡି ରୂପେ ପରିଗଣିତ ବରଗଡ଼ର ମୁଖ୍ୟ କୃଷିଜାତ ଦ୍ରବ୍ୟ ହେଲା ଧାନ । ମାର୍ଗଶିର ମାସ ବେଳକୁ ଧାନକଟା କାର୍ଯ୍ୟ ପ୍ରାୟତଃ ଶେଷ ହୋଇଯାଇଥାଏ । ତତ୍‌ପରେ ଲୋକଙ୍କ ନିକଟରେ ଯଥେଷ୍ଟ ପରିମାଣରେ ଅର୍ଥ ଓ ଅବସର ସମୟ ଥାଏ । ପ୍ରକାଶ ଥାଉ କି ଧନୁଯାତ୍ରା ପାଇଁ ଯଥେଷ୍ଟ ଅର୍ଥ ଓ ସମୟର ଆବଶ୍ୟକତାକୁ ସହଜେ ଏଡ଼େଇ ଦେଇ ହେବ ନାହିଁ । ତେଣୁ ପୌଷ ମାସରେ ଧନୁଯାତ୍ରା ପାଳନ ସର୍ବାଦୌ ଯଥାର୍ଥ ମନେହୁଏ । ଉଲ୍ଲେଖନୀୟ ବିଷୟ ଏହିକି ଯେ ସାମାଜିକ ବିପ୍ଳବର ବାର୍ତ୍ତାକୁ ବହନ କରୁଥିବା ବରଗଡ଼ର ଏହି ଧନୁଯାତ୍ରାକୁ ଏକ ସାଧାରଣ ଲୋକ ପରମ୍ପରା ବୋଲି କୁହାଯାଇନପାରେ । ବିଦ୍ୱାନମାନେ କହନ୍ତି, ମଣିଷ ମନର ଦୁଇଟି ସ୍ତର ଅଛି । ଗୋଟିଏ ସ୍ତର ସର୍ବଦା ବାହ୍ୟିକ ବିଷୟ ଲାଳସା ଆଡ଼କୁ ଟାଣେ । ଅନ୍ୟଟି ହେଲା ଅନ୍ତର୍ମୁଖୀ ଯାହା ପାପ-ପୁଣ୍ୟ, ନୀତି-ଅନୀତି, ଭଲ ମନ୍ଦ ବିଚାରବୋଧ ଜାଗ୍ରତ କରାଏ । ମନ ଯେତେବେଳେ କଳୁଷିତ ହୁଏ ମଣିଷ ସେତେବେଳେ ନିମ୍ନଗାମୀ ହୁଏ । ଶ୍ରୀକୃଷ୍ଣ ଓ ବଳରାମଙ୍କୁ ଜୀବନରେ ମାରି ଦେଇ ନିରଙ୍କୁଶ କ୍ଷମତା ଉପଭୋଗ କରିବାର କଳୁଷିତ ମାନସିକତା କଂସ ମହାରାଜାଙ୍କଠାରେ ଦେଖା ଦେଲା । ତେଣୁ ତାଙ୍କର ଦୌରାତ୍ମ୍ୟରୁ ଶ୍ରୀକୃଷ୍ଣ-ବଳରାମ ଅସହାୟ ଜନସାଧାରଣଙ୍କୁ ମୁକ୍ତି ଦେବା, ଅତ୍ୟାଚାରୀ ଶାସନର ପତନ ତଥା ଜନସମୁଦାୟକୁ ସନ୍ତୁଷ୍ଟ କରିବା ବିଷୟ ଧନୁଯାତ୍ରାର ମୁଖ୍ୟ ପ୍ରସଙ୍ଗ । ହେଲେ ଏହି ଯାତ୍ରାର ଅନ୍ତର୍ନିହିତ ଭାବକୁ ଉପଲବ୍ଧି ହିଁ କରାଯାଇପାରେ । ଜୀବନ ସତ୍ୟ, ମୃତ୍ୟୁ ଅନିବାର୍ଯ୍ୟ । ମୁଁ ପ୍ରତିପତ୍ତିଶାଳୀ, ବିତ୍ତଶାଳୀ, ଶକ୍ତିଶାଳୀ, ପ୍ରଭାବଶାଳୀ, ସୁନ୍ଦର ଏହି ଅହମିକାରେ ସାଧାରଣ ମଣିଷ ବଞ୍ଚିଥାଏ । ପୁନଶ୍ଚ ସାଧାରଣ ମଣିଷ ସର୍ବଦା ଯଶପ୍ରିୟ ହୋଇଥାଏ । ଅନ୍ୟ ତୁଣ୍ଡରେ ନିଜର ପ୍ରଶଂସାକୁ ଶୁଣିବାକୁ ମଣିଷ ମନ ଆଉଣ୍ଡି ହେଉଥାଏ । ସମ୍ଭବତଃ ଅନ୍ୟର ତୁଣ୍ଡରେ ପ୍ରଶଂସା ଶୁଣିବା ଦ୍ୱାରା ମଣିଷ ନିଜ ଅହଂକାରର ପରିତୋଷଣ କରିଥାଏ । ମଣିଷ ଯେ ନଶ୍ୱର ଓ କାଳର କରାଳ ବକ୍ଷରେ ତାକୁ ଦିନେ ଲୀନ ହେବାକୁ ପଡ଼ିବ, ତାହା ଜାଣି ମଧ୍ୟ ସେ ବୃଥା ଅହମିକାରେ ଧରାକୁ ସରା ମନେକରେ । କିନ୍ତୁ ସମୟାନୁକ୍ରମେ ତାହା ଆତ୍ମଘାତୀ ସିଦ୍ଧ ହୋଇଥାଏ । ପ୍ରବଳ ପ୍ରତାପୀ କିନ୍ତୁ ଅକଥନୀୟ ଅତ୍ୟାଚାର ତଥା ଶୋଷଣର ପ୍ରତୀକ କଂସ ମହାରାଜାଙ୍କ କ୍ଷେତ୍ରରେ ତାହା ହିଁ ଘଟିଛି ।

ଦ୍ୱାପର ଯୁଗରେ କଂସର ଶାସନ ଅନୀତି, ଦୁର୍ନୀତି ଓ ଆତଙ୍କର ପ୍ରତୀକ ବୋଲି କୁହାଯାଏ । ଅତ୍ୟନ୍ତ ଅସହିଷ୍ଣୁ, ସାମ୍ରାଜ୍ୟବାଦୀ ତଥା ଅତ୍ୟାଚାରୀ ଇଂରେଜ ଶାସନର ପତନ ଏବଂ ସାଧାରଣ ଜନତାଙ୍କ ମୁକ୍ତିର ବାର୍ତ୍ତାକୁ ବହନକରି ଆସିଥିବା ଧନୁଯାତ୍ରା ପରମ୍ପରା ପ୍ରାପ୍ତ ସୂଚନା ଅନୁଯାୟୀ ୧୯୪୭-୪୮ ମସିହାରେ ପୁନର୍ଜୀବିତ ହୋଇଥିଲା । ସନାତନ ହିନ୍ଦୁଧର୍ମର ଦେବଦେବୀଙ୍କୁ ଅତୀତରେ ଅନେକବାର ଲାଞ୍ଛିତ କରାଯାଇଛି । ଭାରତ ସ୍ୱାଧୀନତା ଲାଭ କଲାପରେ ଇଂରେଜ ଶାସକଙ୍କ ଅତ୍ୟାଚାରରୁ ସଦ୍ୟମୁକ୍ତ ବରଗଡ଼ବାସୀ ସେହି ମହାନ ଅବସରକୁ ଚିରସ୍ମରଣୀୟ କରିବା ପାଇଁ କଂସବଧ ଉପାଖ୍ୟାନ ଉପରେ ପର୍ଯ୍ୟବସିତ ଧନୁଯାତ୍ରା ପାଳନ କରିବା ବେଶ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ଅବଶ୍ୟ କୌଣସି କାରଣରୁ ଗତ ଶତାବ୍ଦୀର ଷଷ୍ଠ ଓ ସପ୍ତମ ଦଶକରେ ପ୍ରାୟ ପାଞ୍ଚ, ଛଅ ବର୍ଷ ଧରି କ୍ରମାଗତ ଭାବେ ଧନୁଯାତ୍ରା ପାଳନ କରାଯାଇ ପାରି ନଥିବାର ସୂଚନା ମିଳେ । କିନ୍ତୁ ତା'ପରଠୁ ନିରବଚ୍ଛିନ୍ନ ଭାବେ ଏହି ଲୋକ ପରମ୍ପରା ଜନମାନସକୁ ମନୋରଞ୍ଜନ ପ୍ରଦାନ କରିବା ସହିତ ପ୍ରସିଦ୍ଧିପ୍ରାପ୍ତ ମଧ୍ୟ କରିଛି । ଆଉ କେତେଜଣଙ୍କ ମତରେ ଧନୁଯାତ୍ରା ପରମ୍ପରା ସ୍ୱାଧୀନୋତ୍ତର କାଳର ସୃଷ୍ଟି ନୁହେଁ । ଏହା ଏକ ପ୍ରାଚୀନ ଲୋକ ପରମ୍ପରା ଯାହାକି ବରଗଡ଼, ଭଟଲି, କୁସୁନପୁର ଓ ନୂଆପାଲି ଇତ୍ୟାଦି ଅଞ୍ଚଳରେ ଏକଦା ସତତ ପ୍ରଚଳିତ ଥିଲା । ବିଭିନ୍ନ ସମୟରେ ବିଭିନ୍ନ କାରଣକୁ ନେଇ ଅବଶ୍ୟ ଏହି ଲୋକ ପରମ୍ପରାର ଅବାରିତ ଧାରା ଗତି ରହିତ ହୋଇଥିବାର ଶୁଣାଯାଏ । ତତ୍‌କାଳୀନ ସମାଜରେ ଏହି ଲୋକ ପରମ୍ପରା ରାଜନ୍ୟବର୍ଗ, ସ୍ଥାନୀୟ ଗଉଁତିଆ, ଜମିଦାର ଓ ଧନାଢ୍ୟବର୍ଗଙ୍କ ପୃଷ୍ଠପୋଷକତା ଲାଭ କରି ବଞ୍ଚି ରହିଥିବା ବିଷୟ ଅମୂଳକ ମନେହୁଏ ନାହିଁ । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବିଶ୍ୱଯୁଦ୍ଧ, ସ୍ୱାଧୀନତା ଆନ୍ଦୋଳନ ଓ ରାଜନୈତିକ ଅସ୍ଥିରତା ଯୋଗୁଁ ବରଗଡ଼ର ଧନୁଯାତ୍ରା ପରମ୍ପରା ସାମୟିକ ଭାବେ ଅବରୁଦ୍ଧ ହୋଇଥିବା ବିଷୟ ମଧ୍ୟ ଅଯଥାର୍ଥ ମନେହୁଏ ନାହିଁ । କିନ୍ତୁ କୁସୁନପୁର, ଭଟଲି ଓ ନୂଆପାଲି ଇତ୍ୟାଦି ଗ୍ରାମାଞ୍ଚଳରେ ଏହି ପରମ୍ପରାର ଧାରା ଅବ୍ୟାହତ ଥିଲା ବୋଲି ଶୁଣାଯାଏ ।

ଲକ୍ଷାଧିକ ଲୋକଙ୍କ ସମାଗମରେ ପାଳନ କରାଯାଉଥିବା ଧନୁଯାତ୍ରା ପ୍ରାୟ ନଅରୁ ଦଶଦିନ ଧରି ଦିନରାତି ଏକ ବିସ୍ତୃତ ଅଞ୍ଚଳରେ ଅହରହ ଚାଲିଥାଏ ।ଏହି ଅବସରରେ ବିଦ୍ୟୁତ ସାଜସଜ୍ଜାରେ ମୀନାବଜାର, ବିଦ୍ୟୁତଝୁଲା, କଳାକୁଞ୍ଜ, ଅପେରା, କାଠ ପୁତୁଳି ନୃତ୍ୟ, ଯାଦୁ, ସର୍କସ ତଥା ବିଭିନ୍ନ ବୈଷୟିକ ଅନୁଷ୍ଠାନର ପ୍ରଚାର ଇତ୍ୟାଦିରେ ଧନୁଯାତ୍ରା ପରିବେଷିତ ହେଉଥିବା ସମଗ୍ର ତଥା ବିରାଟ ମୁକ୍ତ ରଙ୍ଗମଞ୍ଚଟି ଖୁବ୍ ମନଲୋଭା ଓ ଆକର୍ଷଣୀୟ ହୋଇଥାଏ । ଧନୁଯାତ୍ରା ପରମ୍ପରା ଅବାନ୍ତର ମନେହୁଏ ନାହିଁ । ଅତୀତରେ ହିନ୍ଦୁଧର୍ମ ମଧ୍ୟରେ ବହୁ ଧର୍ମାନ୍ଧତା ପ୍ରବେଶ କରିଥିଲା । ମନ କଳୁଷିତ ହେଉ କି ପରିଷ୍କୃତ ହେଉ ମଣିଷ ସର୍ବଦା ସୁଖ ପାଇଁ ଧାଇଁଥାଏ । ତେବେ ସୁଖପ୍ରାପ୍ତି ନିମିତ୍ତ ଯେଉଁ ଉପାୟ ଅବଲମ୍ବନ କରିବା କଥା ତାହା ମଣିଷର ବିବେକ ବା ବିଚାର

ଶକ୍ତି ଦ୍ୱାରା ନିୟନ୍ତ୍ରିତ ହେବା କଥା । ମଣିଷ ଯେତେବେଳେ ବିଳାସବ୍ୟସନ, ପ୍ରାଚୁର୍ଯ୍ୟ ତଥା ବାହ୍ୟ ପ୍ରଶଂସାକୁ ଏଡି ଦେଇ ଅନ୍ତର୍ମୁଖୀ ହୋଇଥାଏ ଅର୍ଥାତ୍ ଆତ୍ମସମୀକ୍ଷା ପୂର୍ବକ ନିଜ ଭିତରର ସମସ୍ତ ଦୋଷତୃଟି ତଥା ଦୁର୍ଗୁଣ ବିଷୟରେ ସଚେତନ ହୁଏ, ସେତେବେଳେ ଜୀବନ ପ୍ରତି ଥିବା ତା'ର ଆଭିମୁଖ୍ୟ ବଦଳିଯାଏ ଏବଂ ତା'ର ଆଚରଣରେ ପରିବର୍ତ୍ତନ ଦେଖାଦିଏ । କେଉଁ ଯୋଗଜନ୍ମା ଉଦାର ସଂସ୍କାରକମାନେ ବରଗଡ଼ ମାଟିରେ ଜନ୍ମଗ୍ରହଣ କରି ବିଭିନ୍ନ ପର୍ଯ୍ୟାୟରେ ଧନୁଯାତ୍ରା ପରମ୍ପରାକୁ ଏକ ସାର୍ଥକ ରୂପ ଦେଇଛନ୍ତି ତାହା କହିହେବ ନାହିଁ । ଏହା କେବଳ ସ୍ଥାନୀୟ ଲୋକଙ୍କୁ ଆତ୍ମହରା କରିନାହିଁ, ବାହାରର ଲୋକଙ୍କ ମନରେ ମଧ୍ୟ ଅନୁରାଗ ସୃଷ୍ଟି କରିପାରିଛି । ବହୁ ଦୂରଦୂରାନ୍ତରୁ ଏପରିକି ବିଦେଶରୁ ଆସୁଥିବା ପର୍ଯ୍ୟଟକଗଣଙ୍କୁ ମଧ୍ୟ ଧନୁଯାତ୍ରା ଆକୃଷ୍ଟ ତଥା ଆକର୍ଷିତ କରିଥିବାର ପରିଲକ୍ଷିତ ହୋଇଥାଏ । ଏହି ଦୃଷ୍ଟିକୋଣରୁ ଧନୁଯାତ୍ରା ଏକ ସଂକୀର୍ଣ୍ଣ ଲୋକ ପରମ୍ପରା ଆଦୌ ହୋଇନପାରେ, ବରଂ ଏହି ଅଞ୍ଚଳର ଏକ ସମୃଦ୍ଧ ଲୋକ ପରମ୍ପରା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପୌଷ ଶୁକ୍ଳ ଷଷ୍ଠୀଠାରୁ ଧନୁଯାତ୍ରା ଆରମ୍ଭ ହୋଇ ପୌଷ ପୂର୍ଣ୍ଣିମା ଯାଏ ପ୍ରାୟ ନଅ ଦଶ ଦିନ କାଳ ଅନୁଷ୍ଠିତ ହୋଇଥାଏ । କଂସ ମହାରାଜା ତଥା ଶ୍ରୀକୃଷ୍ଣ ଚରିତ ଉପରେ ଆଧାରିତ ବିଭିନ୍ନ ଦୃଶ୍ୟ ଧନୁଯାତ୍ରାର ମୁଖ୍ୟ ଆକର୍ଷଣ । ଦେବକୀ-ବସୁଦେବଙ୍କ ବିବାହଠାରୁ ଆରମ୍ଭ କରି କଂସବଧ ପର୍ଯ୍ୟନ୍ତ ସମୁଦାୟ ପୌରାଣିକ ଆଖ୍ୟାୟନକୁ ଏକ ସୁନ୍ଦର ନାଟକୀୟ ରୂପ ପ୍ରଦାନ କରି ଧନୁଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହି ପରିପ୍ରେକ୍ଷୀରେ ଅମ୍ବାପାଲି ଗ୍ରାମ ସାଜେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାସ୍ଥଳୀ ଗୋପପୁର । ଏଠାରେ ଅଭିନୀତ ହୁଏ ଶ୍ରୀକୃଷ୍ଣଲୀଳା । ବରଗଡ଼ ସହର ସାଜେ ଅତ୍ୟାଚାରୀ କଂସ ମହାରାଜାର ରାଜଧାନୀ ମଥୁରା ନଗରୀ । କଂସ ଦରବାରଠାରୁ ରଙ୍ଗସଭା ଓ କଂସବଧ ପର୍ଯ୍ୟନ୍ତ ଦୃଶ୍ୟଗୁଡ଼ିକ ଏଠାରେ ଅଭିନୀତ ହୋଇଥାଏ । ପ୍ରତ୍ୟେକ ମଣିଷର କିଛିନା କିଛି ଦୁଃଖ ରହିଛି । କେହି କହିପାରିବେ ନାହିଁ ଯେ ତାହାକୁ ଦୁଃଖ ସ୍ପର୍ଶ କରିନାହିଁ । ଦୁଃଖର ପାହାଡ଼କୁ ଛାତିରେ ଚାପିରଖି ସେ ସମସ୍ତଙ୍କ ଆଗରେ ହସିବାକୁ ଚେଷ୍ଟା କରେ, ମାତ୍ର ଭିତରେ ଭିତରେ କୁହୁଳି କୁହୁଳି କାନ୍ଦୁଥାଏ । ସଂପ୍ରତି ସାମାଜିକ ଜୀବନରେ ପରସ୍ପର ପ୍ରତି ଥିବା ସ୍ନେହ ଓ ଶ୍ରଦ୍ଧାର ବନ୍ଧନ କ୍ରମଶଃ ହୁଗୁଳା ହୋଇଯାଉଛି । ଫଳତଃ ବ୍ୟକ୍ତି ନିଜ ପରିବାର ଓ ସଂପ୍ରଦାୟଠାରୁ ଦୂରେଇ ଯାଉଥିବାର ପରିଲକ୍ଷିତ ହେଉଅଛି । କିନ୍ତୁ ଯେତେବେଳେ ପୁରାଣ ବର୍ଣ୍ଣିତ ସମସ୍ତ ଚରିତ୍ର ସହିତ ବରଗଡ଼ ଓ ଅମ୍ବାପାଲିର ସାଧାରଣ ଅଧିବାସୀ ଓ ବହିରାଗତ ଦର୍ଶକଗଣ ମଧ୍ୟ ନାଟକର ଗୋଟିଏ ଗୋଟିଏ ଚରିତ୍ର ରୂପେ ସ୍ୱାଭାବିକ ଭାବେ ସାମିଲ ହୋଇଯାଆନ୍ତି, ସେତେବେଳେ ମଣିଷ ଜୀବନ ରସମୟ ହୋଇଉଠେ । ଏହି ଦୁଇଟି ସ୍ଥାନକୁ ବିଭାଜିତ କରୁଥିବା ଜୀରାନଈ ମଧ୍ୟ ପୁରାଣ ବର୍ଣ୍ଣିତ ପୂଣ୍ୟତୋୟା ଯମୁନା ନଈର ରୂପ ନିଏ । ଏଠାରେ ସ୍ୱୀକାର୍ଯ୍ୟ ଯେ ଧନୁଯାତ୍ରା ପରି ଲୋକଯାତ୍ରାର ସମୃଦ୍ଧି ଓ ସମ୍ଭାବନାର ଦିଗନ୍ତକୁ ପ୍ରସାରିତ କରିବାରେ ସାହାଯ୍ୟ କରନ୍ତି ଏହି ସାଧାରଣ ଦର୍ଶକ କଳାକାରଗଣ ।

ମୋଟାମୋଟି ଭାବେ କହିବାକୁ ଗଲେ ଧନୁଯାତ୍ରାର ପ୍ରଥମଦିନ ମଥୁରା ନଗରୀ (ବରଗଡ଼)ରେ ଅନୁଷ୍ଠିତ ହୁଏ ଦେବକୀ ଓ ବସୁଦେବଙ୍କ ବିବାହ, ତା'ପରେ ଉଭୟଙ୍କୁ ସୁସଜ୍ଜିତ ରଥରେ ବସାଇ କଂସ ମହାରାଜାଙ୍କ ନଗର ପରିକ୍ରମା, ଶୂନ୍ୟବାଣୀ ଶ୍ରବଣ ଓ ତା'ପରେ ଦେବକୀ ବସୁଦେବଙ୍କୁ ବନ୍ଦୀ କରି ରଖିବା । ଦ୍ୱିତୀୟ ଦିବସରେ କାରାଗାରରେ ଶ୍ରୀକୃଷ୍ଣ ଜନ୍ମ ଏବଂ ତତ୍‌ପଶ୍ଚାତ କୃଷ୍ଣଙ୍କୁ ନେଇ ବସୁଦେବଙ୍କ ଗୋପପୁର (ଅମ୍ବାପାଲି) ଆଗମନ । ସେଠାରେ ନନ୍ଦୋତ୍ସବ, ଶ୍ରୀକୃଷ୍ଣଙ୍କ ଦୋଳି ଝୁଲଣ, ଦଧିଚୋରୀ ଓ କୃଷ୍ଣଜନ୍ମ ଉପରାନ୍ତେ ଉକ୍ତ ଦିନ ବରଗଡ଼ରେ ବିଜୁଳି କନ୍ୟାଙ୍କ ଶୂନ୍ୟବାଣୀ । ତୃତୀୟ ଦିନ ଅମ୍ବାପାଲିରେ ଯଶୋଦାଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କ ହସ୍ତପାଦ ବନ୍ଧନ, ପୂତନା ବଧ, ଯାମଳା ଉଦ୍ଧାରଣ । ଅନ୍ୟପଟେ ବରଗଡ଼ରେ କଂସର ନଗର ପରିକ୍ରମା ଓ ମଞ୍ଚ ଉପରେ ଅଭିନୟ ପ୍ରଦର୍ଶନ । ଚତୁର୍ଥ ଦିବସରେ ଅମ୍ବାପାଲିରେ ଶ୍ରୀକୃଷ୍ଣଙ୍କ ଗୋଚାରଣ, ବଣଭୋଜି, ଅଘା, ବକାସୁର ବଧ, ବ୍ରହ୍ମାଙ୍କ ବଂଶୀଦାନ, କାଳୀୟ ଦଳନ ଏବଂ ଅନ୍ୟପଟେ ବରଗଡ଼ରେ କଂସର ନଗର ପରିକ୍ରମା ଓ ମଞ୍ଚ ଉପରେ ଅଭିନୟ ପ୍ରଦର୍ଶନ । ପଞ୍ଚମ ଦିବସରେ ଅମ୍ବାପାଲିରେ ଗୋପାଙ୍ଗନାମାନଙ୍କ ବସ୍ତ୍ରହରଣ, ଅସୁରବଧ, ଅନ୍ଧକୁ ଚକ୍ଷୁଦାନ, ରାସକ୍ରୀଡ଼ା ଇତ୍ୟାଦି ପରିବେଷଣ ହୋଇଥାଏ । ଷଷ୍ଠ ଦିବସରେ ବରଗଡ଼ର ମନାବନ୍ଧଠାରେ ନାବକେଳି ଦୃଶ୍ୟ, କଂସର ନଗର ପରିକ୍ରମା ଓ ମଞ୍ଚ ଉପରେ ଅଭିନୟ ପ୍ରଦର୍ଶନ । ସପ୍ତମ ଦିବସରେ ଅମ୍ବାପାଲିରେ ଶବରୁଣୀଠାରୁ କୋଳିଖିଆ, ଗୋପବାଳକଙ୍କ ସହିତ ଶ୍ରୀକୃଷ୍ଣ-ବଳରାମଙ୍କ ଖେଳ ପରିବେଷଣ କରାଯାଏ । ଏହି ଦିନ ବରଗଡ଼ରୁ ଅମ୍ବାପାଲିକୁ କଂସ ମହାରାଜାଙ୍କ ଦ୍ୱାରା ଅକ୍ରୁର ପ୍ରେରଣ, କଂସ ମହାରାଜାଙ୍କ ନଗର ପରିକ୍ରମା ଓ ଅଭିନୟ ପ୍ରଦର୍ଶନ । ଅଷ୍ଟମ ଦିବସରେ ଶ୍ରୀକୃଷ୍ଣ-ବଳରାମଙ୍କୁ ରଥରେ ବସାଇ ଅକ୍ରୁରଙ୍କ ବରଗଡ଼ ଯାତ୍ରା, ନନ୍ଦ, ଯଶୋଦା, ଶ୍ରୀରାଧା, ଗୋପୀ, ଗୋପାଳମାନଙ୍କଠାରୁ ଶ୍ରୀକୃଷ୍ଣ-ବଳରାମଙ୍କ ବିଦାୟ । ଉକ୍ତ ଦିନ ବରଗଡ଼ରେ ଶ୍ରୀକୃଷ୍ଣଙ୍କ ସୁଦାମାଙ୍କଠାରୁ ମାଳା ଗ୍ରହଣ, କୁବ୍‌ଜା ଉଦ୍ଧାରଣ, ବିଦୁରଙ୍କଠାରୁ ଖୁଦଭଜା ଗ୍ରହଣ । କଂସ ମହାରାଜାଙ୍କ ନଗର ପରିକ୍ରମା ଓ ରଙ୍ଗସଭା ନବମ ଦିବସରେ କୁବଳୟା ଉଦ୍ଧାରଣ, ଧନୁଭଗ୍ନ ଓ କଂସର ବିରାଟକାୟ ପୁତ୍ତଳିକାରେ ଅଗ୍ନି ସଂଯୋଗ ଏବଂ ଶ୍ରୀକୃଷ୍ଣ-ବଳରାମଙ୍କ ନଗର ପରିଭ୍ରମଣ ସହିତ ଯାତ୍ରାର ପରିସମାପ୍ତି । ସମୟକୁ ଚାହିଁ ଏହି ଦୃଶ୍ୟ ପରିବେଷଣରେ ସାମାନ୍ୟ ପରିବର୍ତ୍ତନ ମଧ୍ୟ ଦେଖାଯାଏ ।

ଶ୍ରୀକୃଷ୍ଣଙ୍କ ଲୀଳାକୁ ଅମ୍ବାପାଲି ଗ୍ରାମରେ ଯେଉଳି ଭାବେ ପରିବେଷଣ କରାଯାଏ ମନେହୁଏ କଳିଯୁଗରେ ସତେ ଯେପରି ଦ୍ୱାପର ଯୁଗ ଫେରି ଆସିଲା । ଭକ୍ତଗଣ ଶ୍ରୀକୃଷ୍ଣ-ବଳରାମଙ୍କ ପଦସ୍ପର୍ଶ କରିବା

ଏବଂ ତାଙ୍କର ପଦଧୌତକରି ଏହି ପାଣିକୁ ଅମୃତ ମଣି ପାନ କରିବା ଦୃଶ୍ୟ ଅତ୍ୟନ୍ତ ସ୍ପର୍ଶକାତର ତଥା ଭାବୋଦ୍ଦୀପକ ମନେହୁଏ । ଏକଦା ଆମ୍ବ ଓ କଦମ୍ବ ଗଛରେ ପରିପୂର୍ଣ୍ଣ ଅମ୍ବାପାଲି ଗ୍ରାମର ପ୍ରାକୃତିକ ପରିବେଶ ମନୋମୁଗ୍ଧକର ଥିଲା । କିନ୍ତୁ ସ୍ୱାଧୀନୋତ୍ତର କାଳରେ ଜନବସତି ବୃଦ୍ଧି ପାଇ ଏତେ ପରିମାଣରେ ଗଛ କଟି ଗଲାଣି ଯେ ଚାରିଆଡ଼ ପଡ଼ିଆ ଜଣାପଡୁଛି । ସେ ଯାହାହେଉ ଜୀରା ନଈ କୂଳରେ ଆମ୍ବ କଦମ୍ବ ତୋଟାରେ ପରିବେଷିତ ହେଉଥିବା ରାସଲୀଳାରେ ଗୋପୀମାନେ ଗାଈ ଚରାଇବା, ଗୋପାଳିନିମାନଙ୍କ ଦଧି ବିକ୍ରୀ କରିବା ତଥା ଗୋପୀମାନଙ୍କ ବସ୍ତ୍ରହରଣ ପ୍ରଭୃତି ଦୃଶ୍ୟ ପରିବେଷଣ କରାଯାଇଥାଏ । ଅଭିନୟ ସମୟରେ ଯଥୋଚିତ ପରିବେଶ ସୃଷ୍ଟି ପାଇଁ ବସ୍ତ୍ରହରଣ କାଳରେ କେତେକ ପୁରୁଷ ଗୋପୀବେଶ ଧାରଣ କରିଥାଆନ୍ତି । ପୁନଶ୍ଚ ଅମ୍ବାପାଲି ଗ୍ରାମର ପୁଷ୍କରିଣୀରେ ଏକଦା ନାବକେଳି ଓ କାଳୀୟ ଦଳନ ଅନୁଷ୍ଠିତ ହେଉଥିଲା । କାଳୀୟ ଦଳନ ଦୃଶ୍ୟ ପରିବେଷଣ ସମୟରେ ପ୍ଲାଷ୍ଟିକ ନିର୍ମିତ ସର୍ପର ସଜ୍ଜୀକରଣ ବେଶ ଶୋଭନୀୟ ହୋଇଥାଏ । କୌଣସି କାରଣବଶତଃ କିଛିବର୍ଷ ହେଲା ନାବକେଳୀ ଦୃଶ୍ୟ ବରଗଡ଼ର ମନାବନ୍ଧଠାରେ ଆୟୋଜନ କରାଯାଉଥିବାର ସୂଚନା ମିଳେ ।

ହାଟପଦାଠାରେ ପ୍ରତିଦିନ ଅଭିନୀତ ହୁଏ କଂସ ମହାରାଜାଙ୍କ ଦରବାର । ସୁସଜ୍ଜିତ ହାତୀ ପିଠିରେ ବସି କଂସ ତଥା ପାତ୍ରମନ୍ତ୍ରୀଗଣ ନଗର ପରିକ୍ରମା କରନ୍ତି । ଏହି ସମୟରେ ବରଗଡ଼ରେ ଚାଲେ କଂସର ଅଖଣ୍ଡ ରାଜତ୍ୱ । ସେତେବେଳେ କଂସର ହୁକୁମ ମାନିବାକୁ ସମସ୍ତେ ବାଧ୍ୟ । ଧନୁଯାତ୍ରାର ଏହି ବିଭାଗଟି ସାଧାରଣ ଜନତାକୁ ବେଶ ଆକର୍ଷିତ କରିଥାଏ । ସେ ସାଧାରଣ ନାଗରିକ ହୁଅନ୍ତୁ ଅଥବା ପ୍ରଭାବଶାଳୀ ନେତା ଅଥବା ଉଚ୍ଚପଦସ୍ଥ ଅଫିସର ହୁଅନ୍ତୁ, ସେମାନେ ସମସ୍ତେ କଂସ ମହାରାଜାଙ୍କ ପ୍ରଜା । ନଗର ପରିକ୍ରମା ସମୟରେ କଂସ ମହାରାଜା ଜନସାଧାରଣଙ୍କ ପାଖରୁ ବିଭିନ୍ନ ଅପରାଧ ପାଇଁ ଜୋରିମାନା ଅସୁଲ କରିବା ଧନୁଯାତ୍ରାର ଅନ୍ୟତମ ଆକର୍ଷଣ । ପରିତାପର ବିଷୟ ଏହିକି ଯେ ଯେଉଁଠାରେ ଅର୍ଥ ସେଠାରେ ସମ୍ମାନ । ଏହା ହିଁ ଆଜିର ସମାଜରେ ପ୍ରଚଳିତ ପ୍ରଥା । ସମାଜରେ ଏପରି ବ୍ୟକ୍ତିର ଶତ ଦୋଷରାଶି, ଶତ ଚରିତ୍ରହୀନତା ମଧ୍ୟ ଗୁଣ ବୋଲି ଗଣ୍ୟ ହୋଇଥାଏ । ଲୋକ ମୁହଁ ଫିଟାଇ ତା'ର ନିନ୍ଦା କରନ୍ତି ନାହିଁ, କାରଣ ଅଦୃଷ୍ଟରେ ଲାଞ୍ଛନା ସହିବାକୁ ପଡ଼ିପାରେ । ପୁନଶ୍ଚ କ୍ଷମତା ରାଜନୀତିରେ ପଦମର୍ଯ୍ୟାଦା ଓ ସୁବିଧା ସୁଯୋଗ ହାସଲ ପାଇଁ ଆନୁଗତ୍ୟ ପ୍ରଦର୍ଶନ ଓ ଚାଟୁକାରିତା ପାଇଁ ଚାଲିଥିବା ନଗ୍ନ ପ୍ରତିଯୋଗିତାକୁ ଧନୁଯାତ୍ରାରେ ଯେଉଁଭଳି ଭାବେ ପରିବେଷଣ କରାଯାଏ, ତାହା ସାଧାରଣ ଦର୍ଶକମାନଙ୍କ ପାଇଁ ଯେତିକି ଭାବୋଦ୍ଦୀପକ, ସେତିକି କୌତୁହଳପ୍ରଦ ମଧ୍ୟ । କଂସ ମହାରାଜା ନଗର ପରିଭ୍ରମଣ ସାରି ରାଜବାଟୀ ବା ନିଜ ଦରବାରକୁ ଯାଇ ଜନସାଧାରଣଙ୍କୁ ଉଦ୍‌ବୋଧନ ଦିଅନ୍ତି । ମନୁଷ୍ୟ ଯେତେବେଳେ ଅନାଚାରୀ ହୋଇ ଶୃଙ୍ଖଳାବନ୍ଧ ମାନବ ସମାଜର ଅକଲ୍ୟାଣକର କାର୍ଯ୍ୟ ଅନୁଷ୍ଠାନ କରେ, ସେତେବେଳେ ତାହାକୁ ଦଣ୍ଡିତ କରିବା ସକାଶେ ମାନବ ସମାଜରେ ନାନାବିଧ ବ୍ୟବସ୍ଥା ପ୍ରଚଳିତ ରହିଅଛି । ତେଣୁ ସ୍ଥାନୀୟ ବ୍ୟବସ୍ଥାରେ ଗଠନମୂଳକ ସମାଲୋଚନା ମାଧ୍ୟମରେ ହେଉ ଅଥବା ନିଜର ଝୁଙ୍କବାଜୀ ହୁକୁମ ବଳରେ ହେଉ, ସାମଗ୍ରିକ କିମ୍ବା ଆଂଶିକ ଭାବେ ସମାଜକୁ ପ୍ରଭାବିତ କରୁଥିବା ଯେକୌଣସି ପ୍ରସଙ୍ଗ ଉପରେ କଂସ ମହାରାଜା ନିଜର ବିଚାର ଉପସ୍ଥାପନ କରି ସରକାର, ସଂଗଠନ କିମ୍ବା ବ୍ୟକ୍ତିବିଶେଷଙ୍କର ଅବ୍ୟବସ୍ଥିତ କାର୍ଯ୍ୟଧାରାକୁ ସୁସଂହତ କରିବାର ପ୍ରଚେଷ୍ଟା ଧନୁଯାତ୍ରାର ଏକ ମୁଖ୍ୟ ଆକର୍ଷଣ । ଏଥିରୁ ଅପରାଧୀଶୂନ୍ୟ, ସ୍ୱଚ୍ଛ, ନିର୍ମଳ ଓ ଦକ୍ଷ ଶାସନ ଓ ପ୍ରଶାସନ ଆଉ କେତେକାଳ କେବଳ ଭାଷଣରେ ଚାଲିବ ବୋଲି ଉପହାସ କରାଯାଉ ଥିବାର ମନେହୁଏ ।

ସ୍ଥାବର, ସଜୀବ, ନିର୍ଜୀବ, ବିଶ୍ୱ ବ୍ରହ୍ମାଣ୍ଡର ଯାବତୀୟ ବିଭାଗରେ ପରିବର୍ତ୍ତନର ସ୍ରୋତ ଅହର୍ନିଶି ଚାଲିଛି । ପରିବର୍ତ୍ତନ ଘଟୁଅଛି କାରଣ ପରିବର୍ତ୍ତନର ପ୍ରୟୋଜନ ରହିଅଛି । ପ୍ରତ୍ୟେକ ପଦାର୍ଥ ଅଭାବଗ୍ରସ୍ତ, ଅସଂପୂର୍ଣ୍ଣ । ତେଣୁ ପରିବର୍ତ୍ତନ ଅର୍ଥଯୁକ୍ତ, ସହେତୁକ ବିଷୟ । ଯୁଗ ବଦଳିବା ସହିତ ଟେକନୋଲୋଜି ମଣିଷର ଜୀବନଧାରଣର ମାନରେ ଯଥେଷ୍ଟ ପରିବର୍ତ୍ତନ ଆଣି ଦେଇଛି । ଲାଇଟ୍, ମାଇକ, ସାଉଣ୍ଡ ସିଷ୍ଟମ ପ୍ରଭୃତି ଆଧୁନିକତାର ପ୍ରବେଶ ଯୋଗୁଁ କଂସ ମହାରାଜାଙ୍କ ଦରବାର ବା ଆଧୁନିକ କଂସ ମଞ୍ଚରେ ନୃତ୍ୟଗୀତର ଆୟୋଜନ ସାଧାରଣ ଦର୍ଶକଙ୍କ ଜୀବନକୁ ଉପଭୋଗ କରିବାର ଏକ ଭିନ୍ନ ସୁଖଦ ଅନୁଭବ ଦେଇଛି । ଏହା ଦ୍ୱାରା ଲୋକଯାତ୍ରାର ଶୁଦ୍ଧତା ଊଣା ହୋଇଯାଇନାହିଁ, ବରଂ ସମୃଦ୍ଧିର ପରିସର ବୃଦ୍ଧି ପାଇଛି । ପ୍ରତ୍ୟହ ଅପରାହ୍ନ ଦୁଇଟାଠାରୁ ଆରମ୍ଭ ହୋଇ ଏହି ନାଟକ ରାତିପ୍ରାୟ ନଅଟା ଦଶଟା ଯାଏ ଚାଲେ । କଂସ ମହାରାଜା ନିଜର ପାତ୍ର, ମନ୍ତ୍ରୀ, ସାମନ୍ତ ରାଜାଗଣ ତଥା ସମବେତ ଅଜସ୍ର ଜନତାଙ୍କ ସହିତ ମଞ୍ଚରେ ପରିବେଷିତ ହେଉଥିବା ନୃତ୍ୟ, ଗୀତକୁ ଉପଭୋଗ କରିଥାଆନ୍ତି । ଏତଦ୍‌ବ୍ୟତୀତ ହିଂସା ଓ ଦମନମୂଳକ କାର୍ଯ୍ୟାନୁଷ୍ଠାନର ଦୃଶ୍ୟ ମଧ୍ୟ ପରିବେଷିତ ହୋଇଥାଏ । ମଝିରେ ମଝିରେ କଂସ ମହାରାଜା ପ୍ରଜାମାନଙ୍କ ହାରିଗୁହାରୀ ଶୁଣି ଯଥାବିଧି ପ୍ରତିକାର ବିଧାନ ନିମନ୍ତେ ନିଜର ଆଦେଶ ପ୍ରଦାନ ମଧ୍ୟ କରିଥାନ୍ତି । ଏସବୁ ଦୃଶ୍ୟ ଉପସ୍ଥିତ ସାଧାରଣ ଦର୍ଶକଙ୍କ ମନରେ ଆନନ୍ଦ ଆଣି ଦେବା ଅତି ସ୍ୱାଭାବିକ । ଯାତ୍ରା କମିଟି ଏହି ଯାତ୍ରାକୁ ଆକର୍ଷଣୀୟ କରିବା ପାଇଁ ଯତପରୋନାସ୍ତି ଚେଷ୍ଟା କରିଥାନ୍ତି । ପୁରୀର ରଥଯାତ୍ରା, ସମ୍ବଲପୁରର ଶୀତଳଷଷ୍ଠୀ ଯାତ୍ରା, କଟକର ଦଶହରା ପରି ବରଗଡ଼ର ଧନୁଯାତ୍ରା ଏପରି ଏକ ଯାତ୍ରା ଯାହା ଖାଲି ବରଗଡ଼ କିମ୍ବା ରାଜ୍ୟବାସୀଙ୍କୁ ଆକର୍ଷିତ କରିଥାଏ, ତାହା ନୁହେଁ ବରଂ ପଡ଼ୋଶୀ ଛତିଶଗଡ଼ ଓ ମଧ୍ୟପ୍ରଦେଶରୁ ମଧ୍ୟ ଲୋକମାନେ ଏହି ଯାତ୍ରାର ଆକର୍ଷଣରୁ ନିଜକୁ ଦୂରେଇ ରଖିପାରନ୍ତି ନାହିଁ ।

ଏହି ଅବସରରେ ଓଡ଼ିଶା ସମେତ ମଧ୍ୟପ୍ରଦେଶ, ଛତିଶଗଡ଼, ବିହାର, ଝାରଖଣ୍ଡ, ପଶ୍ଚିମବଙ୍ଗ ପ୍ରଭୃତି ଅଞ୍ଚଳରୁ କଳାକାରମାନଙ୍କୁ

ଉତ୍କୃଷ୍ଟ କଳା ପରିବେଷଣ କରିବା ନିମନ୍ତେ ଆମନ୍ତ୍ରିତ କରାଯାଇଥାଏ । ସଂପ୍ରଦା, ସଂଚାର ପ୍ରଭୃତି ସ୍ଥାନୀୟ ଲୋକନୃତ୍ୟକୁ ଧନୁଯାତ୍ରା ସମୟରେ ପ୍ରାଧାନ୍ୟ ଦେବା ବିଷୟ ଆକସ୍ମିକ ମନେହୁଏ ନାହିଁ । କାରଣ ଲୋକ ପରମ୍ପରାର ଭାବ ସଂକୀର୍ଣ୍ଣ ନୁହେଁ । କୌଣସି ସ୍ଥାନର ଲୋକ ପରମ୍ପରା ଉକ୍ତ ସ୍ଥାନର ଅନ୍ୟାନ୍ୟ ଲୋକ ପରମ୍ପରା ସହିତ ଛନ୍ଦାଛନ୍ଦି ହୋଇ ପରିବର୍ଦ୍ଧିତ ହୋଇଥାଏ । ଧନୁଯାତ୍ରା ଅବସରରେ ସଂପ୍ରଦା, ସଞ୍ଚାର, ଦଣ୍ଡନାଟ, ଘୁମୁରା, ଶବରଶବରୀଲୀଳା ପ୍ରଭୃତି ସ୍ଥାନୀୟ ଲୋକକଳାଗୁଡ଼ିକର ପ୍ରଚାର ଓ ପ୍ରସାର ନିମନ୍ତେ ବ୍ୟାପକ ଉଦ୍ୟମ ହେଉଥିବାର ଦେଖାଯାଏ । ଏତଦ୍‌ବ୍ୟତୀତ ଓଡ଼ିଶାର ଅନ୍ୟପ୍ରାନ୍ତରର ଦାସକାଠିଆ, ପାଲା, ସୁଆଙ୍ଗ, ଅନ୍ୟାନ୍ୟ ଲୀଳା, ଗୀତିନାଟ୍ୟ ଓ ନାଟକ ପ୍ରଭୃତି ମଧ୍ୟ ପରିବେଷଣ ହୋଇଥାଏ । ଏଠାରେ ଉଲ୍ଲେଖନୀୟ ବିଷୟ ଏହିକି ଯେ ସଞ୍ଚାର ପରି ଲୋକନୃତ୍ୟ ଧନୁଯାତ୍ରା ମାଧ୍ୟମରେ ଲୋକପ୍ରିୟତା ହାସଲ କରି ବରଗଡ଼ ଅଞ୍ଚଳର ପରିସୀମାକୁ ଲଂଘନ କରିବାକୁ ସକ୍ଷମ ହୋଇପାରିଛି ଏବଂ ସୁଦୂରପ୍ରସାରୀ ହୋଇପାରିଛି ।

ବିଦ୍ୱାନମାନେ କହନ୍ତି, ପ୍ରକୃତ ସୁଖ ଐଶ୍ୱର୍ଯ୍ୟରେ ନଥାଏ, ଏହା ଥାଏ ମନରେ । ଯାହାର ଚିତ୍ତ ଐଶ୍ୱର୍ଯ୍ୟବାନ, ସକଳ ଅବସ୍ଥାରେ ସେ ସୁଖୀ । ଯେ ପ୍ରକୃତ ଦୁଃଖୀ ତାହାର ଅତୁଳ ସଂପଦ ଥିଲେ ହେଁ ସେ କେବେ ସୁଖୀ ହେବ ନାହିଁ । ତେଣୁ କଂସ ମହାରାଜା ପ୍ରକୃତ ଦୁଃଖୀ ଥିଲେ । ମଣିଷର ମନ ଲଗାମଛଡ଼ା ଘୋଡ଼ା ସଦୃଶ । ଏହି ଲଗାମବିହୀନ ମନକୁ ବିବେକ ହିଁ ନିୟନ୍ତ୍ରଣ କରେ ଏବଂ ସତ୍‌ପଥରେ ପରିଚାଳିତ କରାଏ । କଳୁଷିତ ମନର ଶକ୍ତି ଏତେ ଅଧିକ ଯେ ଏହା ବିବେକର ସତର୍କବାଣୀକୁ କ୍ଷୀଣ କରିଦିଏ । ଲଗାମହୀନ ମନର ବଶତା ସ୍ୱୀକାର ପୂର୍ବକ କଂସ ମହାରାଜା ଯେତେବେଳେ ବିବେକର ତାଡ଼ନାକୁ ଅଗ୍ରାହ୍ୟ କରି ଦେଲେ, ସେତେବେଳେ ତାଙ୍କ ଭିତରେ ଧର୍ମନୀତି ଆଚରଣ କରିବା ପାଇଁ ଯେଉଁ ଆନ୍ତରିକ ଅଭିପ୍ସା ରହିଥିଲା ବସ୍ତୁତଃ ତାହା ଲୋପ ପାଇଗଲା । ଏହି ଦୃଷ୍ଟିରୁ ଶ୍ରୀକୃଷ୍ଣ - ବଳରାମଙ୍କୁ ଜୀବନରେ ମାରିଦେବା ପାଇଁ ଧନୁଯାତ୍ରା ଆୟୋଜନ ଏକ ସୁଚିନ୍ତିତ ଷଡ଼ଯନ୍ତ୍ରପୂର୍ଣ୍ଣ ପଦକ୍ଷେପ ଥିଲା । ତେଣୁ ଯୋଜନାବଦ୍ଧ ଭାବେ କଂସ ମହାରାଜା ନିଜ ଭଣଜାମାନଙ୍କୁ ଛଳନା କରି ନିମନ୍ତ୍ରଣ କରିବା ପାଇଁ ଅକ୍ରୁରଙ୍କୁ ପ୍ରେରଣ କରିଥିଲେ । ଧନୁଯାତ୍ରାର ଶେଷ ତିଥିରେ ଅର୍ଥାତ୍ ପୌଷ ପୂର୍ଣ୍ଣିମାଦିନ କଂସ ମହାରାଜାଙ୍କ ନିର୍ଦ୍ଦେଶରେ ଅକ୍ରୁର ରଥ ନେଇ ଗୋପପୁରକୁ ଯାତ୍ରା କରିବା ଦୃଶ୍ୟ ତୁଳନା ରହିତ ମନେହୁଏ । ଗୋପାଙ୍ଗନାମାନଙ୍କ ଶତବାରଣ ସତ୍ତ୍ୱେ ଶ୍ରୀକୃଷ୍ଣ-ବଳରାମ କଂସ ମାମୁଁଙ୍କର ନିମନ୍ତ୍ରଣ ରକ୍ଷାପୂର୍ବକ ଏକ ସୁସଜ୍ଜିତ ରଥରେ କଂସଦୂତ ଅକ୍ରୁର ସଂଗେ ମଥୁରା ନଗରୀକୁ ଆଗମନ କରିବା ଦୃଶ୍ୟ ମଧ୍ୟ ଅନୁପମ ବୋଲି କୁହାଯାଇପାରେ । ଅମ୍ବାପାଲିରୁ ଶ୍ରୀକୃଷ୍ଣ ଓ ବଳରାମଙ୍କ ବିଦାୟକାଳୀନ ଦୃଶ୍ୟ ଦର୍ଶକଙ୍କୁ ଅତୀବ ରୋମାଞ୍ଚିତ କରିଥାଏ । ଗୋପପୁରରୁ ଆସି ମଥୁରା ନଗରୀରେ (ବରଗଡ଼ର ଖଜୁରଟିକରାର ମାଉସୀ ମା' ଘରେ) ଶ୍ରୀକୃଷ୍ଣ ଓ ବଳରାମ ଅବସ୍ଥାନ କରନ୍ତି । ଉକ୍ତ ଦିନ ବରଗଡ଼ବାସୀ ଘରେ ଘରେ ପୂର୍ଣ୍ଣ କୁମ୍ଭ, ଦୀପ, ଧୂପ ଜାଳି ହୁଳହୁଳି ଦେଇ ନିଜର ଆଦରଣୀୟ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ସ୍ୱାଗତ ଓ ସମ୍ମାନିତ କରିବା ଦୃଶ୍ୟ ଅତ୍ୟନ୍ତ ଉପଭୋଗ୍ୟ ହୋଇଥାଏ । କଂସ ମହାରାଜାଙ୍କ ଆଧିପତ୍ୟର ନିଦର୍ଶନ ସ୍ୱରୂପ ଗୋପାଳ ବାଳକମାନଙ୍କ ସହିତ ଶ୍ରୀକୃଷ୍ଣ ଓ ବଳରାମ ଯେତେବେଳେ ବରଗଡ଼ ସହର ପରିଭ୍ରମଣ କରନ୍ତି, ସେତେବେଳେ ସେମାନେ ଯେକୌଣସି ଦୋକାନକୁ ପଶି ପାନଭୋଜନ କରିବା ଦୃଶ୍ୟ ମଧ୍ୟ ଅତୁଳନୀୟ ମନେହୁଏ । ଭଣଜାମାନଙ୍କ ଆତିଥେୟରେ ଯେମିତି କୌଣସି ତ୍ରୁଟି ବିଚ୍ୟୁତି ନଘଟେ ସେଥିପ୍ରତି କଂସ ମହାରାଜାଙ୍କ ନିର୍ଦ୍ଦେଶ ଦୋକାନୀମାନଙ୍କୁ ମଧ୍ୟ ମିଳି ସାରିଥାଏ ।

ପଣ୍ଡିତମାନେ କହନ୍ତି ପୁଣ୍ୟଶକ୍ତି ଓ ପାପଶକ୍ତି ଘେନି ଅନ୍ତର୍ଜଗତର ସୃଷ୍ଟି ଏବଂ ଉଭୟ ଶକ୍ତି ମଧ୍ୟରେ ଅହରହ ସଂଗ୍ରାମ ଲାଗି ରହିଛି । କେଉଁଠାରେ ପାପଶକ୍ତିର ପରିମାଣ ଅଧିକ ତ କେଉଁଠାରେ ପୁଣ୍ୟଶକ୍ତି ଅଧିକ । ଶ୍ରୀକୃଷ୍ଣ ଓ ବଳରାମଙ୍କ ଦ୍ୱାରା ମଥୁରା ନଗରୀରେ କୁବ୍‌ଜା ଉଦ୍ଧାରଣ, ଚାଣୁର ମୁଷ୍ଟିକ ସଂହାର ଏବଂ କଂସବଧ ପ୍ରଭୃତି ବିଷୟବସ୍ତୁର ପରିବେଷଣ ପାପଶକ୍ତି ଉପରେ ପୁଣ୍ୟଶକ୍ତିର ବିଜୟ ବୋଲି କୁହାଯାଇପାରେ । ଆମ ସମାଜରେ ଶ୍ରୀକୃଷ୍ଣ ଓ ବଳରାମଙ୍କ ସଦୃଶ ସାଧାରଣ ଚରିତ୍ର ମଧ୍ୟ ପରିଦୃଷ୍ଟ ତଥା ବିଦ୍ୟମାନ । ସେମାନଙ୍କର ଜୀବନ ଅତି ପବିତ୍ର, କାରଣ ସେମାନେ ବିବେକାନୁମୋଦିତ ମାର୍ଗରେ ଗତି କରିଥାନ୍ତି । ଜୀବନଧାରଣ ନିମିତ୍ତ ମଣିଷକୁ ନିତ୍ୟ କର୍ମ କରିବାକୁ ପଡ଼େ । ତଦନୁଯାୟୀ ମହତକର୍ମର ମହତଫଳ ମିଳିଥାଏ । କର୍ମଫଳ କେହି ଲଂଘନ କରିପାରି ନାହାନ୍ତି । ଏହି ସଂସାରରେ ନିଜକୁ ଅତିବଡ଼ ଓ ବୁଦ୍ଧିମାନ ବୋଲି ଦାବୀ କରୁଥିବା ବ୍ୟକ୍ତି ମଧ୍ୟ ନିଜ କର୍ମଫଳର ଅଧୀନ ହୋଇ ବିପର୍ଯ୍ୟସ୍ତ ହେଉଥିବାର ଦେଖାଯାଏ । କଂସ ମହାରାଜାଙ୍କ ବାହୁଛାୟା ତଳେ କାୟାବିସ୍ତାର କରିଥିବା ଚାଣୁର ମୁଷ୍ଟିକ ଭଳି ଆତଙ୍କବାଦୀ ଶକ୍ତିଙ୍କ ଉପରେ ନିରୀହ ଜନତାଙ୍କ କର୍ତ୍ତୃତ୍ୱ ନଥିଲା । ତେଣୁ ଶ୍ରୀକୃଷ୍ଣ ଓ ବଳରାମ ସେମାନଙ୍କୁ ଦଣ୍ଡ ଦେଇ ଆକୁଳିତ ଜନସମୁଦାୟକୁ ସନ୍ତୁଷ୍ଟ କରିଥାଆନ୍ତି ।

ପୂର୍ବେ ଧନୁଯାତ୍ରାର ସାଜସଜ୍ଜା, ମେଢ଼ ସଜ୍ଜିକରଣ, ପୋଷାକ ପରିଚ୍ଛଦ ଇତ୍ୟାଦି ସାଧାରଣ ସ୍ତରର ଥିଲା । କିନ୍ତୁ ବର୍ତ୍ତମାନ ଏହାର ସାଜସଜ୍ଜାରେ ଅନେକ ପରିବର୍ତ୍ତନ ଘଟି ଆକର୍ଷଣୀୟ ହୋଇପାରିଛି । କଂସବଧ ଅବସରରେ ପ୍ରାୟ ତିରିଶ ଫୁଟ ଉଚ୍ଚତା ବିଶିଷ୍ଟ ଏକ କାଗଜ ତିଆରି କଂସର ମହାମାନବ ପୁତ୍ତଳିକାକୁ ପୋଡ଼ାଯାଏ । ପ୍ରକାଶଥାଉକି, ଆତ୍ମପ୍ରୀତି ଏକ ମାନବୀୟ ଦୁର୍ବଳତା । ମନ କଳୁଷିତ ହେଲେ ବିବେକର ବାଣୀ ଶ୍ରୁତିଗୋଚର ହୁଏ ନାହିଁ । ତେଣୁ ମଣିଷ ବହୁ ସମୟରେ ନିଜ ସଂପର୍କରେ ଉଚ୍ଚ ଧାରଣା ପୋଷଣ କରିବାର ଦେଖାଯାଏ । ଦୁର୍ଗୁଣ ତୁଳନାରେ ନିଜ ପାଖରେ ଯଥେଷ୍ଟ ଅଧିକ ସୁଗୁଣ ରହିଥିବାର ବିଶ୍ୱାସ ରଖୁଥିବା ମଣିଷର ଭାବନା ଆକାଶ କୁସୁମ ସଦୃଶ । ଅନ୍ୟମାନେ

ତାଙ୍କୁ ପ୍ରଶଂସା କରନ୍ତି ବୋଲି ଧରି ନିଏ । ଫଳତଃ ସୁଖ ଅନୁସନ୍ଧାନୀ ମଣିଷ ଦୁଃଖର ଅତଳ ଜଳରାଶିରେ ବୁଡ଼ିଯାଏ । ରାଜା, ମହାରାଜାମାନଙ୍କ କ୍ଷେତ୍ରରେ ଏହାର ପରିମାଣ ଟିକିଏ ବେଶୀ ପରିମାଣରେ ଅନୁଭୂତ ହୋଇଥାଏ । ଆତ୍ମତୋଷାମଦକୁ ପସନ୍ଦ କରୁଥିବା ଏହି ଶ୍ରେଣୀର ଲୋକ ଆତ୍ମସ୍ତବ ଗାନ କରିବା ଆଦୌ ଆକସ୍ମିକ ମନେହୁଏ ନାହିଁ । ଆତ୍ମଗରିମା ଓ ଆତ୍ମଗୌରବ ଯେ ଆତ୍ମଘାତୀ ହୋଇପାରେ ତାହାର ଜ୍ୱଳନ୍ତ ନିଦର୍ଶନ ସ୍ୱରୂପ ପ୍ରବଳ ପ୍ରତାପୀ କଂସ ମହାରାଜାଙ୍କ ପତନ ଧନୁଯାତ୍ରାର ଶ୍ରେଷ୍ଠ ବାର୍ତ୍ତା । ମାଟିର ମଣିଷ ଦିନେ ମାଟିରେ ହିଁ ମିଶିଯିବ । କାଳର କବଳରୁ କେହି ହେଲେ ଆତ୍ମଗୋପନ କରି ରହିପାରି ନାହାନ୍ତି, କାଳ ସମସ୍ତଙ୍କୁ ଆତ୍ମସାତ୍ କରିଛି । ଧନୁଯାତ୍ରା ଖାଲି ମାନସିକ ଶାନ୍ତି, ସାମାଜିକ ସୌହାର୍ଦ୍ଦ୍ୟ ସୃଷ୍ଟିରେ ସହଯୋଗ କରିଛି ତାହା ନୁହେଁ, ବରଂ ବଞ୍ଚିବାର ଏକ ଭିନ୍ନ ପ୍ରେରଣା ମଧ୍ୟ ଯୋଗାଇଛି ।

ଦୁର୍ଦ୍ଦମନୀୟ ପ୍ରବୃତ୍ତିର ତଥା ଉଦ୍ଦାମ ସ୍ୱାର୍ଥପରତାର ବଶବର୍ତ୍ତୀ ହୋଇ କଂସ ମହାରାଜା ଅପକର୍ମ କରି ସାରିବା ପରେ କେବେ ହେଲେ ତାଙ୍କ ବିବେକର ଦଂଶନ ତାଙ୍କୁ ଆତ୍ମଗ୍ଲାନିରେ ମ୍ରିୟମାଣ କରି ନାହିଁ । ବିବେକର ଆହ୍ୱାନକୁ ଗ୍ରହଣ କରି ନେବାର ଦୃଢ଼ ମନୋବଳ କଂସ ମହାରାଜାଙ୍କ କ୍ଷେତ୍ରରେ କଦାପି ଉଦୟ ହୋଇନାହିଁ । ତେଣୁ ଅନୀତିର ଜୟ ହେବା ସ୍ୱାଭାବିକ । କଂସବଧ ପରେ ମଥୁରାର ଏକଛତ୍ରବାଦୀ କଂସ ମହାରାଜାଙ୍କ ଶାସନ କବଳରୁ ମୁକ୍ତି ପାଇ ମଥୁରାର ଜନସମୁଦାୟ ଶ୍ରୀକୃଷ୍ଣ ଓ ବଳରାମଙ୍କ ସହିତ ମଥୁରା ନଗରୀ ପରିକ୍ରମା କରନ୍ତି ଏବଂ ଏଥିସହିତ ଧନୁଯାତ୍ରାର ପରିସମାପ୍ତି ଘଟିଥାଏ । ଯେଉଁ ଯୋଦ୍ଧା ଓ ନେତାଙ୍କ ସକାଶେ ମଥୁରାବାସୀ ଶୋଷଣ ଓ ନିର୍ଯ୍ୟାତନାରୁ ମୁକ୍ତି ପାଇଥିଲେ, ସେମାନଙ୍କୁ ସାଧାରଣ ଜନତା ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିବା ସ୍ୱାଭାବିକ । ସ୍ଥାନୀୟ ସମାଜରେ ଧନୁଯାତ୍ରାର ଅନ୍ତରଙ୍ଗତା ଉପଲବ୍ଧି କରାଯାଇଥାଏ । ଏକଦା କଂସ ମହାରାଜାଙ୍କ ବିରାଟକାୟ କୁଶପୁତ୍ତଳିକାଟିକୁ ପୋଡ଼ା ଯିବା ପରେ ରାଶି ଲଡୁ ତଥା ପଇସା ବିତରଣ କରାଯାଉଥିଲା । ଏହି ଅବସରରେ ଛୋଟ ଛୋଟ ଶିଶୁମାନେ ଆନନ୍ଦ ଉଲ୍ଲାସରେ 'କଂସ ରଜାର ବଅଁଶ ବୁଡୁ, କଂସ ମଲେ ଖାଏମା ଲଡୁ' ବୋଲି ଗୀତ ଗାଉଥିଲେ । କାଳକ୍ରମେ ସେହି ସବୁ ଆତ୍ମୀୟତାର ରଙ୍ଗଗୁଡ଼ିକ ମଳିନ ପଡ଼ି ଯାଉଥିବାର ମନେହୁଏ । ତଥାପି ପରିବର୍ତ୍ତିତ ପରିସ୍ଥିତି ଓ ପରିବେଶ ସହିତ ଧନୁଯାତ୍ରା ପରମ୍ପରା ଓ ସଂସ୍କୃତି ତା'ର ଐତିହ୍ୟକୁ ଜାବୁଡ଼ି ଧରିବାରେ ନିଶ୍ଚିତ ଭାବେ ସକ୍ଷମ । କେବଳ ସେତିକି ନୁହେଁ, ଧନୁଯାତ୍ରାର ପରବର୍ତ୍ତୀ କିଛି ଦିନ ମଧ୍ୟ ଯାତ୍ରାର ସୁଖଦ ଅନୁଭୂତି ଓ ସ୍ମୃତିକୁ ନେଇ ବରଗଡ଼ ଓ ଏହାର ଆଖପାଖ ଅଞ୍ଚଳ ବେଶ୍ ସତେଜ ଓ ସଜୀବ ଜଣାପଡ଼େ । ସର୍ବୋପରି ଧନୁଯାତ୍ରାର ଲୋକ ପରମ୍ପରା ଯେପରି ପ୍ରାଚୀନ ସେହିପରି ମହାନ ମଧ୍ୟ । ଏହା ଦେହବାଦୀ ନୁହେଁ, ଆତ୍ମାବାଦୀ । କେବଳ ନୈତିକତାର ଆଦର୍ଶ ମଧ୍ୟରେ ଏହା ସୀମାବଦ୍ଧ ନୁହେଁ, ସାମାଜିକ, ଧାର୍ମିକତା, ମାନବିକତା ଆଦି ପ୍ରତ୍ୟେକ ଗୁଣରେ ଏହି ଲୋକ ପରମ୍ପରା ପରିପୂର୍ଣ୍ଣ । ପ୍ରତ୍ୟେକ ସ୍ତରରେ ପ୍ରତ୍ୟେକ ଅବସ୍ଥାରେ ଓ ପ୍ରତ୍ୟେକଙ୍କ ଆଚରଣରେ ସଂସ୍କାର ସଂଶୋଧନ ଓ ଆତ୍ମସମୀକ୍ଷା ଅପରିହାର୍ଯ୍ୟ ବୋଲି ଧନୁଯାତ୍ରାର ଅନ୍ତର୍ନିହିତ ଭାବକୁ ହୃଦୟଙ୍ଗମ କରିବାର ସମୟ ଆସିଛି । ବିବେକ ଜାଗ୍ରତ ହେଲେ ନିଜ ଦୋଷତ୍ରୁଟି ନିଜେ ଜାଣିବା ସମ୍ଭବ ହୁଏ । ବିଚାରଶକ୍ତି ବା ବିବେକବୋଧ ଜାଗ୍ରତ ହେଲେ ମଣିଷର ମନ ଭିତରେ ଦେଖାଦିଏ ପ୍ରବଳ ଜିଜ୍ଞାସା । ଏହି ଜିଜ୍ଞାସା ହେତୁ ଜୀବନର ଉଦ୍ଦେଶ୍ୟ ମଣିଷ ପାଖରେ ସ୍ପଷ୍ଟ ହୋଇଯାଏ ।

**ସହାୟକ ଲେଖା**


୧. ଉତ୍ପଳ କୁମାର ଭୋଇ (୧୯୮୮), ଲୋକ ନାଟକ ଧର୍ମୀ ଧନୁଯାତ୍ରାର ବାର୍ତ୍ତା, ପ୍ରଭାବ ଓ ପରିସର, ଓଡ଼ିଶା ଲୋକ ନୃତ୍ୟ ଓ ସଙ୍ଗୀତ ମହୋତ୍ସବ' ୯୮, ସମ୍ବଲପୁର ସ୍ମରଣିକା ।

୨. ନିମାଇଁ ଚରଣ ପଣ୍ଡା ଓ କୁମୁଦ ରଂଜନ ପାଣିଗ୍ରାହୀ (୧୯୮୬), ଲୋକନାଟ୍ୟ ପରମ୍ପରାରେ ଶୀତଳଷଷ୍ଠୀ ଓ ଧନୁଯାତ୍ରା, ସ୍ମରଣିକା, ଓଡ଼ିଶାର ଲୋକ ସଂସ୍କୃତି ଜାତୀୟ ସଂପାନ, ଓଡ଼ିଆ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ପୃ.୧୦-୨୦ ।

୩. ଦୋଳଗୋବିନ୍ଦ ବିଶି (୧୯୯୫), ଧନୁଯାତ୍ରା, ଓଡ଼ିଶାର ଆଞ୍ଚଳିକ ପର୍ବପର୍ବାଣି, ଓଷାବ୍ରତ, ଯାନିଯାତ୍ରା, ଉତ୍କଳ ପାଠକ ସଂସଦ/ ଓଡ଼ିଶା ବୁକ୍ ଷ୍ଟୋର, କଟକ, ପୃ.୧୫୩-୧୬୨ ।

୪. ପ୍ରଫୁଲ୍ଲ କୁମାର ନାୟକ (୨୦୦୨), ଶିଷ୍ଟ ଓ ଲୋକନାଟ୍ୟର ସମନ୍ୱୟ, ପଶ୍ଚିମ-ଓଡ଼ିଶାର ପ୍ରସିଦ୍ଧ ଯାତ୍ରା ଓ ପର୍ବପର୍ବାଣି, ସାରସ୍ୱତ ପୁସ୍ତକ ଭଣ୍ଡାର, ସମ୍ବଲପୁର, ପୃ.୧୮୦-୧୮୪ ।

୫. ଗୌରାଙ୍ଗ ଚରଣ ଦାଶ ଓ ସାବିତ୍ରୀ ଦାଶ (୧୯୮୭), ଧନୁଯାତ୍ରା ଓ ଅନ୍ୟାନ୍ୟ ପ୍ରବନ୍ଧ, ମା' ପ୍ରକାଶନୀ, କଟକ ।

୬. Biranchi Mishra (1999), Dhanuyatra, Souvenir, Lok Mahotsav' 99, Sambalpur.

୭. Chitrasen Pasayat (2003), Glimpses of Tribal and Folk Culture, Anmol Publications Pvt. Ltd., New Delhi.


ସହକାରୀ ପ୍ରଶାସକ
ଶ୍ରୀମନ୍ଦିର କାର୍ଯ୍ୟାଳୟ, ପୁରୀ

# ଜ୍ୟୋତିର୍ବିଜ୍ଞାନୀ ସାମନ୍ତ ଚନ୍ଦ୍ରଶେଖର

ଶ୍ରୀନିବାସ ଆଚାର୍ଯ୍ୟ

ବହୁ ଆବହମାନ କାଳରୁ ଓ ଚଳନ୍ତି ଶତାବ୍ଦୀ ମଧ୍ୟରେ ବିଜ୍ଞାନ ହେଉଛି ମାନବ ସମାଜର ଜୀବନ ସଦୃଶ । କାରଣ ବିଜ୍ଞାନ ମାଧ୍ୟମରେ ମାନବ ମୃତ୍ୟୁ ମୁଖରୁ ବର୍ଞ୍ଚ ପାରିବା ସଂଗେ ସଂଗେ ଦୂର ଦେଶକୁ ଅଳ୍ପ ସମୟରେ ଯାଇପାରୁଛି । ଏତଦ୍‌ବ୍ୟତୀତ ବିଭିନ୍ନ ଗ୍ରହ ଓ ଉପଗ୍ରହକୁ ଯାଇ ସ୍ଥାନ ଓ ଭୌଗଳିକ ପରିବେଶମାନ ନିରୀକ୍ଷଣ କରିପାରୁଛି । ସର୍ବୋପରି ପୃଥିବୀର ଆର୍ଥିକ, ସାମାଜିକ, ସାଂସ୍କୃତିକ ଓ ମାନସିକ ମାନଦଣ୍ଡ ବିଜ୍ଞାନ ଦ୍ୱାରା ହିଁ ସମୃଦ୍ଧ ହୋଇପାରୁଛି । ଯେଉଁ ବୁଦ୍ଧିଜୀବୀ ଓ ମହାପୁରୁଷମାନେ ଏହି ବିଜ୍ଞାନର ସ୍ରଷ୍ଟା, ତନ୍ମଧ୍ୟରୁ ଉତ୍କଳର ମହାନ୍ ବରପୁତ୍ର 'ସାମନ୍ତ ଚନ୍ଦ୍ରଶେଖର' ଅନ୍ୟତମ । ତାଙ୍କରି ଅବଦାନ ପୃଥିବୀବାସୀଙ୍କର ଏକ ସ୍ମରଣୀୟ ସ୍ତମ୍ଭ ପରି ବିଜ୍ଞାନ ଜଗତରେ ଅମର ହୋଇ ରହିଅଛି ଓ ରହିଥିବ ମଧ୍ୟ । ସ୍ୱୟଂ ଜଗତର କର୍ତ୍ତା ମାନବ ରୂପରେ ଧରାପୃଷ୍ଠରେ ଅବତରଣ କରି ଅନ୍ୟାୟ, ଅତ୍ୟାଚାର, ପାପ ଦାଉରୁ ଯେପରି ପୃଥିବୀବାସୀଙ୍କୁ ରକ୍ଷା କରିଥାନ୍ତି, ସେପରି ବ୍ୟକ୍ତିଗତ ତଥା ସାମାଜିକ ଜୀବନର ସମସ୍ତ ଦୈନନ୍ଦିନ ଆବଶ୍ୟକୀୟ ପଦାର୍ଥଗୁଡ଼ିକ କେବଳ ବୈଜ୍ଞାନିକଙ୍କ ଦ୍ୱାରା ହିଁ ସମ୍ଭବ ହୋଇପାରିଛି । କେବଳ ଜୀବଜଗତର ଜନ୍ମ ଓ ମୃତ୍ୟୁ ବ୍ୟତୀତ ସମସ୍ତ ଗତିଶୀଳ କାର୍ଯ୍ୟ ଏହି ବିଜ୍ଞାନ ଦ୍ୱାରା ହିଁ ନିୟନ୍ତ୍ରିତ ।

ଅତୀତରେ ଯେଉଁ କେତେଜଣ ମାନବ, ମହାମାନବ ଆଖ୍ୟାରେ ଭୂଷିତ ହୋଇଛନ୍ତି, ସେମାନଙ୍କ ଭିତରେ ଅଦ୍ୱିତୀୟ ହେଉଛନ୍ତି ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର । ନୂତନ ଓଡ଼ିଶାର ଅବିଭକ୍ତ ପୁରୀ ଜିଲ୍ଲାର ଖଣ୍ଡପଡ଼ା ଗଡ଼ରେ ସାମନ୍ତ ଚନ୍ଦ୍ରଶେଖର ୧୮୩୫ ମସିହା ପୌଷ କୃଷ୍ଣ ଅଷ୍ଟମୀ ତିଥିରେ ଜନ୍ମଲାଭ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ୟାମବନ୍ଧୁ ସିଂହ ଓ ମାତାଙ୍କ ନାମ ଥିଲା ବିଷ୍ଣୁମାଳୀ । ତାଙ୍କର ପିଲାଦିନର ଡାକନାମ ପଠାଣି ଥିବାରୁ, ସେ ସମଗ୍ର ଓଡ଼ିଶାରେ 'ପଠାଣି ସାମନ୍ତ' ନାମରେ ସୁପରିଚିତ । ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟ ଜୀବନରୁ ସାମନ୍ତ ଚନ୍ଦ୍ରଶେଖର ଜଣେ ପ୍ରତିଭାବାନ ମହାପୁରୁଷ ହେବାର ସୂଚନା ଜଣାପଡ଼ିଥିଲା । ପ୍ରତ୍ୟୁଷର ଉଦୟଗାମୀ ସୂର୍ଯ୍ୟରଶ୍ମି ଯେପରି ନିଶିର ଘଞ୍ଚ ଅନ୍ଧକାରକୁ ଦୂରେଇ ଦେଇ ପୃଥିବୀ ବକ୍ଷରେ



ଶୀତଳ ଓ ମଧୁର ଆଲୋକରଶ୍ମି ବିଚ୍ଛୁରିତ କରିଥାଏ, ଠିକ୍ ସେହିପରି ଚନ୍ଦ୍ରଶେଖରଙ୍କର ଜ୍ୟୋତିର୍ବିଦ୍ୟାର ପ୍ରତିଭା ବିକଶିତ ହୋଇଥିଲା । ପିଲାଦିନେ ଛାୟା ମାପ ଓ ନକ୍ଷତ୍ର ଦର୍ଶନ ଇତ୍ୟାଦିର ଜିଜ୍ଞାସା ଭାବ ଜାଗ୍ରତ ହୋଇଥିଲା । ଏହା ଜାଣିପାରି ପିତା ଶ୍ୟାମବନ୍ଧୁ ତାଙ୍କୁ ଜ୍ୟୋତିଷ ଶାସ୍ତ୍ର ବିଦ୍ୟା ଅଧ୍ୟୟନ କରିବା ପାଇଁ ଶୁଭାନୁକୂଳ କରାଇଥିଲେ । ତାଙ୍କର ତୀକ୍ଷ୍ଣବୁଦ୍ଧି, ଅସାଧ୍ୟ ତ୍ୟାଗ ଓ ସାଧନା ଫଳରେ ଖୁବ୍ କମ୍ ସମୟରେ ପ୍ରଚଳିତ ସବୁ ପ୍ରଧାନ ସିଦ୍ଧାନ୍ତ ଓ ଜ୍ୟୋତିଷ ଶାସ୍ତ୍ର ପଢ଼ି ଆୟତ କରିବାକୁ ସମର୍ଥ ହୋଇଥିଲେ । ବର୍ତ୍ତମାନ ପରି ତତ୍‌କାଳୀନ ସମୟରେ ଉଚ୍ଚଶିକ୍ଷାର ବ୍ୟବସ୍ଥା, ପୌନଃପାଳିକ ପ୍ରଶିକ୍ଷଣ ସୁଯୋଗ, ଗ୍ରନ୍ଥାଗାର, ପରୀକ୍ଷା-ନିରୀକ୍ଷାର ସାଧନ ଓ ଗବେଷଣାଗାରର ସୁବିଧା ନଥିଲା । କିନ୍ତୁ ତାଙ୍କର ଦୃଢ଼ ଆତ୍ମ ପ୍ରତ୍ୟୟ, ତପସୀସୁଲଭ ନିଷ୍ଠା, ମୌଳିକ ଚିନ୍ତାଚେତନା, ଏକନିଷ୍ଠ ସାଧନା, ଜିଜ୍ଞାସା ଓ ଭଗବଦ୍ ବିଶ୍ୱାସ ବଳରେ ସେ ୧୮୯୨ ମସିହା ମାର୍ଗଶିର କୃଷ୍ଣ ନବମୀ ଶନିବାର ଦିନ ସିଦ୍ଧାନ୍ତ ଦର୍ପଣ ନାମକ ଏକ ପୁସ୍ତକ ପୂର୍ଣ୍ଣ ଭାବରେ ପ୍ରସ୍ତୁତ କରିଥିଲେ । ଆଉ ମଧ୍ୟ ଅନେକଙ୍କ ମତରେ ସିଦ୍ଧାନ୍ତ ଦର୍ପଣର ପ୍ରସ୍ତୁତି ବିଷୟରେ ମତାନୈକ୍ୟ

ଦେଖାଯାଏ । ପଞ୍ଜିକାରେ ଗ୍ରହ ନକ୍ଷତ୍ରର ସ୍ଥାନ ଅନୁସାରେ ଚନ୍ଦ୍ରଙ୍କର ଗତି ଓ ସ୍ଥିତି ଅମେଳ ହେବାର ଦେଖି ସେ ପ୍ରଥମେ ଅନ୍ୱେଷଣ କରିଥିଲେ । ସେହି ତ୍ରୁଟିକୁ ସଂଶୋଧନ କରିବାରେ ସେ ସମର୍ଥ ହୋଇଥିଲେ । ବର୍ତ୍ତମାନର ଲକ୍ଷ ଲକ୍ଷ ଟଙ୍କାର ମୂଲ୍ୟବାନ ବୈଜ୍ଞାନିକ ଯନ୍ତ୍ରପାତି ବ୍ୟତୀତ ମାତ୍ର ଦୁଇ ଖଣ୍ଡ କାଠିରେ ମାନଯନ୍ତ୍ର ପ୍ରସ୍ତୁତ କରି ଗ୍ରହମାନଙ୍କର ସ୍ଥିତି ଜାଣିବାରେ ସମର୍ଥ ହୋଇଥିଲେ । ଚବିଶି ଅଙ୍ଗୁଳ ଲମ୍ବ ବିଶିଷ୍ଟ ଏକ କାଠିର ଅଗ୍ରଭାବରେ ଚାରି ଅଙ୍ଗୁଳ କାଠିକୁ ଖଞ୍ଜି ଗାଣିତିକ ସୂତ୍ର ଅନୁସାରେ ଗ୍ରହମାନଙ୍କର ସ୍ଥିତି ଓ ପର୍ବତର ଉଚ୍ଚତା ନିର୍ଭୁଲ ଭାବରେ ମାପି ପାରୁଥିଲେ । ଏହି ମାନଯନ୍ତ୍ରର ଆକାର ଥିଲା ଇଂରାଜୀ ଅକ୍ଷର 'T' ପରି । ସେ ମଧ୍ୟ ଶଙ୍କୁ ଯନ୍ତ୍ର ଓ ଖଗୋଳ ଯନ୍ତ୍ର ନିର୍ମାଣ କରିଥିଲେ ।

ପଠାଣି ସାମନ୍ତଙ୍କର ମନ ଓ ମସ୍ତିଷ୍କର ସ୍ନାୟୁଗୁଡ଼ିକ ଥିଲା ତାଙ୍କର ବିଜ୍ଞାନ ଗବେଷଣାର ପରୀକ୍ଷାଗାର । ସେ ଅକ୍ଲାନ୍ତ ପରିଶ୍ରମ ଓ ଅତୁଳନୀୟ ସାଧନା କରିବା ଫଳରେ ବହୁ ଗାଣିତିକ ଓ ଜ୍ୟୋତିର୍ବିଦ୍ୟାରେ ପାରଙ୍ଗମ ହୋଇ ଏହାକୁ ଶ୍ଳୋକ ଆକାରରେ ଏକ ବହିରେ ପ୍ରକାଶ କରିଥିଲେ । ତାଙ୍କ ଦ୍ୱାରା ଲିଖିତ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥଟି ଥିଲା ସମଗ୍ର ପୃଥିବୀବାସୀଙ୍କ ପାଇଁ ଶ୍ରେଷ୍ଠ ବୈଜ୍ଞାନିକ ସିଦ୍ଧାନ୍ତ ଓ ଗାଣିତିକ ସୂତ୍ରର ସମାହାର । କେବଳ ନୂଆ କିଛି ଉଦ୍ଭାବନ ବା ଆବିଷ୍କାର କରି ଦେଲେ ଯେ ବୈଜ୍ଞାନିକ ହୋଇଯିବେ, ତାହା ନୁହେଁ ବରଂ ସଠିକ୍ ବିଶ୍ଳେଷଣ କରି ପରୀକ୍ଷା ଓ ପର୍ଯ୍ୟବେକ୍ଷଣ ମାଧ୍ୟମରେ ତଥ୍ୟ ପରିବେଷଣ କରିବା ହିଁ ବିଜ୍ଞାନର ମୂଳ ମନ୍ତ୍ର । ଯାହାକି ପଠାଣି ସାମନ୍ତଙ୍କ ଦ୍ୱାରା ସମ୍ଭବ ହୋଇପାରିଛି । ବାସ୍ତବିକ ପଠାଣି ସାମନ୍ତ ତାଙ୍କରି ସିଦ୍ଧାନ୍ତ ଦର୍ପଣ ମାଧ୍ୟମରେ ଜ୍ୟୋତିର୍ବିଜ୍ଞାନର ସମସ୍ତ ତଥ୍ୟକୁ ପୃଥିବୀ ଦରବାରରେ ପରିବେଷଣ କରି ଜଣେ ଆଦର୍ଶ ଜ୍ୟୋତିର୍ବିଜ୍ଞାନୀ ଭାବରେ ଆଦରଣୀୟ ଓ ପ୍ରଶଂସନୀୟ ହୋଇପାରିଛନ୍ତି ।

ଯଦିଓ ଏହି ପୁସ୍ତକଟିର ଉପଯୋଗିତା ଓ ବ୍ୟବହାର ଦୀର୍ଘ ଏକଶତ ବର୍ଷ ପର୍ଯ୍ୟନ୍ତ ଲୁକ୍କାୟିତ ଅବସ୍ଥାରେ ରହିଥିଲା, ତଥାପି ୧୮୯୯ ମସିହାରେ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ଏହାକୁ ସୁପ୍ରସିଦ୍ଧ 'ନେଚର ଓ କଲେଜ' ପତ୍ରିକାରେ ଲେଖି ଲୋକଲୋଚନକୁ ଆଣିଥିଲେ । ୧୯୯୫ ମସିହାରେ ଏହି ମୂଲ୍ୟବାନ ଓ ଅବିସ୍ମରଣୀୟ ଗ୍ରନ୍ଥକୁ ସୁପରିଚିତ ପଦାର୍ଥ ବିଜ୍ଞାନୀ ପ୍ରଫେସର ଲକ୍ଷ୍ମୀଧର ଶତପଥୀଙ୍କ ଆପ୍ରାଣ ପ୍ରୟାସ ତାଙ୍କୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଜଣେ ଜ୍ୟୋତିର୍ବିଜ୍ଞାନୀ ଭାବେ ସ୍ଥାନ ଦେଇପାରିଛି । ଆଉମଧ୍ୟ ପ୍ରଫେସର ଶତପଥୀ ଓ ଡଃ ପ୍ରହଲ୍ଲାଦ ଚନ୍ଦ୍ର ନାୟକ ମିଳିତ ଭାବେ Current Science ଓ ଆଷ୍ଟ୍ରୋନୋମିକାଲ ସୋସାଇଟି ବୁଲେଟିନ୍‌ରେ ସାମନ୍ତଙ୍କର ପରିଚୟାତ୍ମକ ପ୍ରବନ୍ଧ ଦୁଇଟି ପ୍ରକାଶ କରିଥିଲେ । ୨୦୦୩ ମସିହାରେ ଭାରତ ତଥା ପୃଥିବୀର କେତେଜଣ ଖ୍ୟାତନାମା ବୈଜ୍ଞାନିକ ମିଳିତ ଭାବେ ତାଙ୍କ ସମ୍ପର୍କରେ ୩୫୦ ପୃଷ୍ଠାର ଏକ ପୁସ୍ତକ 'ବୌଦ୍ଧିକ ଅବଦାନ' ଦିଲ୍ଲୀର ନିରୋସା ପବ୍ଲିସିଂ ହାଉସ ପକ୍ଷରୁ ପ୍ରକାଶ କରି ମହାନ କାର୍ଯ୍ୟ ସମ୍ପାଦନା କରିଛନ୍ତି । କାଶୀର ପଣ୍ଡିତ ବାସୁଦେବ ଶାସ୍ତ୍ରୀ ଓ ସୁଧାକର ଦ୍ୱିବେଦୀ ଏହି ଗ୍ରନ୍ଥର ବହୁ ନୂତନ ତତ୍ତ୍ୱ ଲୋକଲୋଚନକୁ ଆଣିଛନ୍ତି ।

ଶୁଦ୍ଧ ପଞ୍ଜିକା ଗଣନା ପାଇଁ ସେ ମନ୍ତ୍ର ପରାଶର, ଗଦାଧର ଓ ଯାଜ୍ଞବଲକ୍ୟ ଇତ୍ୟାଦିଙ୍କ ଲିଖିତ ସ୍ମୃତିକୁ ଅଧ୍ୟୟନ କରି ଅଗାଧ ଜ୍ଞାନ ଲାଭ କରିପାରିଥିଲେ । ତାଙ୍କର ମାନବ ସମାଜ ପ୍ରତି ଜ୍ୟୋତିର୍ବିଜ୍ଞାନର ଅବଦାନ ଥିଲା ଅତୁଳନୀୟ । ସୂର୍ଯ୍ୟ, ଚନ୍ଦ୍ର ଓ ଗ୍ରହ ଇତ୍ୟାଦିଙ୍କର ଦୈନନ୍ଦିନ ଓ ବାର୍ଷିକ ଆବର୍ତ୍ତନ ଓ ପରିକ୍ରମଣର ସମୟ, ଦୂରତ୍ୱ ଓ ଗଣନା ଇତ୍ୟାଦି ନିର୍ଭୁଲ ତଥ୍ୟ ତାଙ୍କର ଥିଲା ଶ୍ରେଷ୍ଠ ଅବଦାନ । ଏହାଫଳରେ ସୂର୍ଯ୍ୟ ପରାଗ ଓ ଚନ୍ଦ୍ର ଗ୍ରହଣର ସଠିକ୍ ସମୟ ନିରୂପଣ କରିବାରେ ସମର୍ଥ ହୋଇଥିଲେ । ଅତୀତ ଭାରତରେ ଜନ୍ମଲାଭ କରିଥିବା ସୁପ୍ରସିଦ୍ଧ ଜ୍ୟୋତିର୍ବିଦ ଆର୍ଯ୍ୟଭଟ୍ଟ, ବରାହମିହିର, ବ୍ରହ୍ମଗୁପ୍ତ ଓ ଭାସ୍କରାଚାର୍ଯ୍ୟଙ୍କ ପରି ପୃଥିବୀ ଜ୍ୟୋତିର୍ବିଜ୍ଞାନର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଧ ହୋଇ ରହିଗଲା ସାମନ୍ତ ଚନ୍ଦ୍ରଶେଖରଙ୍କର ନାମ ।

ବୈଦିକଯୁଗ ଅର୍ଥାତ୍ ଋକ୍ ବେଦ ପ୍ରଚଳନ କାଳରୁ ଜ୍ୟୋତିର୍ବିଜ୍ଞାନର ଚଳଣି ଓ ବ୍ୟବହାର ହୋଇ ଆସୁଥିଲେ ମଧ୍ୟ, ସାମନ୍ତ ଚନ୍ଦ୍ରଶେଖର ଥିଲେ ଭାରତର ଜ୍ୟୋତିର୍ବିଦ୍‌ମାନଙ୍କ ମଧ୍ୟରେ ଶେଷ ଓ ଶ୍ରେଷ୍ଠ ପ୍ରତିନିଧି । ୧୯୦୩ ମସିହାରେ ଭାରତ ସରକାର ତାଙ୍କର ବହୁଗୁଣଗାନ କରି, ତାଙ୍କୁ ପେନ୍‌ସନ ବା ବୃତ୍ତି ଦେବା ପାଇଁ ଇଂରେଜ ସେକ୍ରେଟାରୀଙ୍କ ପାଖକୁ ଏକ ପତ୍ର ପ୍ରେରଣ କରିଥିଲେ । ସର୍ବଶେଷରେ ତତ୍‌କାଳୀନ ସରକାର ତା.୨୦.୧୧.୧୯୦୩ରିଖରେ ମାସିକ ଟ.୫୦.୦୦ ବୃତ୍ତି ପ୍ରଦାନ କରିଥିଲେ । ଫଳିତ ଜ୍ୟୋତିଷରେ ତାଙ୍କର ସଠିକ୍ ଗଣନା ଓ ଜ୍ୟୋତିର୍ବିଜ୍ଞାନର ଅବଦାନ ପାଇଁ ସରକାର ୧୮୯୩ ମସିହାରେ ତାଙ୍କୁ ମହାମହୋପାଧ୍ୟାୟ ଉପାଧିରେ ଭୂଷଣ କରିଥିଲେ । ସେ ଯେପରି ପଣ୍ଡିତ, ସେପରି ମଧ୍ୟ ଜଣେ ବିନୟୀ, ସଂଯମୀ, ସ୍ପଷ୍ଟବାଦୀ ଓ କର୍ମବୀର ଥିଲେ । ନିଜର ଜାତକକୁ ଗଣନା କରି ମୃତ୍ୟୁର ବହୁ ସମୟ ପୂର୍ବରୁ ମରିବା ସମୟ ଜାଣିପାରିଥିଲେ । ତେଣୁ ସେ ପବିତ୍ର ଧର୍ମପୀଠ ପୁରୀଠାରେ ମୃତ୍ୟୁ ପୂର୍ବରୁ ରହି ଜଗନ୍ନାଥଙ୍କ କୃପା ଓ ଅପାର କରୁଣା ଲାଭ କରି ତା.୧୧.୬.୧୯୦୪ରିଖରେ ଦେହ ତ୍ୟାଗ କରିଥିଲେ । ତାଙ୍କର ଅଭୁଲା ସ୍ମୃତିକୁ ଚିର ଦିନ ମନେ ରଖିବା ପାଇଁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ ତାଙ୍କରି ନାମରେ ପଠାଣି ସାମନ୍ତ ପ୍ଲାନେଟୋରିଅମ୍ ପ୍ରତିଷ୍ଠା କରାଯାଇଅଛି । ଭବିଷ୍ୟତ ବାଣୀର ସଠିକତା ଓ ଉତ୍କଳର ପଞ୍ଜିକା ଆଜି ଓଡ଼ିଶାର ଘରେ ଘରେ ସର୍ବଜନାନୁମୋଦିତ । ମାତ୍ର ଦୁଇଖଣ୍ଡ କାଠି ମାଧ୍ୟମରେ ସେ ଯେଉଁ ଅବଦାନ ପୃଥିବୀବାସୀଙ୍କୁ ଦେଇପାରିଛନ୍ତି, ତାହା ଆଜିର ବୈଜ୍ଞାନିକମାନଙ୍କ ପାଇଁ ଏକ ଆହ୍ୱାନ ଅଟେ । ତାଙ୍କ ଦ୍ୱାରା ଲିଖିତ

ସିଦ୍ଧାନ୍ତ ଦର୍ପଣର ପ୍ରତ୍ୟେକ ଶ୍ଳୋକକୁ ପୁଙ୍ଖାନୁପୁଙ୍ଖ ଭାବରେ ବିଶ୍ଳେଷଣ କରି ଯଦି ଏକ ଅନୁବାଦ ପୁସ୍ତକ ଆକାରରେ ପ୍ରକାଶ କରାଯାଆନ୍ତା, ଏହା ଫଳରେ ପଠାଣି ସାମନ୍ତଙ୍କର ଅମର ଆତ୍ମା ତୃପ୍ତି ପାଇବା ସଂଗେସଂଗେ ମାନବ ସମାଜର ବହୁ ଉପକାର ସାଧିତ ହୋଇପାରନ୍ତା । ତାଙ୍କୁ ଲକ୍ଷ୍ୟ କରି କବିବର ରାଧାନାଥ ତାଙ୍କ 'ଦରବାର' କବିତାରେ ଲେଖିଛନ୍ତି -

'ହେ ଉତ୍କଳ ମାତା ଯୋଗ୍ୟତମ ସୁତ,
ତୁମ୍ଭ ଯୋଗୁଁ ଆମେ ସର୍ବେ ହେଲୁ ପୁତ ।
ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ,
ନର ଦେହ ଥିବ ଯାବତ ହୃଦୟ ।।'

ଆଜି ସାମନ୍ତ ଚନ୍ଦ୍ରଶେଖର ନାହାନ୍ତି ସତ, କିନ୍ତୁ ଓଡ଼ିଶାର ନିପଟ ମଫସଲ ତଥା ସାଧାରଣ ପରିବାରରେ ଜନ୍ମ ଗ୍ରହଣ କରି ସମଗ୍ର ପୃଥିବୀବାସୀଙ୍କୁ ଯେଉଁ ସ୍ୱାଦ ଦେଇପାରିଛନ୍ତି, ତାହାର ପଟାନ୍ତର ନାହିଁ । ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ଯେଉଁ କେତେଜଣ ବିଶ୍ୱଦରବାରରେ ଖ୍ୟାତି ଅର୍ଜନ କରିଛନ୍ତି, ସେମାନଙ୍କ ମଧ୍ୟରେ ସାମନ୍ତ ମହୋଦୟ ଶ୍ରେଷ୍ଠ ସ୍ଥାନ ଅଧିକାର କରି ଓଡ଼ିଶାର ଯଶ, କୀର୍ତ୍ତି ଓ ସମ୍ମାନର ଧ୍ୱଜା ଉତ୍ତୋଳନ କରିବାରେ ସମର୍ଥ ହୋଇଛନ୍ତି । ଏଣୁ ସମସ୍ତ ଯୁବପିଢ଼ି, ଛାତ୍ର ସମାଜ ଓ ଭବିଷ୍ୟତ ନାଗରିକ ତାଙ୍କ ଆଶା ଓ ଆକାଂକ୍ଷାକୁ ସାକାର କରିବା ଏକାନ୍ତ ବାଞ୍ଛନୀୟ । ଫଳରେ ତାଙ୍କର ଅମର ଆତ୍ମା ମୁକ୍ତି ପାଇବା ସଂଗେସଂଗେ ଦେଶ ଓ ବିଦେଶରେ ବିଜ୍ଞାନର ସର୍ବାଙ୍ଗୀନ ଉନ୍ନତି ସାଧନ ହେବ । ଓଡ଼ିଶା ଭୂମି ତାଙ୍କରି ପାଇଁ ବିଶ୍ୱ ଦରବାରରେ ଗର୍ବିତ ଓ ଗୌରବାନ୍ୱିତ ।

ଘ.ନଂ.- ଟୁ.ଆର୍- ୩୫/୭
ଆଠ ନମ୍ବର, ଭୁବନେଶ୍ୱର




ଭୁବନେଶ୍ୱରଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆର୍.ପି.ଆର୍.ସି.ର ବୋଟାନିକା ଗାର୍ଡେନ ଉଦ୍‌ଘାଟନ କରୁଛନ୍ତି । ନିକଟରେ ଆଇନ, ଗ୍ରାମ୍ୟ ଉନ୍ନୟନ ଓ ଶିକ୍ଷ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ ସାଂସଦ ଶ୍ରୀ ପ୍ରସନ୍ନ ପାଟଶାଣୀ ଉପସ୍ଥିତ ଅଛନ୍ତି । ୩୦.୧୧.୦୪

# ତମାଖୁ ସେବନ ଓ ନାରୀମାନଙ୍କର ସ୍ୱାସ୍ଥ୍ୟ

ଡାଃ. ସରୋଜିନୀ ଷଡଙ୍ଗୀ

ତମାଖୁ ସେବନ ନିଶ୍ଚିତ ଭାବରେ ଶରୀର ପାଇଁ କ୍ଷତିକାରକ । ଏହା ବିଭିନ୍ନ ଭାବରେ ସେବନ କରାଯାଇଥାଏ, ଯଥା- ସିଗାରେଟ, ବିଡ଼ି, ଚୁରୁଟ୍, ପିକା ଭାବରେ ଧୂମପାନ ଆକାରରେ କିମ୍ବା ପାନ, ଗୁଡ଼ାଖୁ, ଗୁଣ୍ଡି, ଜର୍ଦ୍ଦା, ଗୁଟ୍‌କା, ପୁଡ଼ିଆ, ଦୋକ୍ତା ଓ ସୁବାସିତ ପାନମସଲା ଭାବରେ ମଧ୍ୟ ପାଟିବାଟେ ଖିଆ ଯାଇପାରେ । ଆମ ଦେଶରେ ପ୍ରାୟ ୧୮୪୦ ଲକ୍ଷ ଲୋକ ତମାଖୁ ସେବନ କରିଥାନ୍ତି । ପ୍ରତିବର୍ଷ ପ୍ରାୟ ୫୫ ହଜାର ପିଲା ନୂଆକରି ଏହି ଖରାପ ଅଭ୍ୟାସର ବଶବର୍ତ୍ତୀ ହୋଇଥାନ୍ତି । ତମାଖୁ ଧୂଆଁରେ ୪୦,୦୦୦ ପ୍ରକାରର ରାସାୟନିକ ପଦାର୍ଥ ଅଛି । ଏଥିରେ କାରବନ୍ ମନୋକ୍ସାଇଡ଼, ନିକୋଟିନ ଆଦି ପ୍ରଧାନ । ଏହା ଫୁସ୍‌ଫୁସ୍‌ର ଝିଲ୍ଲୀ ଭିତରକୁ ଯାଇ ଫୁସ୍‌ଫୁସ୍‌ରେ କ୍ୟାନ୍‌ସର ରୋଗ କରିଥାଏ । ଏଥିରେ ଥିବା କାର୍ବନ ମନୋକ୍ସାଇଡ଼, ନିକୋଟିନ, ରକ୍ତର ହିମୋଗ୍ଲୋବିନକୁ ବିକୃତ କରିଦିଏ ଓ ରକ୍ତକୋଷ କ୍ଲଟ ହୋଇଯାଏ । ତେଣୁ ହୃତପିଣ୍ଡ ଓ ମସ୍ତିଷ୍କକୁ ଅମ୍ଳଜାନ କମ୍ ହୋଇଯିବା ଯୋଗୁଁ ହାର୍ଟ ଆଟାକ୍ ଓ ଷ୍ଟ୍ରୋକ୍ ଆରମ୍ଭ ହୋଇଯାଏ । ଫୁସ୍‌ଫୁସ୍ କ୍ୟାନ୍‌ସର, ଫୁସ୍‌ଫୁସ୍‌ର ସଂକ୍ରମଣ ରୋଗ ହୁଏ । ଏହାଛଡ଼ା ବ୍ରୋଙ୍କାଇଟିସ୍ ଆଦି ରୋଗ ହୁଏ । ପାଟି ବାଟେ ତମାଖୁ ସେବନ କଲେ ପାଟି ଓ ମୁଖ ଗହ୍ୱରରେ କ୍ୟାନ୍‌ସର ହୁଏ । ପାଟି ଓ କଳରେ ରାତିରେ ପାନଜାକି ଶୋଇଲେ, ସାରା ରାତି ପାଟିର ନରମ ଝିଲ୍ଲୀ ତମାଖୁର ସଂସ୍ପର୍ଶରେ ଆସିଥାଏ । ତମାଖୁ ସେବନ ଯୋଗୁଁ ଭାରତବର୍ଷରେ ପ୍ରତିଦିନ ୨୨୦୦ ଜଣ ମୃତ୍ୟୁବରଣ କରିଥାନ୍ତି । ତଥା ଘଣ୍ଟାକୁ ୯୦ ଜଣ ମୃତ୍ୟୁବରଣ କରୁଛନ୍ତି । ୧୦ ଜଣ ଫୁସ୍‌ଫୁସ୍ କ୍ୟାନ୍‌ସର ରୋଗୀଙ୍କ ମଧ୍ୟରୁ ୯ ଜଣଙ୍କର ମୃତ୍ୟୁ ଧୂମପାନ ପାଇଁ ହୋଇଥାଏ । ନିକଟରେ ମେ ୩୧ ତାରିଖରେ ସାରା ବିଶ୍ୱରେ 'ବିଶ୍ୱ ତମାଖୁ ବର୍ଜନ ଦିବସ' ପାଳିତ ହୋଇଯାଇଛି । ଏ ତ' ଗଲା ପୁରୁଷମାନଙ୍କ କଥା । ନାରୀମାନଙ୍କର କଥା ବିଚାରକୁ ନେଲେ ଆମେ ଦେଖିବା ଯେ ଭାରତବର୍ଷର ବିଶେଷକରି ଓଡ଼ିଶାରେ ନାରୀମାନେ ବେଶୀ ଧୂମପାନ କରନ୍ତି ନାହିଁ । ତେବେ ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶାରେ କିଛି ସମ୍ପ୍ରଦାୟର ମହିଳାମାନେ ବିଡ଼ି, ପିକା ଟାଣିଥାନ୍ତି ଓ ତମାଖୁ ସେବନ କରିଥାନ୍ତି । ତେବେ ପ୍ରତ୍ୟକ୍ଷରେ ସିଗାରେଟ ନପିଇଲେ ମଧ୍ୟ ପ୍ରାୟତଃ ମହିଳାମାନେ ପରୋକ୍ଷରେ ଧୂମପାନର ଶିକାର ହୋଇଥାନ୍ତି । ପୁରୁଷମାନେ ଘରେ ଅଥବା ବାହାରେ ଧୂମପାନ କରୁଥିବାବେଳେ ମହିଳା ଓ ଶିଶୁମାନେ ଏହାକୁ ନିଜ ଅଜାଣତରେ ନିଜେ ନିଃଶ୍ୱାସରେ ନେଇଥାନ୍ତି । ଏହାଦ୍ୱାରା ସେମାନଙ୍କର କ୍ଷତି ହୋଇଥାଏ । ଏହା ନିଶ୍ଚିତଭାବେ ପ୍ରମାଣିତ ହୋଇସାରିଛି ଯେ ପ୍ରତ୍ୟକ୍ଷ ଧୂମପାନରେ ଜଣେ ୩ଟି ସିଗାରେଟ ପିଇବା ଏବଂ ପରୋକ୍ଷ ଧୂମପାନ ଦ୍ୱାରା ଗୋଟିଏ ସିଗାରେଟ ପିଇବା ସଂଗେ ସମାନ ହୋଇଥାଏ । ତେଣୁ ପ୍ରତିଦିନ ଏହିଭଳି ଘରେ, ବାହାରେ, ସର୍ବସାଧାରଣ ସ୍ଥାନରେ, ସିନେମା ହଲ୍‌ରେ ତଥା ବିଭିନ୍ନ ସ୍ଥାନରେ ମହିଳାମାନେ ପରୋକ୍ଷ ଧୂମପାନର ଶିକାର ହୋଇ ବିଭିନ୍ନ ପ୍ରକାର ରୋଗ ଭୋଗିଥାନ୍ତି ।

ତେଣୁ ପୁରୁଷମାନଙ୍କ ଭଳି ମହିଳାମାନେ ମଧ୍ୟ ଶ୍ୱାସରୋଗ, ଫୁସ୍‌ଫୁସ୍ ସଂକ୍ରମଣଜନିତ ରୋଗ, ହୃଦରୋଗ ତଥା ମୁଖଗହ୍ୱର କର୍କଟ ରୋଗର ଶିକାର ହୋଇଥାନ୍ତି । ଏହାଛଡ଼ା ମହିଳାମାନଙ୍କର ପ୍ରଜନନଜନିତ ସ୍ୱାସ୍ଥ୍ୟ ମଧ୍ୟ ତମାଖୁ ସେବନ ଦ୍ୱାରା ପ୍ରଭାବିତ ହୋଇଥାଏ । ଧୂମପାନ ଦ୍ୱାରା ପୁରୁଷର ଶୁକ୍ରାଣୁ ବିକୃତ ହୋଇଥାଏ । ଏଥିରେ ଥିବା ନିକୋଟିନ ଏବଂ ଅନ୍ୟାନ୍ୟ ବିଷଗୁଡ଼ିକ ଡିମ୍ବକୋଷରେ ଥିବା କୋଷଗୁଡ଼ିକ ଉପରେ ଖରାପ ପ୍ରଭାବ ପକାଇଥାଏ । ତେଣୁ କୋଷରୁ ଇଷ୍ଟ୍ରୋଜେନ ନାମକ ସ୍ତ୍ରୀ ହର୍‌ମୋନ ଝରିବା କମିଯାଏ । ଏହାଦ୍ୱାରା ଡିମ୍ବକୋଷର କୋଷଗୁଡ଼ିକ ବିକଳାଙ୍ଗ ହୁଏ । ଫଳରେ ମହିଳାମାନଙ୍କର ବନ୍ଧ୍ୟାଦୋଷ ହୁଏ । ଯଦିବା ଗର୍ଭସଞ୍ଚାର ହୋଇଥାଏ, ତେବେ ପ୍ରଥମ ତିନିମାସ ମଧ୍ୟରେ ବାରମ୍ବାର ଗର୍ଭପାତ ହୁଏ । ଗର୍ଭସ୍ଥ ଶିଶୁ ବିକଳାଙ୍ଗ ହୁଏ । ଯଦିବା ଶିଶୁ ବିକଳାଙ୍ଗ ହୋଇନଥାଏ ଏବଂ ଗର୍ଭପାତ ହୋଇନଥାଏ, ତେବେ ମଧ୍ୟ ଧୂମପାନ ପ୍ରଭାବରୁ ଗର୍ଭଫୁଲ ଭିତର ଦେଇ ମା' ଦେହରୁ ଶିଶୁ ଦେହକୁ ଖାଦ୍ୟସାର ଓ ରକ୍ତ ପ୍ରବାହିତ ହୋଇପାରେ ନାହିଁ । ଶିଶୁ ମଧ୍ୟ ଆବଶ୍ୟକ ପରିମାଣର ଅମ୍ଳଜାନ ପାଇପାରେ ନାହିଁ । ତେଣୁ ମା' ଗର୍ଭରେ ଶିଶୁ ବଢ଼ିପାରେ ନାହିଁ । ଏହାକୁ 'ଇଣ୍ଟ୍ରା ୟୁଟେରାଇନ୍ ଗ୍ରୋଥ୍ ରିଟ୍ରାର୍ଡେସନ' ବୋଲି କୁହାଯାଏ । ବେଳେବେଳେ ମା' ଗର୍ଭରେ ମଧ୍ୟ ଶିଶୁର ମୃତ୍ୟୁ ଘଟିଥାଏ । ପ୍ରସବ ପରେ ମଧ୍ୟ ଶିଶୁ ପାଇଁ ଅନେକ ଅସୁବିଧା ହୋଇଥାଏ । ଶିଶୁ ଭଲ

ଭାବରେ ନିଃଶ୍ୱାସ ନେଇପାରେ ନାହିଁ, କାନ୍ଦି ପାରେ ନାହିଁ, ଖାଇପାରେ ନାହିଁ ଏବଂ ପ୍ରସବର ପ୍ରଥମ ୭ ଦିନ ମଧ୍ୟରେ ଶିଶୁର ମୃତ୍ୟୁ ଘଟିଥାଏ । ଏହାପରେ ମଧ୍ୟ ଶିଶୁଟିର ଶାରୀରିକ ଓ ମାନସିକ ବିକାଶ ଭଲଭାବରେ ହୋଇପାରେ ନାହିଁ । ଶିଶୁଟି କ୍ରମେ କ୍ରମେ ରୁଗ୍‌ଣ ହୋଇଯାଏ ଏବଂ ବଢ଼ିପାରେ ନାହିଁ ।

ଧୂମପାନ କରୁଥିବା ମା' ମଧ୍ୟ ପ୍ରସବ ପରେ ପରେ ବେଶୀ ଅସୁସ୍ଥ ହୋଇ ପଡ଼ନ୍ତି ଏବଂ ନିଜେ ରୁଗ୍‌ଣ ହୋଇଥିବାରୁ ଶିଶୁକୁ ସ୍ତନ୍ୟପାନ କରାଇପାରନ୍ତି ନାହିଁ । ଏ ତ' ଗଲା ଗର୍ଭକାଳୀନ, ପ୍ରସବ କାଳୀନ ଏବଂ ପ୍ରସବ ପରବର୍ତ୍ତୀ ଜଟିଳତା କଥା । ଯେଉଁ ମହିଳାମାନେ ଧୂମପାନ କରିଥାନ୍ତି, ତାଙ୍କର ମାସିକ ଋତୁସ୍ରାବର ବିରତି (ମେନୋପଜ୍) ଖୁବ୍ ଶୀଘ୍ର ହୋଇଥାଏ । ଫଳରେ ସେମାନେ ମେନୋପଜ୍ ପରବର୍ତ୍ତୀ ରୋଗର ଶିକାର ହୋଇଥାନ୍ତି ଏବଂ ରୁଗ୍‌ଣ ହୋଇଥାନ୍ତି । ଏହାଛଡ଼ା ପୁରୁଷମାନଙ୍କ ଭଳି ହୃଦ୍‌ରୋଗ ଓ ଫୁସ୍‌ଫୁସ୍‌ଜନିତ ରୋଗ ମଧ୍ୟ ବେଶୀ ଭୋଗିଥାନ୍ତି । ସେମାନଙ୍କର ରୋଗ ପ୍ରତିରୋଧକାରୀ ଶକ୍ତି କମିଯାଇଥାଏ । ତେଣୁ ଶେଷରେ ଏତିକି ସମସ୍ତଙ୍କର ଜାଣି ରଖିବା ଉଚିତ ଯେ ତମାଖୁ ସେବନ ବା ଧୂମପାନ, ତାହା ପ୍ରତ୍ୟକ୍ଷ ଅଥବା ପରୋକ୍ଷରେ ହେଉ, ନିଶ୍ଚିତ ଭାବରେ ସ୍ୱାସ୍ଥ୍ୟ ପାଇଁ ବିଶେଷ ଭାବରେ ମହିଳାମାନଙ୍କର ପ୍ରଜନନଜନିତ ସ୍ୱାସ୍ଥ୍ୟ ପାଇଁ କ୍ଷତିକାରକ । ତେଣୁ ସମସ୍ତେ ଏଥିରୁ ନିବୃତ୍ତ ରହିବା ଉଚିତ ।

(ପି.ଆଇ.ବି.)

---



ନବୀନ ନିବାସଠାରେ ସଶସ୍ତ୍ର ବାହିନୀ ପତାକା ପାଳନ ଦିବସ ଅବସରରେ ଜଣେ ସମରଶିକ୍ଷାର୍ଥୀ ଛାତ୍ରୀ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ପତାକା ଲଗାଇ ଦେଉଛନ୍ତି । ୭.୧୨.୨୦୦୪




# ସମ୍ବାଦ ପରିକ୍ରମା



## ଓଡ଼ିଶା ରାଜ୍ୟ ଭାରତ ସ୍କାଉଟ୍ସ ଓ ଗାଇଡ୍ସର ପୃଷ୍ଠପୋଷକ ଭାବେ ରାଜ୍ୟପାଳଙ୍କ ଶପଥ ଗ୍ରହଣ

### ସ୍କାଉଟ୍ସ ଓ ଗାଇଡ୍ସ ଆନ୍ଦୋଳନକୁ ଗ୍ରାମାଞ୍ଚଳରେ ବ୍ୟାପକ କରିବା ଉପରେ ରାଜ୍ୟପାଳଙ୍କ ଗୁରୁତ୍ୱାରୋପ

ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଓଡ଼ିଶା ରାଜ୍ୟ ଭାରତ ସ୍କାଉଟ୍ସ ଓ ଗାଇଡ୍ସର ପୃଷ୍ଠପୋଷକ (ପାଟ୍ରନ) ଓ ରାଜ୍ୟପାଳଙ୍କ ପତ୍ନୀ ଶ୍ରୀମତୀ ନର୍ମଦା ଠାକୁର ରାଜ୍ୟର ମୁଖ୍ୟ ଗାଇଡ୍ ରୂପେ ଶପଥ ଗ୍ରହଣ କରିଛନ୍ତି । ଗତ ଡିସେମ୍ବର ୧୩ ତାରିଖରେ ରାଜଭବନର ଅଭିଷେକ ହଲ୍‌ଠାରେ ଆୟୋଜିତ ଏକ ଉତ୍ସବରେ ରାଜ୍ୟ ସ୍କାଉଟ୍ସ ଓ ଗାଇଡ୍ସର ମୁଖ୍ୟ କମିଶନର ଶ୍ରୀ କାଳି ପ୍ରସାଦ ମିଶ୍ର ଶ୍ରୀ ଠାକୁର ଓ ଶ୍ରୀମତୀ ଠାକୁରଙ୍କୁ ଶପଥପାଠ କରାଇଥିଲେ ।

ଏହି ଉତ୍ସବରେ ଉଦ୍‌ବୋଧନ ଦେଇ ରାଜ୍ୟପାଳ ତଥା ନିକଟରେ ପୁନର୍ବାର ଭାରତ ସ୍କାଉଟ୍ସ ଓ ଗାଇଡ୍ସର ଜାତୀୟ ସଭାପତି ଭାବେ ନିର୍ବାଚିତ ଶ୍ରୀ ଠାକୁର ରାଜ୍ୟରେ ଯେଉଁଠାରେ ଶତକଡ଼ା ୪୭.୨ ଭାଗ ଜନସାଧାରଣ ଦାରିଦ୍ର୍ୟର ସୀମାରେଖା ତଳେ ବାସ କରନ୍ତି, ସେଠାରେ ସ୍କାଉଟ୍ସ ଓ ଗାଇଡ୍ସ ଆନ୍ଦୋଳନକୁ ଗ୍ରାମାଞ୍ଚଳରେ ବ୍ୟାପକ କରାଯିବା ସହିତ ଦରିଦ୍ର ଅବହେଳିତ ଜନସାଧାରଣଙ୍କ ନିକଟରେ ଉତ୍ତମ ସେବା ପହଞ୍ଚାଇବାର ଆବଶ୍ୟକତା ରହିଛି ବୋଲି ମତବ୍ୟକ୍ତ କରିଥିଲେ । ଏତଦ୍‌ବ୍ୟତୀତ ସମାଜର ଦୁର୍ବଳ ଶ୍ରେଣୀ ତଥା ଆଦିବାସୀ ହରିଜନଙ୍କ ମଧ୍ୟରେ ଏହି ଆନ୍ଦୋଳନ ମାଧ୍ୟମରେ ନେତୃତ୍ୱର ଭାବ ସୃଷ୍ଟି କରାଯିବା ଉପରେ ରାଜ୍ୟପାଳ ଗୁରୁତ୍ୱାରୋପ କରିଥିଲେ । ୧୯୪୨ ମସିହାରୁ ଭାରତ ସ୍କାଉଟ୍ସ ଓ ଗାଇଡ୍ସ ଆନ୍ଦୋଳନ ସହିତ ସଂଶ୍ଳିଷ୍ଟ ଥିବା ରାଜ୍ୟପାଳ ଶ୍ରୀ ଠାକୁର ଉତ୍ତମ ପ୍ରଶିକ୍ଷଣ ଦ୍ୱାରା ଏହି ଆନ୍ଦୋଳନ ପ୍ରତ୍ୟେକଙ୍କୁ ସୁନାଗରିକ ଗଢ଼ି ତୋଳିଥାଏ, ଯାହାକି ସେମାନଙ୍କ ନିଜସ୍ୱ କ୍ଷେତ୍ରରେ ଉତ୍କର୍ଷତା ହାସଲ କରିବାରେ ଯଥେଷ୍ଟ ସହାୟକ ହୋଇଥାଏ ବୋଲି ପ୍ରକାଶ କରିବା ସଂଗେସଂଗେ ସମସ୍ତଙ୍କ ପ୍ରତ୍ୟକ୍ଷ ସହଯୋଗ ଓ ସମର୍ଥନ ଦ୍ୱାରା ରାଜ୍ୟକୁ ସ୍କାଉଟ୍ସ ଓ ଗାଇଡ୍ସ କ୍ଷେତ୍ରରେ ଏକ ଅଗ୍ରଣୀ ରାଜ୍ୟ ଭାବେ ଗଢ଼ି ତୋଳିବାକୁ ଆହ୍ୱାନ ଦେଇଥିଲେ ।

ଓଡ଼ିଶା ରାଜ୍ୟ ଭାରତ ସ୍କାଉଟ୍ସ ଓ ଗାଇଡ୍ସର ସଭାପତି ଡକ୍ଟର ବ୍ରଜଭାଇ ଏହି ଉତ୍ସବରେ ଉଦ୍‌ବୋଧନ ଦେଇ ଓଡ଼ିଶା ରାଜ୍ୟ ରାଜ୍ୟପାଳ ଶ୍ରୀ ଠାକୁରଙ୍କ ପୃଷ୍ଠପୋଷକତାରେ ଅଧିକ ସଫଳତା ହାସଲ କରିପାରିବ ବୋଲି କହିଥିଲେ । ପ୍ରାରମ୍ଭରେ ରାଜ୍ୟ ମୁଖ୍ୟ କମିଶନର ଶ୍ରୀ କାଳି ପ୍ରସାଦ ମିଶ୍ର ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ । ପରେ ପ୍ରାର୍ଥନା ଗାନ ହେବା ପରେ ସ୍କାଉଟ୍ସ ଓ ଗାଇଡ୍ସର ପତାକା ଉତ୍ତୋଳନ କରାଯାଇଥିଲା । ଉପସ୍ଥିତ ସମସ୍ତ କର୍ମକର୍ତ୍ତା ରାଜ୍ୟପାଳ ଓ ରାଜ୍ୟପାଳଙ୍କ ପତ୍ନୀଙ୍କୁ ଏହି ଅବସରରେ ସମ୍ବର୍ଦ୍ଧିତ କରିଥିଲେ । ଏହି ଉତ୍ସବରେ ରାଜ୍ୟ ଶାଖା ଉପସଭାପତି ରାଜସ୍ୱ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ, ବିଧାୟକ ଶ୍ରୀ ଚିରଂଜିବ ବିଶ୍ୱାଳ, ବିଧାୟିକା ଶ୍ରୀମତୀ ସଂଚିତା ମହାନ୍ତି, ସମବାୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ସୁରମା ପାଢ଼ୀ, କଟକ ମେୟର ସୁଶ୍ରୀ ନିବେଦିତା ପ୍ରଧାନ, ପ୍ରାକ୍ତନ ସଭାପତି ଶ୍ରୀ ଅରବିନ୍ଦ ଢାଲି, ପୂର୍ବତନ ମନ୍ତ୍ରୀ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି, ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଓ ସ୍କାଉଟ୍ସ ଓ ଗାଇଡ୍ସ ଯୋଗ ଦେଇଥିଲେ ।

# ଅଷ୍ଟମ ଓଡ଼ିଶା ବିଜ୍ଞାନ କଂଗ୍ରେସ ଉଦ୍‌ଘାଟିତ
# ସାଧାରଣ ଜନତାଙ୍କ ଉପରେ ପ୍ରତ୍ୟକ୍ଷ ପ୍ରଭାବ ଅନୁଭୂତ ହେଉଥିବା କ୍ଷେତ୍ରରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି - ରାଜ୍ୟପାଳ

ଜୀବନର ପ୍ରତ୍ୟେକ କ୍ଷେତ୍ରରେ ବିଜ୍ଞାନର ପ୍ରଭାବ ରହିଛି ଯାହାକି ଜୀବନକୁ ସରଳ ସୁନ୍ଦର କରିବାରେ ଯଥେଷ୍ଟ ସାହାଯ୍ୟ କରିଥାଏ । ସାଧାରଣ ଜନତାଙ୍କ ଜୀବନ ଧାରାରେ ପରିବର୍ତ୍ତନ ଆଣିବା ପାଇଁ ସେମାନଙ୍କ ଉପରେ ପ୍ରତ୍ୟକ୍ଷ ତଥା ତତ୍‌କ୍ଷଣାତ୍ ପ୍ରଭାବ ଅନୁଭୂତ ହେଉଥିବା କ୍ଷେତ୍ରଗୁଡ଼ିକରେ ବୈଜ୍ଞାନିକମାନେ ଅଧିକରୁ ଅଧିକ ଗବେଷଣା କରିବା ଉପରେ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଗୁରୁତ୍ୱାରୋପ କରିଛନ୍ତି ।

ଡିସେମ୍ବର ୧୧ ତାରିଖରେ ସ୍ଥାନୀୟ ରିଜିଓନାଲ ପ୍ଲାଣ୍ଟ ରିସୋର୍ସ ସେଣ୍ଟର ପରିସରରେ ଭାରତୀୟ ବିଜ୍ଞାନ କଂଗ୍ରେସ ସଂଘ ଭୁବନେଶ୍ୱର ଶାଖା, ଓଡ଼ିଶା ପରିବେଶ ସମାଜ ଓ ରିଜିଓନାଲ ପ୍ଲାଣ୍ଟ ରିସୋର୍ସ ସେଣ୍ଟର ପକ୍ଷରୁ ଆୟୋଜିତ ଅଷ୍ଟମ ଓଡ଼ିଶା ବିଜ୍ଞାନ କଂଗ୍ରେସକୁ ପ୍ରଦୀପ ପ୍ରଜ୍ୱଳନ ସହ ଉଦ୍‌ଘାଟନ କରି ରାଜ୍ୟପାଳ ଶ୍ରୀ ଠାକୁର ବର୍ତ୍ତମାନର ଜ୍ଞାନଭିତ୍ତିକ ସମାଜରେ ଅଗ୍ରଣୀ ଭାବେ ତିଷ୍ଠି ରହିବା ପାଇଁ ବୈଜ୍ଞାନିକ, ଗବେଷକ, ଛାତ୍ରଛାତ୍ରୀ ତଥା ପ୍ରତ୍ୟେକ ସର୍ବଦା ଅଧିକରୁ ଅଧିକ ଜ୍ଞାନ ଆହରଣ କରିବା ପାଇଁ ପ୍ରୟାସ କରିବା ସଂଗେ ସଂଗେ ରାଷ୍ଟ୍ରକୁ ୨୦୨୦ ମସିହା ସୁଦ୍ଧା ଏକ ବିକଶିତ ରାଷ୍ଟ୍ର ଗଠନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ କହିଥିଲେ । ଏକ ଦରିଦ୍ର ରାଜ୍ୟଭାବେ ପରିଚିତ ଓଡ଼ିଶା ରାଜ୍ୟ ଯେଉଁଠାରେ ଶତକଡ଼ା ୪୭.୩ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ବାସ କରନ୍ତି, ସେଠାରେ ପ୍ରଗତି ଓ ସମୃଦ୍ଧି ପାଇଁ ଶିକ୍ଷା ଓ କୃଷି କ୍ଷେତ୍ରରେ ଉନ୍ନତି ଯଥେଷ୍ଟ ଆବଶ୍ୟକ ବୋଲି କହିବା ସଂଗେସଂଗେ ପରିବେଶର କୌଣସି କ୍ଷତି ନ ଘଟାଇ ରାଜ୍ୟ ତଥା ଜନସାଧାରଣଙ୍କର ଉନ୍ନତି ପାଇଁ ବିକାଶ ପ୍ରକ୍ରିୟା ଅନୁସରଣ କରାଯିବା ଉପରେ ରାଜ୍ୟପାଳ ଗୁରୁତ୍ୱାରୋପ କରିଥିଲେ । ଶିଶୁ ଓ ମା'ମାନଙ୍କ ପାଇଁ ଉନ୍ନତ ସ୍ୱାସ୍ଥ୍ୟସେବା ଉଦ୍ଦେଶ୍ୟରେ ନୂତନ ବୈଷୟିକ ଜ୍ଞାନକୌଶଳର ପ୍ରୟୋଗ, ଅର୍ଥନୈତିକ ସମୃଦ୍ଧି ପାଇଁ ଜୈବ ପ୍ରଯୁକ୍ତିବିଦ୍ୟାର ସୁବିନିଯୋଗ ତଥା ପାରମ୍ପରିକ ଔଷଧ ପ୍ରଣାଳୀକୁ ଉଚିତ ବ୍ୟବହାର ଦ୍ୱାରା ଅଧିକ ସମୃଦ୍ଧି ହାସଲ ଆଦି ପରି ଆଗାମୀ ଦଶକର ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରଗୁଡ଼ିକ ପ୍ରତି ବୈଜ୍ଞାନିକମାନେ ଯଥେଷ୍ଟ ଧ୍ୟାନ ଦେବାକୁ ରାଜ୍ୟପାଳ ପରାମର୍ଶ ଦେଇଥିଲେ । ରାଜ୍ୟରେ ବିଜ୍ଞାନ, ଶିକ୍ଷା ତଥା ଗବେଷଣା କ୍ଷେତ୍ରରେ ଉନ୍ନତ ଭିତ୍ତିଭୂମି ପ୍ରତିଷ୍ଠା କରି ଆଗାମୀ ଦିନର ବୈଜ୍ଞାନିକ, ଗବେଷକମାନଙ୍କୁ ଗଢ଼ି ତୋଳିବାକୁ ରାଜ୍ୟପାଳ ଏ କ୍ଷେତ୍ରରେ କାର୍ଯ୍ୟ କରୁଥିବା ପ୍ରତ୍ୟେକ ସଂଗଠନ ଉଦ୍ୟମ କରିବାକୁ କହିଥିଲେ ।

ଦୁଇ ଦିନିଆ ବିଜ୍ଞାନ କଂଗ୍ରେସର ଉଦ୍‌ଘାଟନୀ ଅଧିବେଶନରେ ସମ୍ମାନିତ ଅତିଥି ଭାବେ ଯୋଗ ଦେଇ ରାଜ୍ୟ ଶକ୍ତି, ସୂଚନା ପ୍ରଯୁକ୍ତି ତଥା ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଓ ବିଜ୍ଞାନ ଓ ବୈଷୟିକ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ରବିନାରାୟଣ ନନ୍ଦ ରାଜ୍ୟରେ ବିଜ୍ଞାନ ଓ ବୈଷୟିକ କ୍ଷେତ୍ରରେ ଉନ୍ନତି ପାଇଁ ରାଜ୍ୟ ସରକାରଙ୍କ କାର୍ଯ୍ୟକ୍ରମ ଓ ପ୍ରତିଶ୍ରୁତିବଦ୍ଧତାକୁ ଦୋହରାଇ ଥିଲେ । ରିଜିଓନାଲ ମେଡ଼ିକାଲ ରିସର୍ଚ୍ଚ ସେଣ୍ଟରର ନିର୍ଦ୍ଦେଶକ ଡାକ୍ତର ଏସ୍.କେ. କର, ରିଜିଓନାଲ ପ୍ଲାଣ୍ଟ ରିସୋର୍ସ ସେଣ୍ଟରର ନିର୍ଦ୍ଦେଶକ ପ୍ରଫେସର ଟି. ଥାଙ୍ଗରାଜ, ସଂଯୋଜକ ଡକ୍ଟର ଏସ୍.ଏନ୍. ପାତ୍ର ଓ ଡକ୍ଟର ଜେ.କେ. ପାଣିଗ୍ରାହୀ ଉଦ୍‌ବୋଧନ ଦେଇଥିଲେ । ଓଡ଼ିଶା ପରିବେଶ ସମାଜ ସଭାପତି ଶ୍ରୀ କେ. ବିଶ୍ୱନାଥନ ସଭାପତିତ୍ୱ କରିଥିଲେ ।

# ଜାତୀୟ ସେବା ସଂସ୍ଥାର ୨୦୦୨-୦୩ ବର୍ଷ ପାଇଁ ରାଜ୍ୟସ୍ତରୀୟ ପୁରସ୍କାର ପ୍ରଦାନ ଉତ୍ସବ

ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ଜାତୀୟ ସେବା ସଂସ୍ଥା (ଏନ୍.ଏସ୍.ଏସ୍.) କାର୍ଯ୍ୟ କରୁଛି । ଏହି ସଂସ୍ଥା ଶ୍ରମଦାନ ଜରିଆରେ ଗ୍ରାମାଂଚଳମାନଙ୍କରେ ରାସ୍ତାଘାଟର ଉନ୍ନତି, ପରିମଳ ବ୍ୟବସ୍ଥା, ସ୍ୱାସ୍ଥ୍ୟ ସଚେତନତା ତଥା ପ୍ରାକୃତିକ ବିପର୍ଯ୍ୟୟ ସମୟରେ ତତ୍କାଳ ସେବା ଯୋଗାଇ ଦେଇଥାନ୍ତି । ସେମାନଙ୍କର ଏହିସବୁ କାର୍ଯ୍ୟକୁ ମୂଲ୍ୟାୟନ କରାଯାଇ ସର୍ବୋତ୍କୃଷ୍ଟ ସଂସ୍ଥାମାନଙ୍କୁ ରାଜ୍ୟସ୍ତରରେ ପୁରସ୍କୃତ କରାଯିବାର ବ୍ୟବସ୍ଥା ରହିଛି । ସେହିପରି ଗତ ୨୦୦୨-୦୩ ବର୍ଷ ନିମନ୍ତେ ଶ୍ରେଷ୍ଠ ବିବେଚିତ ହୋଇଥିବା ଜାତୀୟ ସେବା ସଂସ୍ଥାମାନଙ୍କୁ ଆସନ୍ତା ୨୦୦୫ ମସିହା ଜାନୁଆରୀ ୧୨ ତାରିଖ ଅପରାହ୍ନ ୪ ଘଟିକା ସମୟରେ ଭୁବନେଶ୍ୱରସ୍ଥ ଜୟଦେବ ଭବନଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ ଉତ୍ସବରେ ପୁରସ୍କୃତ କରାଯିବ । ଏହି ଉତ୍ସବରେ ଉଚ୍ଚଶିକ୍ଷା ତଥା ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ମନ୍ତ୍ରୀ ଶ୍ରୀ ସମୀର ଦେ ମୁଖ୍ୟ ଅତିଥି ଭାବେ ଯୋଗ ଦେବେ ବୋଲି ଉଚ୍ଚଶିକ୍ଷା ବିଭାଗ ସୂତ୍ରରୁ ପ୍ରକାଶ ।

# ଚଳିତ ରବିଋତୁରେ ୨୮୦ ହେକ୍ଟର ଜମିରେ ଧାନଚାଷ କରାଯିବ

୨୦୦୪ ବର୍ଷକୁ ଆନ୍ତର୍ଜାତିକ ଧାନବର୍ଷ ରୂପେ ପାଳନ କରାଯାଉଥିବା ଦୃଷ୍ଟିରୁ ଆମ ରାଜ୍ୟରେ ଧାନ ଉତ୍ପାଦନ ବିଗତ ବର୍ଷଠାରୁ ଅଧିକ କରାଯିବା ପାଇଁ କୃଷି ବିଭାଗ ତରଫରୁ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ସେଥିପାଇଁ ଚଳିତ ରବିଋତୁରେ ଧାନ ଉତ୍ପାଦନ ହାର ବଢ଼ାଇବା

ପାଇଁ ରାଜ୍ୟ ସରକାର ୨୮୦ ହେକ୍ଟର ଜମିରେ ଧାନ ଚାଷ କରିବା ପାଇଁ ସ୍ଥିର କରିଛନ୍ତି । ୧୯୯୯-୨୦୦୦ ରବିଋତୁରେ ରାଜ୍ୟର ଉତ୍ପାଦକତା ହାର ହେକ୍ଟର ପ୍ରତି ୨୩୮୯ କିଲୋଗ୍ରାମ୍ ହୋଇଥିଲାବେଳେ ଚଳିତ ରବିଋତୁରେ ଧାନ ଉତ୍ପାଦନ ୬୭୫ ଲକ୍ଷ ଟନ୍ ଏବଂ ଉତ୍ପାଦକତା ହାର ହେକ୍ଟର ପ୍ରତି ୨୪୧୧ କିଲୋଗ୍ରାମକୁ ବୃଦ୍ଧି କରିବା ପାଇଁ କୃଷି ବିଭାଗ ତରଫରୁ ପଦକ୍ଷେପ ନିଆଯାଉଛି । ଧାନ ଉତ୍ପାଦନକୁ ବୃଦ୍ଧି କରିବା ପାଇଁ ଅଧିକ ଅମଳକ୍ଷମ ବିହନ, ସାର, କୀଟନାଶକ ଔଷଧ, କୃଷି ଯନ୍ତ୍ରପାତି ପ୍ରଭୃତି ଚାଷୀମାନେ ଯେପରି ଠିକ୍ ସମୟରେ ପାଇପାରିବେ, ସେଥିପାଇଁ ପ୍ରତି ବ୍ଲକ୍ ଓ ସ୍ୱୀକୃତିପ୍ରାପ୍ତ ବିକ୍ରେତାମାନଙ୍କୁ କୃଷି ବିଭାଗ ପକ୍ଷରୁ ଅବଗତ କରି ଦିଆଯାଇଛି । ଏହାବ୍ୟତୀତ କୃଷି କ୍ଷେତ୍ର ପରିଚାଳନା ପାଇଁ ଥିବା କର୍ମ ଯୋଜନା ଅନ୍ତର୍ଗତ ଧାନ ଉନ୍ନୟନ ଯୋଜନାରେ କୃଷକ କ୍ଷେତ୍ର ବିଦ୍ୟାଳୟ, ସେଚାଂଚଳରେ ସମନ୍ୱିତ ଫସଲ ପରିଚାଳନା ତାଲିମ, କୃଷକ ବିନିମୟ କାର୍ଯ୍ୟକ୍ରମ ଓ ପ୍ରାମାଣିକ ବିହନ ଉତ୍ପାଦନ କରିବା ପାଇଁ ପ୍ରୋତ୍ସାହନ ବ୍ୟବସ୍ଥା କରାଯାଇଛି ବୋଲି କୃଷି ବିଭାଗ ପକ୍ଷରୁ ପ୍ରକାଶ ।

## ଏଡ୍ସ ସମ୍ବନ୍ଧରେ ସଚେତନତାର ବ୍ୟାପକ ପ୍ରସାର ହିଁ ଏହା ବିରୁଦ୍ଧରେ ଯଥାର୍ଥ ସଂଗ୍ରାମ - ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ

ଏଡ୍ସ ସମ୍ବନ୍ଧରେ ସଚେତନତାର ବ୍ୟାପକ ପ୍ରସାର ହିଁ ଏହା ବିରୁଦ୍ଧରେ ଯଥାର୍ଥ ସଂଗ୍ରାମ ବୋଲି ଆଇନ, ଶିକ୍ଷା ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ମତବ୍ୟକ୍ତ କରିଛନ୍ତି ।

ଗତ ଡିସେମ୍ବର ୬ ତାରିଖ ପୂର୍ବାହ୍ନରେ ସ୍ଥାନୀୟ ଇଡ୍କଲ୍ ଅଡିଟୋରିୟମ୍‌ରେ କେନ୍ଦ୍ର ସରକାରଙ୍କ ଯୁବବ୍ୟାପାର ଓ କ୍ରୀଡ଼ା ବିଭାଗର ନେହେରୁ ଯୁବ କେନ୍ଦ୍ର ସଂଗଠନ ଓ କେନ୍ଦ୍ର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଅଧୀନସ୍ଥ ନାକୋଇ ଯୁଗ୍ମ ଆନୁକୂଲ୍ୟରେ ଆନ୍ତର୍ଜାତିକ ସ୍ୱେଚ୍ଛାସେବୀ ଦିବସ ଓ ବିଶ୍ୱ ଏଡ୍ସ ସପ୍ତାହ ପାଳନ ଅବସରରେ ଆୟୋଜିତ ମହିଳା, ବାଳିକା ଓ ଏଚ୍.ଆଇ.ଭି. ଏଡ୍ସ ଶୀର୍ଷକ କର୍ମଶାଳାକୁ ଉଦ୍‌ଘାଟନ କରି ଆଇନ ମନ୍ତ୍ରୀ ଶ୍ରୀ ହରିଚନ୍ଦନ କହିଲେ ଯେ ଏଡ୍ସ ଏକ ଦୂରାରୋଗ୍ୟ ବ୍ୟାଧି ରୂପେ ସାରା ବିଶ୍ୱରେ ଆଜି ଆତଙ୍କ ସୃଷ୍ଟି କରିଛି । ଇନ୍ଦ୍ରିୟ ଲାଳସାରେ ପରିପୂର୍ଣ୍ଣ ପଂକିଳ ସମାଜରେ ଏହା ସର୍ବାଧିକ ଭୟଙ୍କର ରୋଗ । ଏହାର ଫଳପ୍ରଦ ଚିକିତ୍ସା ଓ ଏଥିରୁ ଆରୋଗ୍ୟ ଲାଭ କରିବା ଏଯାବତ୍ ସେତେ ସଫଳ ହୋଇପାରି ନାହିଁ । ସମଗ୍ର ପୃଥିବୀର ଡାକ୍ତର ଓ ବୈଜ୍ଞାନିକମାନଙ୍କ ପାଇଁ ଏହା ଏକ ଆହ୍ୱାନ ରୂପେ ଦଣ୍ଡାୟମାନ । ସମାଜକୁ ରୁଗ୍‌ଣ, କ୍ଷତବିକ୍ଷତ କରିବା, ବହୁ ଶିଶୁଙ୍କୁ ଅନାଥ କରି ଦେବାରେ ଏଡ୍ସର ଭୂମିକାକୁ କେହି ଏଡାଇ ଦେଇ ପାରିବେ ନାହିଁ । ମହିଳାମାନେ ଏଥିରେ ଅଧିକ ସଂଖ୍ୟାରେ ଆକ୍ରାନ୍ତ ହେଉଛନ୍ତି । ବିଶେଷକରି ବସ୍ତି ଅଂଚଳର ମହିଳାମାନେ ଦାରିଦ୍ର୍ୟର କଷାଘାତରେ ନିପୀଡ଼ିତ ହୋଇ ଯୌନ ଲାଳସାର ଶୀକାର ହେଉଛନ୍ତି । ଅସୁରକ୍ଷିତ ଯୌନ ସଂପର୍କ, ସଂକ୍ରମିତ ଛୁଞ୍ଚି, ଯନ୍ତ୍ରପାତି, ରକ୍ତ ଓ ସଂକ୍ରମିତ ମାଆଠାରୁ ଗର୍ଭସ୍ଥ ସନ୍ତାନ, ସଂକ୍ରମିତ ସ୍ୱାମୀ ନିକଟରୁ ସ୍ତ୍ରୀ ପାଖକୁ ବ୍ୟାପୁଥିବା ଏହି ଭୟାବହ ରୋଗ ସମ୍ବନ୍ଧରେ ସଚେତନତାର ଯଥେଷ୍ଟ ପ୍ରସାର ନିତାନ୍ତ ଜରୁରୀ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଆଗଭର ହୋଇ ଏହି ସମ୍ବେଦନଶୀଳ ମାନବିକ ସମସ୍ୟା ପ୍ରତି ଦୃଷ୍ଟି ଦେଇ ଏଡ୍ସ ସମ୍ବନ୍ଧରେ ବ୍ୟାପକ ଭାବେ ସତର୍କ କରାଇଲେ ସମାଜ ଓ ଦେଶର ଅଶେଷ ମଂଗଳ ହେବ ଓ ଭାରତରେ କ୍ରମବର୍ଦ୍ଧିଷ୍ଣୁ ଏଡ୍ସ ରୋଗୀଙ୍କ ସଂଖ୍ୟା କମିବାକୁ ଲାଗିବ ବୋଲି ମନ୍ତ୍ରୀ ଶ୍ରୀ ହରିଚନ୍ଦନ ମତ ପ୍ରକାଶ କରିଥିଲେ ।

ୟୁନିସେଫ୍‌ର ରାଜ୍ୟ ପ୍ରତିନିଧି ଟମ୍ ଓଲ୍‌ସେନ୍ ଏହି କର୍ମଶାଳାରେ ସମ୍ମାନିତ ଅତିଥି ରୂପେ ଯୋଗ ଦେଇ କହିଲେ ଯେ, ସାରା ବିଶ୍ୱରେ ଆଜି ୩୮ ନିୟୁତ ଏଡ୍ସ ରୋଗୀ ଥିବାବେଳେ ଭାରତରେ କେବଳ ୩ ନିୟୁତ ଏଡ୍ସ ରୋଗୀ ଅଛନ୍ତି । ଆଫ୍ରିକା ସର୍ବାଧିକ ଏଡ୍ସ ଆକ୍ରାନ୍ତ ଓ ତା'ତଳକୁ ଭାରତର ସ୍ଥାନ ରହିଛି । ତେଣୁ ଏଡ୍ସ ସଚେତନତା କାର୍ଯ୍ୟକ୍ରମରେ ନଗରଠାରୁ ସହର ଓ ଗ୍ରାମ ପର୍ଯ୍ୟନ୍ତ, ସରକାରଙ୍କଠାରୁ ସ୍ୱେଚ୍ଛାସେବୀ ଓ ବ୍ୟକ୍ତିବିଶେଷ ପର୍ଯ୍ୟନ୍ତ ସମସ୍ତେ ସମ୍ମିଳିତ ହୋଇ ଉଦ୍ୟମ କରିବା ଉଚିତ ବୋଲି ଟମ୍ ଓଲ୍‌ସେନ୍ ମତବ୍ୟକ୍ତ କରିଥିଲେ ।

ନେହେରୁ ଯୁବ କେନ୍ଦ୍ର ସଂଗଠନ, ବ୍ରହ୍ମପୁରର ଆଂଚଳିକ କର୍ମକର୍ତ୍ତା ଶ୍ରୀ ନବୀନ କୁମାର ନାୟକ ସ୍ୱାଗତ ଭାଷଣ ଦେଇଥିଲେ ଓ ଖୋର୍ଦ୍ଧା ଜିଲ୍ଲା ଯୁବ ସଂଗଠନର କର୍ମକର୍ତ୍ତା ଶ୍ରୀ ପ୍ରବୀର କୁମାର ପ୍ରଧାନ ଧନ୍ୟବାଦ ଦେଇଥିଲେ ।

## ମହିଳା ଚାଲାଣ ବିରୋଧ କର୍ମଶାଳା

ମହିଳା ଓ ଶିଶୁ ବିକାଶ ବିଭାଗ ଏବଂ ଯାଜ୍ଞସେନୀର ମିଳିତ ଉଦ୍ୟମରେ 'ମହିଳା ଚାଲାଣ' ବିରୋଧରେ ଏକ କର୍ମଶାଳା ଜୟଦେବ ଭବନଠାରେ ଅନୁଷ୍ଠିତ ହୋଇଯାଇଛି ।

ଉକ୍ତ କର୍ମଶାଳାକୁ ଉଦ୍‌ଘାଟନ କରି ମହିଳା ଓ ଶିଶୁ ବିକାଶ ବିଭାଗ ନିର୍ଦ୍ଦେଶିକା ଶ୍ରୀମତୀ ଅପରାଜିତା ଷଡଙ୍ଗୀ କହିଲେ, ରାଜ୍ୟରେ ମହିଳା ଚାଲାଣ ବୃଦ୍ଧି ପାଇବାରେ ଲାଗିଛି । ଏହାକୁ ରୋକିବାକୁ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ପାଇଁ ମହିଳାମାନେ ସଚେତନ ହେବା ଦରକାର । ଯାଜ୍ଞସେନୀ ଅନୁଷ୍ଠାନ ଏହି କାର୍ଯ୍ୟକୁ ତତ୍ପରତାର ସହିତ କରୁଛି । ତେଣୁ ଏହିଭଳି କର୍ମଶାଳା ଗ୍ରାମାଞ୍ଚଳରେ କରି ମହିଳା, ଅବିବାହିତା ଝିଅ, ନିର୍ଯ୍ୟାତିତା ମହିଳା ଇତ୍ୟାଦିଙ୍କୁ ସିନେମା ତାରକା ହେବାର ନିଶା, ବିବାହର ପ୍ରଲୋଭନ ଏବଂ ବିଳାସପୂର୍ଣ୍ଣ ଜୀବନଯାପନର ଆକାଂକ୍ଷାରୁ ଦୂରେଇ ରହିବା ପାଇଁ ସଚେତନତା ଜାଗ୍ରତ କରାଇ ପାରିଲେ, ମହିଳା ଚାଲାଣକୁ ବହୁମାତ୍ରାରେ ରୋକାଯାଇ ପାରିବ । ମହିଳାମାନେ ସର୍ବଦା ପୋଲିସ୍ ଉପରେ ଭରଷା ନକରି ଏକତ୍ରିତ ହୋଇ ଏହାର ଦୃଢ଼ ମୁକାବିଲା କରିବାକୁ ଲକ୍ଷ୍ୟ ନେଇ ଆଗେଇ ଯିବା ଦରକାର । ଏହି ମହିଳା ଚାଲାଣକୁ ରୋକିବା ପାଇଁ ଖୁବ୍‌ଶୀଘ୍ର ଗଠିତ ହେବାକୁ ଯାଉଛି 'ଆକ୍‌ସନ୍ ପ୍ଲାନ୍' । ଏହି ଆକ୍‌ସନ୍ ପ୍ଲାନ୍ ଦ୍ୱାରା ମହିଳା ଚାଲାଣକୁ ରୋକିବାରେ ଜନସାଧାରଣଙ୍କ ସହଯୋଗ ନିହାତି  ଜରୁରୀ ।

ଚାଲାଣ ହୋଇଥିବା ମହିଳାମାନଙ୍କୁ ଉଦ୍ଧାର କରି ସେମାନଙ୍କର ଥଇଥାନ ଯେପରି ବିଭିନ୍ନ କର୍ମ ସଂସ୍ଥାନ ମାଧ୍ୟମରେ ଯାଜ୍ଞସେନୀ ଅନୁଷ୍ଠାନ କରିପାରୁଛି, ତାହା ଉପରେ ମଧ୍ୟ ଶ୍ରୀମତୀ ଷଡଙ୍ଗୀ ବିସ୍ତୃତ ଭାବେ ବ୍ୟାଖ୍ୟା କରିଥିଲେ ।

ଉକ୍ତ କର୍ମଶାଳାରେ ଯୋଗ ଦେଇ ରାଜ୍ୟ ମହିଳା କମିଶନ୍ ସଭ୍ୟା ଶ୍ରୀମତୀ ନମ୍ରତା ଚଢ଼ା କହିଲେ, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ଜନସାଧାରଣଙ୍କ ମିଳିତ ଉଦ୍ୟମରେ ମହିଳା ଚାଲାଣ ରୋକିବା ପାଇଁ ଉଦ୍ୟମ ଜାରି ରହିଛି ।

ଉକ୍ତ କର୍ମଶାଳାରେ ହାଇଦ୍ରାବାଦସ୍ଥିତ ପ୍ରଜ୍ୱାଲା ସଂସ୍ଥାରୁ ଆସିଥିବା ଡଃ ସୁନିତା କ୍ରିଷ୍ଣନ୍ ମହିଳା ଚାଲାଣ ଓ ତା'ର ପ୍ରତିକାର ଉପରେ ଚଳଚ୍ଚିତ୍ର ପ୍ରଦର୍ଶିତ କରିଥିଲେ ।

## ଅନ୍ତ୍ୟୋଦୟ ଅନ୍ନ ଯୋଜନା ମାଧ୍ୟମରେ ଡିସେମ୍ବର ମାସ ପାଇଁ ୩୦ଟି ଜିଲ୍ଲାକୁ ୧୭,୬୯୨.୯ ମେଟ୍ରିକ୍ ଟନ୍ ଚାଉଳ ଆବଣ୍ଟନ

ଅନ୍ତ୍ୟୋଦୟ ଅନ୍ନ ଯୋଜନା ମାଧ୍ୟମରେ ଆସନ୍ତା ଡିସେମ୍ବର ମାସ ପାଇଁ ରାଜ୍ୟ ସରକାର ୩୦ଟି ଜିଲ୍ଲାକୁ ସମୁଦାୟ ୧୭,୬୯୨.୯ ମେଟ୍ରିକ୍ ଟନ୍ ଚାଉଳ ଯୋଗାଇ ଦେଇଛନ୍ତି । ଏଥିରେ ରାଜ୍ୟର ସର୍ବମୋଟ ୫ ଲକ୍ଷ ୫ ହଜାର ୫୦୦ଟି ଅନ୍ତ୍ୟୋଦୟ ପରିବାର ଉପକୃତ ହୋଇପାରିବେ ବୋଲି ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ ସୂତ୍ରରୁ ପ୍ରକାଶ । ଏଠାରେ ସୂଚାଇ ଦିଆଯାଇ ପାରେ ଯେ ଏହି ଯୋଜନା ମାଧ୍ୟମରେ ସରକାର ପ୍ରତ୍ୟେକ ଅନ୍ତ୍ୟୋଦୟ ପରିବାରକୁ କିଲୋଗ୍ରାମ ପିଛା ୩ ଟଙ୍କା ଦରରେ ମାସକୁ ୩୫ କିଲୋଗ୍ରାମ ଚାଉଳ ଯୋଗାଇ ଦେଉଛନ୍ତି । ପ୍ରତ୍ୟେକ ଅନ୍ତ୍ୟୋଦୟ ପରିବାର ସେମାନଙ୍କ କାର୍ଡ଼ ଜରିଆରେ ସଂପୃକ୍ତ ଡିଲରଙ୍କଠାରୁ ଏହି ଚାଉଳ ପାଇପାରିବେ । ଆସନ୍ତା ଡିସେମ୍ବର ମାସ ପାଇଁ କେଉଁ ଜିଲ୍ଲାକୁ କେତେ ପରିମାଣର ଅନ୍ତ୍ୟୋଦୟ ଯୋଜନା ଚାଉଳ ଆବଣ୍ଟନ କରାଯାଇଛି, ତାହା ନିମ୍ନରେ ପ୍ରଦତ୍ତ ହେଲା -

ବାଲେଶ୍ୱର ଜିଲ୍ଲାର ୪୨,୯୪୭ଟି ପରିବାର ପାଇଁ ୧୫୦୩.୧ ମେଟ୍ରିକ୍ ଟନ୍, ମୟୂରଭଞ୍ଜ ଜିଲ୍ଲାର ୩୮,୪୧୭ଟି ପରିବାର ପାଇଁ ୧୩୪୪.୬ ମେଟ୍ରିକ୍ ଟନ୍, ଗଂଜାମ ଜିଲାର ୨୭,୬୦୫ଟି ପରିବାର ପାଇଁ ୯୬୬.୨ ମେଟ୍ରିକ୍ ଟନ୍, କୋରାପୁଟ ଜିଲ୍ଲାର ୨୭,୦୨୫ଟି ପରିବାର ପାଇଁ ୯୪୫.୮ ମେଟ୍ରିକ୍ ଟନ୍, ନବରଂଗପୁର ଜିଲ୍ଲାର ୨୫,୨୧୧ଟି ପରିବାର ପାଇଁ ୮୮୨.୪ ମେଟ୍ରିକ୍ ଟନ୍, ଭଦ୍ରକ ଜିଲ୍ଲାର ୨୩,୭୬୬ଟି ପରିବାର ପାଇଁ ୮୩୧.୮ ମେଟ୍ରିକ୍ ଟନ୍, ବରଗଡ଼ ଜିଲ୍ଲାର ୨୩,୪୦୦ଟି ପରିବାର ପାଇଁ ୮୧୯ ମେଟ୍ରିକ୍ ଟନ୍, କେନ୍ଦୁଝର ଜିଲ୍ଲାର ୨୩,୩୯୪ଟି ପରିବାର ପାର୍ଇ ୮୧୮.୮ ମେଟ୍ରିକ୍ ଟନ୍, କଳାହାଣ୍ଡି ଜିଲ୍ଲାର ୨୨,୬୫୩ଟି ପରିବାର ପାଇଁ ୭୯୨.୯ ମେଟ୍ରିକ୍ ଟନ୍, ବଲାଙ୍ଗୀର ଜିଲ୍ଲାର ୨୦,୦୫୭ଟି ପରିବାର ପାଇଁ ୭୦୨ ମେଟ୍ରିକ୍ ଟନ୍, ରାୟଗଡ଼ା ଜିଲ୍ଲାର ୧୮,୯୦୫ଟି ପରିବାର ପାଇଁ ୬୬୧.୭ ମେଟ୍ରିକ୍ ଟନ୍, ଯାଜପୁର ଜିଲ୍ଲାର ୧୮,୭୭୩ଟି ପରିବାର ପାଇଁ ୬୫୭.୧ ମେଟ୍ରିକ୍ ଟନ୍, କଟକ ଜିଲ୍ଲାର ୧୭,୬୫୯ଟି ପରିବାର ପାଇଁ ୬୧୮.୧ ମେଟ୍ରିକ୍ ଟନ୍, ପୁରୀ ଜିଲ୍ଲାର ୧୬,୦୨୩ଟି ପରିବାର ପାଇଁ ୫୬୦.୮ ମେଟ୍ରିକ୍ ଟନ୍, ଢେଙ୍କାନାଳ ଜିଲ୍ଲାର ୧୫,୬୩୪ଟି ପରିବାର ପାଇଁ ୫୪୭.୨ ମେଟ୍ରିକ୍ ଟନ୍, କେନ୍ଦ୍ରାପଡ଼ା ଜିଲ୍ଲା ୧୫,୩୧୩ଟି ପରିବାର ପାଇଁ ୫୩୬ ମେଟ୍ରିକ୍ ଟନ୍, ସୁନ୍ଦରଗଡ଼ ଜିଲ୍ଲାର ୧୪,୧୫୪ଟି ପରିବାର ପାଇଁ ୪୯୫.୪ ମେଟ୍ରିକ୍ ଟନ୍, ଖୋର୍ଦ୍ଧା ଜିଲ୍ଲାର ୧୩,୪୮୦ଟି ପରିବାର ପାଇଁ ୪୭୧.୮ ମେଟ୍ରିକ୍ ଟନ୍, ସୋନପୁର ଜିଲ୍ଲାର ୧୨,୮୧୬ଟି ପରିବାର ପାଇଁ ୪୪୮.୬ ମେଟ୍ରିକ୍ ଟନ୍, ସମ୍ବଲପୁର ଜିଲ୍ଲାର ୧୧,୨୧୮ଟି ପରିବାର ପାଇଁ ୩୯୨.୬ ମେଟ୍ରିକ୍ ଟନ୍, ନୟାଗଡ଼ ଜିଲ୍ଲାର ୧୧,୧୪୨ଟି ପରିବାର ପାଇଁ ୩୯୦ ମେଟ୍ରିକ୍ ଟନ୍, କନ୍ଧମାଳ ଜିଲ୍ଲାର ୧୦,୬୯୬ଟି ପରିବାର ପାଇଁ ୩୭୪.୪ ମେଟ୍ରିକ୍ ଟନ୍, ଜଗତସିଂହପୁର ଜିଲ୍ଲାର ୧୦,୨୬୦ଟି ପରିବାର

ପାଇଁ ୩୫୯.୧ ମେଟ୍ରିକ୍ ଟନ୍, ଅନୁଗୋଳ ଜିଲ୍ଲାର ୮୯୪୬ଟି ପରିବାର ପାଇଁ ୩୧୩.୧ ମେଟ୍ରିକ୍ ଟନ୍, ନୂଆପଡ଼ା ଜିଲ୍ଲାର ୮୯୨୨ଟି ପରିବାର ପାଇଁ ୩୧୨.୩ ମେଟ୍ରିକ୍ ଟନ୍, ମାଲକାନଗିରି ଜିଲ୍ଲାର ୭୪୭୫ଟି ପରିବାର ପାଇଁ ୨୫୮.୧ ମେଟ୍ରିକ୍ ଟନ୍, ଗଜପତି ଜିଲ୍ଲାର ୭୧୯୧ଟି ପରିବାର ପାଇଁ ୨୫୧.୭ ମେଟ୍ରିକ୍ ଟନ୍, ବୌଦ୍ଧ ଜିଲ୍ଲାର ୬୧୯୪ଟି ପରିବାର ପାଇଁ ୨୧୬.୮ ମେଟ୍ରିକ୍ ଟନ୍, ଦେବଗଡ଼ ଜିଲ୍ଲାର ୫୦୭୧ଟି ପରିବାର ପାଇଁ ୧୭୭.୫ ମେଟ୍ରିକ୍ ଟନ୍ ଏବଂ ଝାରସୁଗୁଡ଼ା ଜିଲ୍ଲାର ୧୨୫୩ଟି ପରିବାର ପାଇଁ ୪୩.୯ ମେଟ୍ରିକ୍ ଟନ୍ ଅନ୍ତ୍ୟୋଦୟ ଅନ୍ନ ଯୋଜନା ଚାଉଳ ଆବଣ୍ଟନ କରାଯାଇଛି ।

## କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ରଗୁଡ଼ିକର ସମସ୍ୟା ଆପୋଷ ଆଲୋଚନା ମାଧ୍ୟମରେ ସମାଧାନ କରାଯିବ - ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ ଶ୍ରୀ ନାୟକ

ରାଜ୍ୟରେ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ରମାନେ ସମ୍ମୁଖୀନ ହେଉଥିବା ବିଭିନ୍ନ ସମସ୍ୟାର ସମାଧାନ କରାଯିବା ସଂଗେସଂଗେ ଆପୋଷ ଆଲୋଚନା ମାଧ୍ୟମରେ ରାଜ୍ୟ ସାମ୍ବାଦିକ କଲ୍ୟାଣ ପାଣ୍ଠି ପୁନର୍ଗଠନ କ୍ଷେତ୍ରରେ ଥିବା ଅଚଳାବସ୍ଥାକୁ ଦୂର କରାଯିବ ବୋଲି ସୂଚନା ଓ ଲୋକ ସଂପର୍କ, କ୍ରୀଡ଼ା ଓ ଯୁବସେବା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ସୂଚନା ଦେଇଛନ୍ତି ।

ନଭେମ୍ବର ୨୦ ତାରିଖରେ ସଚିବାଳୟଠାରେ ଭାରତୀୟ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ର ଫେଡେରେସନର କେନ୍ଦ୍ରୀୟ ଉପସଭାପତି ଅମ୍ବିକା ପ୍ରସାଦ ଦାସଙ୍କ ନେତୃତ୍ୱରେ ଏକ ପ୍ରତିନିଧି ଦଳ ମନ୍ତ୍ରୀ ଶ୍ରୀ ନାୟକଙ୍କୁ ଭେଟି କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ରଗୁଡ଼ିକର ସମସ୍ୟା, ବିଜ୍ଞାପନ, ଅଧିସ୍ୱୀକୃତି ପ୍ରଦାନ, ସାମ୍ବାଦିକ କଲ୍ୟାଣ ପାଣ୍ଠିରୁ ସହାୟତା ପ୍ରଦାନ ଆଦି ସଂପର୍କରେ ଆଲୋଚନା କରିଥିଲେ । ବିଜ୍ଞାପନ ପ୍ରଦାନ କ୍ଷେତ୍ରରେ ସ୍ୱଚ୍ଛତା ଅବଲମ୍ବନ କରାଯିବା, ସମାନୁପାତିକ ରୀତିରେ ବିଜ୍ଞାପନ ପ୍ରଦାନ, କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ରଗୁଡ଼ିକୁ ପ୍ରୋତ୍ସାହନ ଦେବା ଉପରେ ଆଲୋଚନା ବେଳେ ଗୁରୁତ୍ୱ ଦିଆଯାଇଥିଲା । ମନ୍ତ୍ରୀ ଶ୍ରୀ ନାୟକ ସ୍ପଷ୍ଟ କରି ଦେଇଥିଲେ ଯେ ବିଜ୍ଞାପନ ପ୍ରଦାନ କ୍ଷେତ୍ରରେ ପାତର ଅନ୍ତର ନକରି ସଂପୂର୍ଣ୍ଣ ସ୍ୱଚ୍ଛତା ଅବଲମ୍ବନ କରିବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି ଏବଂ ଏହାକୁ କଡ଼ାକଡ଼ି ଭାବେ ପାଳନ କରାଯିବା ଲାଗି ବିଭାଗକୁ ନିର୍ଦ୍ଦେଶ ଦିଆଯାଇଛି । ପର୍ଯ୍ୟାୟକ୍ରମେ ସମସ୍ୟାର ସମାଧାନ ପାଇଁ ସରକାର ପଦକ୍ଷେପ ନେବେ ବୋଲି ଶ୍ରୀ ନାୟକ ସୂଚାଇ ଥିଲେ ।

ଏହି ଆଲୋଚନା ବେଳେ ସୂଚନା ଓ ଲୋକ ସଂପର୍କ ବିଭାଗର ଉପନିର୍ଦ୍ଦେଶକ, (ପ୍ରେସ୍) ତଥା ଉପଶାସନ ସଚିବ ଶ୍ରୀ ନିରଂଜନ ସେଠୀ, ଫେଡେରେସନ୍‌ର ରାଜ୍ୟ ଶାଖା ସଭାପତି ରାୟଶ୍ରୀ ଉପେନ୍ଦ୍ର ପ୍ରସାଦ ନାୟକ, ସାଧାରଣ ସଂପାଦକ ସତ୍ୟସ୍ୱରୂପ ରଥ, ଯୁଗ୍ମ ସଂପାଦକ ବ୍ରାହ୍ମୀପ୍ରିୟା ସାମନ୍ତରାୟ, ସଂଗଠନ ସଂପାଦିକା ରୀନା ଗଡ଼ନାୟକ, ବିମଳ ଭଂଜଦେଓ, କବିତାବାଳା ମାନ୍ଧାତା, ବିଭାଗୀୟ ସୂଚନା ଅଧିକାରୀ ପ୍ରଭାକର ସାହୁ ପ୍ରମୁଖ ଉପସ୍ଥିତ ଥିଲେ ।

ମନ୍ତ୍ରୀ ଶ୍ରୀ ନାୟକ ଦାୟିତ୍ୱ ନେବା ପରେ ବିଭାଗକୁ କ୍ରିୟାଶୀଳ କରିବା ଲାଗି ସକ୍ରିୟ ପଦକ୍ଷେପ ନେଉଥିବାରୁ ଫେଡେରେସନ ପକ୍ଷରୁ ତାଙ୍କୁ କୃତଜ୍ଞତା ଜ୍ଞାପନ କରାଯାଇଥିଲା ।

## ଚଳିତ ବର୍ଷ ଅକ୍ଟୋବର ମାସରେ ରାଜ୍ୟରେ ୪୧୭ ଗୋଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପିତ

ବିଜ୍ଞାନ ଓ କାରିଗରୀ ବିଭାଗ ଦ୍ୱାରା ରାଜ୍ୟର ୩୦ ଗୋଟି ଜିଲ୍ଲାରେ ପରିବାର ପାଇଁ ଉଦ୍ଦିଷ୍ଟ ବାୟୋଗ୍ୟାସ୍ ପ୍ଲାଣ୍ଟ ପ୍ରତିଷ୍ଠା ନିମନ୍ତେ ଯୋଜନା କରାଯାଇଛି । ଏହି ଯୋଜନା ଅନୁଯାୟୀ ଚଳିତ ବର୍ଷ ଅକ୍ଟୋବର ମାସରେ ୩୦ଟି ଜିଲ୍ଲାରେ ୪୧୭ ଗୋଟି ବାୟୋଗ୍ୟାସ୍ ପ୍ଲାଣ୍ଟ ପ୍ରତିଷ୍ଠା କରାଯାଇଛି । ସେଥିମଧ୍ୟରୁ ସୁନ୍ଦରଗଡ଼ ଜିଲ୍ଲାରେ ସର୍ବାଧିକ ୮୯ଟି ପ୍ଲାଣ୍ଟ ପ୍ରତିଷ୍ଠା କରାଯାଇଥିବାବେଳେ ଗଜପତି ଜିଲ୍ଲାରେ ୩୭ଟି, ଝାରସୁଗୁଡ଼ା ଜିଲ୍ଲାରେ ୩୩ଟି, କଟକ ଜିଲ୍ଲାରେ ୩୧ ଗୋଟି, ସମ୍ବଲପୁର ଜିଲ୍ଲାରେ ୩୨ ଗୋଟି, କଳାହାଣ୍ଡି ଓ ରାୟଗଡ଼ା ଜିଲ୍ଲାରେ ୨୬ ଗୋଟି ଲେଖାଏଁ, ଗଂଜାମ ଜିଲ୍ଲାରେ ୨୩ ଗୋଟି, କୋରାପୁଟ ଜିଲ୍ଲାରେ ୧୮ ଗୋଟି, ମୟୂରଭଂଜ ଜିଲ୍ଲାରେ ୧୬ ଗୋଟି, ଯାଜପୁର ଜିଲ୍ଲାରେ ୧୫ ଗୋଟି, କେନ୍ଦ୍ରାପଡ଼ା ଜିଲ୍ଲାରେ ୧୪ ଗୋଟି, ବଲାଙ୍ଗୀର ଜିଲ୍ଲାରେ ୧୩ ଗୋଟି, ସୋନପୁର ଜିଲ୍ଲାରେ ୧୧ ଗୋଟି, ଜଗତସିଂହପୁର ଜିଲ୍ଲାରେ ୧୦ ଗୋଟି, ଭଦ୍ରକ ଜିଲ୍ଲାରେ ୯ ଗୋଟି, କେନ୍ଦୁଝର ଓ ନବରଂଗପୁର ଜିଲ୍ଲାରେ ୬ ଗୋଟି ଲେଖାଏଁ ଏବଂ ବୌଦ ଜିଲ୍ଲାରେ ଦୁଇଟି ବାୟୋଗ୍ୟାସ ପ୍ଲାଣ୍ଟ ପ୍ରତିଷ୍ଠା କରାଯାଇଥିବା ବିଜ୍ଞାନ ଓ କାରିଗରୀ ବିଭାଗ ସୂତ୍ରରୁ ପ୍ରକାଶ ।

# ସ୍ୱାସ୍ଥ୍ୟ ସେବାକୁ ଅଧିକ ଉନ୍ନତ, ସୁଦୃଢ଼ ଓ ସଂପ୍ରସାରିତ କରାଯିବା ଉପରେ ସ୍ୱାସ୍ଥ୍ୟ ମନ୍ତ୍ରୀଙ୍କ ଗୁରୁତ୍ୱ

ଡି.ଏଫ୍.ଆଇ.ଡି. ସହାୟତାରେ ରାଜ୍ୟରେ ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ଉନ୍ନତି ଆଣିବା ନିମନ୍ତେ ସ୍ୱତନ୍ତ୍ର ଯୋଜନା ପ୍ରସ୍ତୁତି ସଂପର୍କରେ ଏକ ବୈଠକ ଅନୁଷ୍ଠିତ ହୋଇଯାଇଛି ।

ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ଶ୍ରୀ ବିଜୟଶ୍ରୀ ରାଉତରାୟ ବୈଠକରେ ଅଧ୍ୟକ୍ଷତା କରି ପ୍ରାଥମିକ ସ୍ୱାସ୍ଥ୍ୟସେବାକୁ ଅଧିକ ଉନ୍ନତ, ସୁଦୃଢ଼ ଓ ସଂପ୍ରସାରିତ କରିବା ପାଇଁ ଭିତ୍ତିଭୂମି ଉନ୍ନୟନ ସରଂଜାମ ଯୋଗାଣ ଓ ସ୍ୱାସ୍ଥ୍ୟସେବା ପ୍ରଦାନକାରୀଙ୍କ ଦକ୍ଷତା ବୃଦ୍ଧି ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଏଥିପାଇଁ ଉପଯୁକ୍ତ ତାଲିମ୍ ବ୍ୟବସ୍ଥା, ଯାତାୟାତ ସୁବିଧା, ଆଦିବାସୀ ବହୁଳ ତଥା ଅଗମ୍ୟ ଅଂଚଳ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ନିମନ୍ତେ କାର୍ଯ୍ୟ ଯୋଜନା ପ୍ରସ୍ତୁତି କରାଯିବା ପାଇଁ ପରାମର୍ଶ ଦେଇଥିଲେ । ଆସନ୍ତା ଡିସେମ୍ବର ମାସ ୩୧ ତାରିଖ ସୁଦ୍ଧା ଏହି କାର୍ଯ୍ୟ ଯୋଜନା ସଂପୂର୍ଣ୍ଣ କରାଯିବ ।

ପି.ଏସ୍.ପି.ୟୁ. ପକ୍ଷରୁ ରାଜ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ପ୍ରତିଷ୍ଠାନଠାରେ ଅନୁଷ୍ଠିତ ଉକ୍ତ ବୈଠକରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ରବିନାରାୟଣ ସେନାପତି, ପି.ଏସ୍.ପି.ୟୁ.ର ପରାମର୍ଶଦାତା ଡାଃ କେ.ଏସ୍. ଗଣେଶନ, ସ୍ୱାସ୍ଥ୍ୟସେବା ନିର୍ଦ୍ଦେଶକ, ଡାକ୍ତରୀ ଶିକ୍ଷା ଓ ତାଲିମ୍ ନିର୍ଦ୍ଦେଶକ, ଭେଷଜ ନିୟନ୍ତ୍ରକ, ପରିବାର କଲ୍ୟାଣ ନିର୍ଦ୍ଦେଶକଙ୍କ ସମେତ ପଦସ୍ଥ ବିଭାଗୀୟ କର୍ମକର୍ତ୍ତାମାନେ ଯୋଗ ଦେଇଥିଲେ ।






# ସମବାୟ ଶତବର୍ଷ ପୂର୍ତ୍ତି




ସମବାୟ ଆନ୍ଦୋଳନ କେବଳ ଏକ ଅର୍ଥନୈତିକ ଆନ୍ଦୋଳନ ନୁହେଁ, ଏହା ଏକ ବିଚାରଧାରା ଏବଂ ଏକ ସାମାଜିକ ବ୍ୟବସ୍ଥା । ଗରିବ ଜନସାଧାରଣଙ୍କୁ ପୁଞ୍ଜିପତିମାନଙ୍କ ଶୋଷଣରୁ ରକ୍ଷାକରି ସେମାନଙ୍କ ଆର୍ଥିକ ଓ ସାମାଜିକ ଅବସ୍ଥାର ଉନ୍ନତି ନିମନ୍ତେ ଉନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଚିନ୍ତାଶୀଳ ଜନନାୟକଙ୍କ ମନରେ ଯେଉଁ ସଂକଳ୍ପ ଓ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହା ହିଁ ସମବାୟ ବିଚାରଧାରା ନାମରେ ପରିଚିତ ।

ଏ ଦିଗରେ ଆମ ଓଡ଼ିଶା ସମବାୟ ଆନ୍ଦୋଳନର ଆଦିଭୂମି ଭାବରେ ଗୌରବାନ୍ୱିତ । ଓଡ଼ିଆ ଜାତିର ମହାନ୍ ଜନନାୟକ ଉତ୍କଳଗୌରବ ମଧୁସୂଦନ ଦାସ ୧୮୯୮ ମସିହାରେ କଟକଠାରେ ପ୍ରଥମ ସମବାୟ ଅନୁଷ୍ଠାନଟିଏ ଖୋଲି ଏ କ୍ଷେତ୍ରରେ ପଥପ୍ରଦର୍ଶକ ହେବାର ଗୌରବ ଅର୍ଜନ କରିଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀକାଳରେ ଜନସାଧାରଣଙ୍କ ସାମୂହିକ ବିକାଶ ସାଧନ ଓ ସ୍ୱାର୍ଥ ସୁରକ୍ଷା ନିମନ୍ତେ ସମବାୟ ଆନ୍ଦୋଳନ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି । ଏହା ଘରୋଇ ଉଦ୍ୟୋଗ ସହ ପ୍ରତିଦ୍ୱନ୍ଦ୍ୱିତା କରି ଜନସାଧାରଣଙ୍କ ଆଶା ଆକାଂକ୍ଷା ପୂରଣ କରିବା ପାଇଁ ଗତ ଶହେ ବର୍ଷ ଭିତରେ ଏକ ବଳିଷ୍ଠ ଭିତ୍ତିଭୂମି ପ୍ରତିଷ୍ଠା କରିପାରିଛି ।

ଏହି ଆନ୍ଦୋଳନ ସମସ୍ତ ଆହ୍ୱାନର ସଫଳ ମୁକାବିଲା କରିବା ସହିତ ଏହାର ଗନ୍ତବ୍ୟ ପଥରେ ଅଗ୍ରଗତି କରି ରାଜ୍ୟର ତଥା ଦେଶରେ ଅଭାବି ଓ ନିମ୍ନବର୍ଗ ଲୋକମାନଙ୍କ ମନରେ ପ୍ରତ୍ୟୟ ଓ ପ୍ରଗତିର ବାତାବରଣ ସୃଷ୍ଟି କରିପାରିବ । ଏହା ହିଁ ଆନ୍ଦୋଳନର ଶତବର୍ଷ ପୂର୍ତ୍ତି ଉପଲକ୍ଷେ ସ୍ୱପ୍ନ ହେଉ ।

ଶରତ ଚନ୍ଦ୍ର ସାମନ୍ତରାୟ

# ଉତ୍କଳ ପ୍ରସଙ୍ଗ

୬୧ ଭାଗ | ୫ମ ସଂଖ୍ୟା | ମାର୍ଗଶିର-ପୌଷ | ଡିସେମ୍ବର - ୨୦୦୪

**ଦିଗମ୍ବର ମହାନ୍ତି**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଶରତଚନ୍ଦ୍ର ସାମନ୍ତରାୟ**
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଶୁଭଲକ୍ଷ୍ମୀ ମହାନ୍ତି**
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ : ସୂଚନା ଓ ଲୋକ ସଂପର୍କ ବିଭାଗ
ସୌଜନ୍ୟରୁ

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

***ବାର୍ଷିକ ଦେୟ : ଟ.୫୦.୦୦***
***ପ୍ରତିଖଣ୍ଡ : ଟ.୫.୦୦***

---



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
*E-mail* : iprsec@rediffmail.com / iprsec@ori.nic.in, ଫୋନ : ୨୪୦୪୫୧୩

# ସୂଚୀ



# ଓଡ଼ିଶାର ନୂତନ ରାଜ୍ୟପାଳ
# ମାନ୍ୟବର ଶ୍ରୀ ରାମେଶ୍ୱର ଠାକୁରଙ୍କ
# ସଂକ୍ଷିପ୍ତ ଜୀବନୀ

ଆମ ରାଜ୍ୟର ନୂତନ ରାଜ୍ୟପାଳଭାବେ ମାନ୍ୟବର ଶ୍ରୀ ରାମେଶ୍ୱର ଠାକୁର ୨୦୦୪ ମସିହା ନଭେମ୍ବର ୧୭ ତାରିଖରେ ଦାୟିତ୍ୱ ଗ୍ରହଣ କରିଛନ୍ତି । ଜଣେ ସୁଖ୍ୟାତ ଚାଟାର୍ଡ଼ ଆକାଉଣ୍ଟାଣ୍ଟ, ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, ସାଂସଦ ତଥା ଦକ୍ଷ କେନ୍ଦ୍ରମନ୍ତ୍ରୀଭାବେ ଶ୍ରୀ ଠାକୁର ଜଣାଶୁଣା । ବିଭିନ୍ନ ସାମାଜିକ ଅନୁଷ୍ଠାନ ଓ ସଂଗଠନ ସହ ସେ ପ୍ରତ୍ୟକ୍ଷ ତଥା ପରୋକ୍ଷ ଭାବରେ ସଂପୃକ୍ତ । ଜନସେବା ସହ ସଂଶ୍ଳିଷ୍ଟ ଅନେକ ଅନୁଷ୍ଠାନ ସେ ନିଜ ହାତରେ ଗଢ଼ିଛନ୍ତି ଏବଂ ଏବେଯାଏଁ ମଧ୍ୟ ସେସବୁ ସହ ସଂପୃକ୍ତ ଅଛନ୍ତି । ଶ୍ରୀ ଠାକୁରଙ୍କର ସଂକ୍ଷିପ୍ତ ଜୀବନୀ ନିମ୍ନରେ ପ୍ରଦତ୍ତ କରାଗଲା -

| | | |
|---|---|---|
| **ନାମ** | : | ଶ୍ରୀ ରାମେଶ୍ୱର ଠାକୁର |
| **ଜନ୍ମସ୍ଥାନ ଓ ସ୍ଥାୟୀ ଠିକଣା** | | ଗ୍ରାମ/ଥାନା - ଠାକୁର ଗାଙ୍ଗଟି<br>ଜିଲ୍ଲା - ଗୋଡ଼ା, ଝାଡ଼ଖଣ୍ଡ |
| **ଜନ୍ମ ତାରିଖ** | : | ଜୁଲାଇ ୨୮, ୧୯୨୭ |
| **ଶିକ୍ଷା** | : | ଏମ୍.ଏ., ଏଲ୍.ଏଲ୍.ବି., ଏଫ୍.ସି.ଏ.<br>ଭାଗଲ୍‌ପୁର, ପାଟଣା ବିଶ୍ୱବିଦ୍ୟାଳୟ, କଲିକତା ବିଶ୍ୱବିଦ୍ୟାଳୟ ଏବଂ ଦି ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଚାଟାର୍ଡ଼ ଆକାଉଣ୍ଟାଣ୍ଟସ୍ ଅଫ୍ ଇଣ୍ଡିଆ, ନୂଆଦିଲ୍ଲୀରୁ ଶିକ୍ଷା ପ୍ରାପ୍ତ । |
| **ସହଧର୍ମିଣୀ** | : | ଶ୍ରୀମତୀ ନର୍ମଦା ଠାକୁର |
| **ସନ୍ତାନ/ସନ୍ତତି** | : | ଦୁଇ ପୁଅ ଓ ଦୁଇ ଝିଅ |
| **ବୃତ୍ତି** | : | • ୧୯୫୩ ମସିହାଠାରୁ ଚାଟାର୍ଡ଼ ଆକାଉଣ୍ଟାଣ୍ଟ ଭାବେ ସେବାରତ ।<br>• ୧୯୫୫ ମସିହାଠାରୁ ୧୯୬୦ ପର୍ଯ୍ୟନ୍ତ କଲିକତା ବିଶ୍ୱବିଦ୍ୟାଳୟର ସିଟି କଲେଜର ଅଧ୍ୟାପକ ରୂପେ ଶିକ୍ଷା ପ୍ରଦାନ ।<br>• ୧୯୬୦ରୁ ୧୯୭୩ ମସିହା ପର୍ଯ୍ୟନ୍ତ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଭିଜିଟିଙ୍ଗ୍ ପ୍ରଫେସର ରୂପେ କାର୍ଯ୍ୟରତ । |

**ସାଧାରଣ ଜୀବନ ଏବଂ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଅଂଶଗ୍ରହଣ :**

★ ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ । ସାନ୍ତାଳ ପ୍ରଗଣାର ରାଜମହଲ ପାର୍ବତ୍ୟାଞ୍ଚଳରେ ୬ ମାସ ଧରି ଆତ୍ମଗୋପନ । ଜାତୀୟ ଆନ୍ଦୋଳନରେ ଅଂଶ ଗ୍ରହଣ କରି ୧୯୪୬ ମସିହାରେ କାରାବରଣ ଏବଂ କଲିକତାର ଦମ୍‌ଦମ୍‌ସ୍ଥିତ କେନ୍ଦ୍ରୀୟ କାରାଗାରରେ ଅଟକ ।

★ ଝାଡ଼ଖଣ୍ଡର ସାନ୍ତାଳ ପ୍ରଗଣାରେ ଶ୍ରୀ ଠାକୁର ସ୍ୱାସ୍ଥ୍ୟସେବା, ଶିକ୍ଷା, ସାମାଜିକ ସଂସ୍କାର ଓ ଗ୍ରାମ୍ୟ ପୁନର୍ଗଠନ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରି ଆସିଛନ୍ତି ।

★ **ପ୍ରତିଷ୍ଠାତା ଟ୍ରଷ୍ଟି :**

- ହରିଦେବୀ ସ୍ମାରକ ନିଧି ନାମକ ଏକ ଦାତବ୍ୟ ଅନୁଷ୍ଠାନ ୧୯୬୫ ମସିହାରେ ତାଙ୍କ ଦ୍ୱାରା ସ୍ଥାପିତ । ୧୯୭୬ ମସିହାରେ ୩୦ ଶଯ୍ୟା ବିଶିଷ୍ଟ ରୁରାଲ ରେଫରାଲ ହସପିଟାଲ ଏବଂ ୨୦୦୨ ମସିହାରେ ଅନ୍ୟ ଏକ ୪୦ ଶଯ୍ୟା

ବିଶିଷ୍ଟ କର୍କଟ, କୁଷ୍ଠ ଏବଂ ଯକ୍ଷ୍ମା ହସପିଟାଲ ଝାଡ଼ଖଣ୍ଡ ପ୍ରଦେଶର ଗୋଡ଼ା ଜିଲ୍ଲାରେ ତାଙ୍କ ନିଜ ଗ୍ରାମ ଠାକୁର ଗାଙ୍ଗଟିରେ ପ୍ରତିଷ୍ଠିତ ।

- ଗଦାଧର ମିଶ୍ର ସ୍ମାରକ ନିଧି ନାମରେ ଏକ ଦାତବ୍ୟ ଟ୍ରଷ୍ଟ ଗାନ୍ଧୀଗ୍ରାମଠାରେ ୧୯୬୫ ମସିହାରେ ପ୍ରତିଷ୍ଠିତ । ୧୯୬୫ ମସିହାରୁ ଝାଡ଼ଖଣ୍ଡ ଅନ୍ତର୍ଗତ ଗୋଡ଼ା ଜିଲ୍ଲାରେ ଖଦୀ ଓ ଗ୍ରାମୋଦ୍ୟୋଗ ଏବଂ ବିଭିନ୍ନ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମରେ ନିୟୋଜିତ ।

★ **ଶ୍ରୀ ଠାକୁର ଭିନ୍ନ ଭିନ୍ନ ସମୟରେ ଅନେକ ଗୁରୁତ୍ୱପୂର୍ଣ୍ଣ ଏବଂ ସମ୍ମାନଜନକ ପଦବୀରେ ଅବସ୍ଥାପିତ ହୋଇ କାର୍ଯ୍ୟ କରିଛନ୍ତି :**

- **ସଭାପତି :** ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଚାଟାର୍ଡ଼ ଆକାଉଣ୍ଟାଣ୍ଟସ୍ ଅଫ୍ ଇଣ୍ଡିଆ, (୧୯୬୬-୬୭)
- **ଜାତୀୟ ସଭାପତି :** ଅଲ୍ ଇଣ୍ଡିଆ ଭାରତ ସ୍କାଉଟ୍‌ସ ଆଣ୍ଡ୍ ଗାଇଡ୍‌ସ (୧୯୯୮ରୁ ୨୦୦୧ ଏବଂ ୨୦୦୪ରୁ ଆଜି ପର୍ଯ୍ୟନ୍ତ)
- **ଅଧକ୍ଷ :** ଭାରତ ସରକାରଙ୍କ ବ୍ୟାଙ୍କିଙ୍ଗ୍ କମିଶନ ଦ୍ୱାରା ପ୍ରତିଷ୍ଠିତ ଷ୍ଟଡ଼ି ଗ୍ରୁପ୍ ଅନ୍ ବ୍ୟାଙ୍କିଙ୍ଗ୍ କଷ୍ଟସ୍ (୧୯୭୮-୮୨)
- **ଅଧକ୍ଷ :** ଆସୋସିଏଟେଡ୍ ଜର୍ନାଲସ୍ ଲିମିଟେଡ଼ (୧୯୮୭-୯୧)
- **ଅଧକ୍ଷ :** ଠାକୁର ରିସର୍ଚ୍ଚ ଫାଉଣ୍ଡେସନ୍, ନୂଆଦିଲ୍ଲୀ (୧୯୮୧ ମସିହାରୁ)
- **ଅଧକ୍ଷ :** ରାଜେନ୍ଦ୍ର ଭବନ ଟ୍ରଷ୍ଟ, ନୂଆଦିଲ୍ଲୀ
- **ନିର୍ଦ୍ଦେଶକ :** ୟୁନିଟ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ (୪ ବର୍ଷ ପାଇଁ), ଏକ୍ସପୋର୍ଟ କ୍ରେଡ଼ିଟ୍ ଆଣ୍ଡ୍ ଗ୍ୟାରେଣ୍ଟି କର୍‌ପୋରେସନ୍ (୩ ବର୍ଷ), ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ୍ (୧୯୭୮-୮୨), ପଞ୍ଜାବ, ହରିଆନା ଏବଂ ଦିଲ୍ଲୀ ଚ୍ୟାମ୍ବରସ୍ ଅଫ୍ କମର୍ସ (୩ ବର୍ଷ), ହରିଆନାସ୍ଥିତ ଗୁରୁଗାଁଓଠାରେ ବୋର୍ଡ଼ ଅଫ୍ ଗଭର୍ଣ୍ଣର୍‌ସ ମ୍ୟାନେଜ୍‌ମେଣ୍ଟ ଡେଭେଲପ୍‌ମେଣ୍ଟ ଇନ୍‌ଷ୍ଟିଚ୍ୟୁଟ୍,
- **ସଚିବ :** ସଂଜୟ ଗାନ୍ଧୀ ମେମୋରିଆଲ୍ ଟ୍ରଷ୍ଟ, ଆମେଥି, ଉତ୍ତରପ୍ରଦେଶ

★ **ଆନ୍ତର୍ଜାତୀୟ ପ୍ରତିନିଧିତ୍ୱ :**

(କ) ଉପନେତା ଇଣ୍ଡିଆନ୍ ପାର୍ଲିଆମେଣ୍ଟାରୀ ୟୁନିୟନ୍ କନ୍‌ଫରେନ୍ସ, ଜେନେଭା (୧୯୮୪)
(ଖ) ବ୍ରସେଲଠାରେ ଅନୁଷ୍ଠିତ ବିଶ୍ୱ ସ୍କାଉଟସ୍ କଂଗ୍ରେସର ଭାରତୀୟ ସଦସ୍ୟ ମଣ୍ଡଳୀର ନେତୃତ୍ୱ (୧୯୬୪)
(ଗ) ମେକ୍ସିକୋଠାରେ ଅନୁଷ୍ଠିତ ଆନ୍ତର୍ଜାତୀୟ ଆକାଉଣ୍ଟାଣ୍ଟସ୍ କଂଗ୍ରେସ୍‌ର ନେତୃତ୍ୱ (୧୯୮୨)
(ଘ) କଲମ୍ବୋଠାରେ ଅନୁଷ୍ଠିତ ୧୫ତମ ଏସିଆ ପାସିଫିକ୍ ଗ୍ୟାଦରିଂର ନେତୃତ୍ୱ (୧୯୮୪)
(ଙ) ଲଣ୍ଡନଠାରେ ଅନୁଷ୍ଠିତ ୧୭ତମ ଜେନେରାଲ ଆସେମ୍ବ୍ଲି କୋଭେଣ୍ଟ୍ରିରେ ଯୋଗ ଦେଇଥିବା ଭାରତୀୟ ପ୍ରତିନିଧି ଦଳର ନେତୃତ୍ୱ (୧୯୮୭)
(ଚ) ଅଧକ୍ଷ, ୱାଲର୍ଡ଼ କଂଗ୍ରେସ ଅଫ୍ ସ୍କାଉଟ୍ ଆଣ୍ଡ୍ ଗାଇଡ୍‌ସ ଫେଲୋସିପି (୧୯୯୯)

★ **ପାର୍ଲିଆମେଣ୍ଟ ଏବଂ କେନ୍ଦ୍ର ମନ୍ତ୍ରିପରିଷଦ :**

(କ) ୧୯୮୪ ମସିହା ଏପ୍ରିଲରୁ ମାର୍ଚ୍ଚ ୧୯୯୦ ପର୍ଯ୍ୟନ୍ତ ଶ୍ରୀ ଠାକୁର ରାଜ୍ୟସଭାକୁ ନିର୍ବାଚିତ ଏବଂ ୧୯୯୦ ଏପ୍ରିଲରୁ ୧୯୯୬ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ରାଜ୍ୟସଭାକୁ ପୁନଃନିର୍ବାଚିତ
(ଖ) ଶ୍ରୀ ଠାକୁରଙ୍କର ଅର୍ଥ (ରାଜସ୍ୱ), ଗ୍ରାମ୍ୟ ଉନ୍ନୟନ ଏବଂ ସଂସଦୀୟ ବ୍ୟାପାର ମନ୍ତ୍ରଣାଳୟରେ କେନ୍ଦ୍ର ମନ୍ତ୍ରୀଭାବେ ଯୋଗଦାନ (ଜୁନ ୧୯୯୧ରୁ ଡିସେମ୍ବର ୧୯୯୪ ପର୍ଯ୍ୟନ୍ତ)

★ ବିଦେଶ ଭ୍ରମଣ : ରୁଷିଆ, ଫ୍ରାନ୍ସ, ଜର୍ମାନୀ, ଇଟାଲୀ, ଇଂଲଣ୍ଡ, ସୁଇଜରଲ୍ୟାଣ୍ଡ, ଆମେରିକା, ମେକ୍ସିକୋ, ବାଂଲାଦେଶ, ନେପାଳ, ଶ୍ରୀଲଙ୍କା ପ୍ରଭୃତି ଦେଶ ଭ୍ରମଣ ।

